## ପ୍ରେକ୍ଷାଳୟ : ଦର୍ଶକ : ସମୀକ୍ଷା

ଓଡ଼ିଶାର ମୋଟ ପ୍ରେକ୍ଷାଳୟ ସଂଖ୍ୟା : ୯୨ : ବନ୍ଦ ଅଛି : ୧୨

ସର୍ବାଧିକ ସଂଖ୍ୟା : କଟକ ଜିଲ୍ଲା : ୧୭ : ସର୍ବନିମ୍ନ : ଫୁଲବାଣୀ ଜିଲ୍ଲା : ୧

ସର୍ବାପେକ୍ଷା ପ୍ରାଚୀନ ପ୍ରେକ୍ଷାଳୟ : ଏସ୍.ଏସ୍.ଇ.ଟି ବ୍ରହ୍ମପୁର : ୧୯୨୭

ସର୍ବାଧିକ ଦର୍ଶକ ବସିବା ସ୍ଥାନ : ଜ୍ୟୋତି ସିନେମା, ବ୍ରହ୍ମପୁର : ୧୨୦୦

ଗୋଟିଏ ଶୋର ସର୍ବାଧିକ ବିକ୍ରୀ : ଟ ୧୩୦୧.୫୮ ପଇସା : ଗ୍ରାଣ୍ଡ ସିନେମା, କଟକ

ଏସ୍ୱାର କୁଲଡ ପ୍ରେକ୍ଷାଳୟ : ଅଶୋକ ଟକିଜ, ସମ୍ବଲପୁର

ସର୍ବାଧିକ ଦର୍ଶକ ସଂଖ୍ୟା : କଟକ ସହର

ବିଭିନ୍ନ ବଡ ବଡ ସହରରେ ପ୍ରେକ୍ଷାଳୟ ସଂଖ୍ୟା

କଟକ : ୫, ବ୍ରହ୍ମପୁର : ୪, ରାଉରକେଲା : ୪, ସମ୍ବଲପୁର, ପୁରୀ, ପାରଳାଖେମୁଣ୍ଡି : ୩, ଭଦ୍ରଖ, ବାଲେଶ୍ୱର, ବାରିପଦା, ଅନୁଗୋଳ, ଜାଜପୁର ଟାଉନ, ଜାଜପୁର ରୋଡ, ଟିଟଲାଗଡ଼, ଜୟପୁର, କେନ୍ଦ୍ରାପଡ଼ା : ତାଳଚେର, ବରଗଡ଼, ଭୁବନେଶ୍ୱର, ଖୋର୍ଦ୍ଧା : ୨

ଆଞ୍ଚଳିକ ଯୋଗସୂତ୍ର ଅଫିସ : ଇଷ୍ଟର୍ଣ୍ଣ ଇଣ୍ଡିଆ ମୋସନ ପିକଚର୍ସ ଆସୋସିଏସନ, ବାରବାଟି ଷ୍ଟେଡ଼ିଅମ, କଟକ-୫

ଜୀବନ ରଂଗ ● [illegible]

## କେତେକ ମୁଦ୍ରଣ ତ୍ରୁଟି

ଗୀତା ବିବାହ ନିର୍ମାଣ କାଳ : ୧୯୩୪
ଜୀବନ ସାଥି „ ୧୯୬୩
ସାଧନା „ ୧୯୬୪

ପୃଷ୍ଠା ୧୭ରେ ପ୍ରଥମ ଶବ୍ଦ ହେବ : 'ଲଳିତା ଭୂମିକାରେ ଉମା'

## ବିଶେଷ ଘୋଷଣା

କେତେକ ଅସୁବିଧା ହେତୁ ଜୀବନରଂଗ ଗଳ୍ପ ବିଶେଷାଙ୍କ ଜାନୁଆରୀରେ ପ୍ରକାଶ ନପାଇ ଫେବୃଆରୀ ପ୍ରଥମ ସପ୍ତାହରେ ପ୍ରକାଶ ପାଇବ ।

ସଂପାଦକ : ଜୀବନରଂଗ



୧୯୭୨ ମହାବିଷୁବ ସଂକ୍ରାନ୍ତିରେ

ପ୍ରକାଶ ପାଉଛି

ଶ୍ରୀମତୀ ବିଜୟିନୀ ଦାସଙ୍କର

ସୁନିର୍ବାଚିତ କବିତା ସଂକଳନ

# ମଧ୍ୟରାତ୍ରିର କବିତା

---

ଗୋଟିଏ କେନ୍ଦ୍ର, ଦୁଇଟି ବୃତ୍ତ··· ···୧୯୬୩

ଝଡ ଓ ଝଙ୍କାର ୧୯୬୮

୧୯୭୨·········

# ଆହତ ମୌସୁମୀ



ଲେଖକ

ରଣଧୀର ଦାସ



# ✽ ଓଡ଼ିଆ ଚଳଚ୍ଚିତ୍ର ✽

| | ଛବିର ନାମ | ମସିହା | ପ୍ରଯୋଜକ | ନିର୍ଦ୍ଦେଶକ | ମୁଖ୍ୟ ଭୂମିକାରେ |
|---|---|---|---|---|---|
| ୧। | ସୀତା ବିବାହ | ୧୯୪୧ | ମୋହନସୁନ୍ଦର ଦେବ ଗୋସ୍ୱାମୀ | ମୋହନସୁନ୍ଦର ଦେବ ଗୋସ୍ୱାମୀ | ମାଖନ୍‌ଲାଲ, ପ୍ରଭା(ବଡ଼ରୁଚି) ଡ଼ା:ଅଦ୍ୱୈତ ମହାନ୍ତି |
| ୨। | ଲଳିତା | ୧୯୪୯ | ଗ୍ରେଟ୍ ଇଷ୍ଟର୍ଣ୍ଣ ମୋଭିଟୋନ୍ | କାଳୀଚରଣ ପଟ୍ଟନାୟକ | ଲୋକନାଥ, ଉମା ଗୋଏଙ୍କା |
| ୩। | ଶ୍ରୀଜଗନ୍ନାଥ | ୧୯୫୦ | ରୂପଭାରତୀ ଲିମିଟେଡ୍ | ଚନ୍ଦ୍ରରଞ୍ଜନ ମିତ୍ର | ଗୋପାଳ, ଗ୍ଲୋରିଆ, ଖଗେନ୍ଦ୍ର ନାଥ, ରାମଚନ୍ଦ୍ର ମାଣିଆ |
| ୪। | ରୋଲସ୍ ୨-୮ | ୧୯୫୧ | ରାଧାକାନ୍ତ ପାଢ଼ୀ | କଲ୍ୟାଣ ଗୁପ୍ତ | ରାଧାକାନ୍ତ, କମଳା |
| ୫। | ସପ୍ତଶଯ୍ୟା | ୧୯୫୧ | ଗ୍ରେଟ୍ ଇଷ୍ଟର୍ଣ୍ଣ ମୋଭିଟୋନ୍ | କଲ୍ୟାଣ ଗୁପ୍ତ | ବ୍ୟୋମକେଶ, ଅନମା, କମଳା |
| ୬। | ଆମର ଗାଁ ଝିଅ | ୧୯୫୩ | ଉତ୍କଳ ଚିତ୍ର ପ୍ରତିଷ୍ଠାନ | ବନସ୍ପ ବାନାର୍ଜ୍ଜି | ଗୋପାଳ, ଲକ୍ଷ୍ମୀ, ଗୌରପ୍ରସାଦ, ଚପଳା |
| | କେଦାର ଗୌରୀ | ୧୯୫୪ | ରାଧା ପିକଚର୍ସ | ମନୋରଞ୍ଜନ ଦାସ ଓ ନିତାଇପାଲିତ | ଗୌରପ୍ରସାଦ, ବୀଣା, ନିତାଇ ପାଲିତ, ରାଧାରାଣୀ |
| | ଭାଇ | ୧୯୫୫ | ଦଳିତ ଜାତିସଙ୍ଘ ଚିତ୍ରମ୍ | ନିତାଇ ପାଲିତ | ବାବୁ, ଗୌରପ୍ରସାଦ, ଚପଳା, ଲୀଳା |

| | ଚିତ୍ରର ନାମ | ମସିହା | ପ୍ରଯୋଜକ | ନିର୍ଦ୍ଦେଶକ | ମୁଖ୍ୟ ଭୂମିକାରେ |
|---|---|---|---|---|---|
| | ମା' | ୧୯୫୮ | ଚଳମ୍ | ନିତାଇ ପାଲିତ | ଗୌରପ୍ରସାଦ, ଚନ୍ଦନା, ଗୋବିନ୍ଦ, ନନ୍ଦି |
| | ମହାଲକ୍ଷ୍ମୀ ପୂଜା | ୧୯୫୯ | ଉତ୍କଳ ଚଳଚ୍ଚିତ୍ର ପ୍ରତିଷ୍ଠାନ | ବିଶ୍ୱନାଥ ନାୟକ | ଶରତ, ଶେଫାଳୀ, ଅନୁସୂୟା |
| | ଶ୍ରୀଲୋକନାଥ | ୧୯୬୦ | ରୂପଶ୍ରୀ ପ୍ରାଇଭେଟ୍ ଲିଃ | ପ୍ରଫୁଲ୍ଲ ସେନଗୁପ୍ତ | ବାବି, ଅକ୍ଷୟ, ଉର୍ବଶୀ, ମଣିମାଳା, ଶାନ୍ତି |
| ୧୨ । | ପରିଣାମ | ୧୯୬୦ | ଉତ୍କଳ ଚଳଚ୍ଚିତ୍ର ପ୍ରତିଷ୍ଠାନ | ବିଶ୍ୱନାଥ ନାୟକ | ପ୍ରମୋଦ, ଗୀତସୁଧା, କାର୍ତ୍ତିକ ଘୋଷ |
| ୧୩ । | ଦସ୍ୟୁ ରତ୍ନାକର | ୧୯୬୧ | ଉତ୍କଳ ଚଳଚ୍ଚିତ୍ର ପ୍ରତିଷ୍ଠାନ | ପ୍ରଭାତ ମୁଖାର୍ଜି | ଶରତ, ଶାନ୍ତି ରାମଚନ୍ଦ୍ର ମାଣିଆ |
| ୧୪ । | ଜୟଦେବ | ୧୯୬୧ | କେ. କେ. ପ୍ରୋଡ଼କସନ୍ | ଶିବ ଭଟ୍ଟାଚାର୍ଯ୍ୟ | ବ୍ୟୋମକେଶ, ଶେଫାଳୀ |
| ୧୫ । | ନୂଆବୋହୂ | ୧୯୬୨ | ପଞ୍ଚସଖା ପିକଚର୍ସ | ପ୍ରଭାତ ମୁଖାର୍ଜି | ଶରତ, ମଣିମାଳା |
| ୧୬ । | ଲକ୍ଷ୍ମୀ | ୧୯୬୨ | କଳିଙ୍ଗ ଫିଲମ୍ସ | ସାରଦାପ୍ରସନ୍ନ ନାୟକ | ଗୌରପ୍ରସାଦ, ଚନ୍ଦନା, ବାବି, ମଣିମାଳା |
| ୧୭ । | ମାଣିକଯୋଡ଼ି | ୧୯୬୩ | ପଞ୍ଚସଖା ପିକଚର୍ସ | ପ୍ରଭାତ ମୁଖାର୍ଜି | ବାବି, ଅନନ୍ତ, ଡ଼ଃ ସୁଖଲତା, ସଖିନ ଦାସ |
| ୧୮ । | ସୂର୍ଯ୍ୟମୁଖୀ | ୧୯୬୩ | ଉଦୟ ପିକଚର୍ସ | ପ୍ରଫୁଲ୍ଲ ସେନଗୁପ୍ତ | ସୌମେନ୍ଦ୍ର, ଅନନ୍ତ, ଡ଼ଃ ମିନତି, ଡାଃ ସୁଖଲତା |
| ୧୯ । | ନାରୀ | ୧୯୬୩ | ଉତ୍କଳ ଚିତ୍ର ପ୍ରତିଷ୍ଠାନ | କାଳୀଚରଣ ପଟ୍ଟନାୟକ | ଅନିମା, ଅଶୋକ, ନରେନ୍ ମିତ୍ର |
| ୨୦ । | ଶ୍ରୀଶ୍ରୀ ପତିତପାବନ | ୧୯୬୩ | ଗାଙ୍ଗୁଲି ପ୍ରଡ଼କସନ୍ସ | ଶ୍ରୀ ସୁକୁମାର ଗାଙ୍ଗୁଲି | ଶ୍ୟାମ, ଲକ୍ଷ୍ମୀପ୍ରିୟା |
| ୨୧ । | ସାଧନା | ୧୯୬୩ | ଡାଇମଣ୍ଡ ଭ୍ୟାଲି ପ୍ରଡ଼କସନ୍ସ | ପ୍ରଭାତ ମୁଖାର୍ଜି | ଶରତ, ବାବି, ଡକ୍ଟର ମିନତି, ଲୀଳା, ରାଧାରାଣୀ ଅନନ୍ତ |
| ୨୨ । | ଜୀବନ ସାଥୀ | ୧୯୬୪ | ଦେବାଶୀଷ ପିକଚର୍ସ | ପ୍ରଭାତ ମୁଖାର୍ଜି | ଶରତ, ଗୀତା |
| ୨୩ । | ଅମଡ଼ାବାଟ | ୧୯୬୪ | ଚିତ୍ରବାଣୀ ପ୍ରତିଷ୍ଠାନ | ଅମର ଗାଙ୍ଗୁଲି | ଉମାକାନ୍ତ, ଅକ୍ଷୟ, ଝରଣା, ଗୀତା |
| ୨୪ । | ନବଜନ୍ମ | ୧୯୬୫ | ପଞ୍ଚସଖା ପିକଚର୍ସ | ପ୍ରଭାତ ମୁଖାର୍ଜି | ଶରତ, ଝରଣା, ଗୀତା, ଅକ୍ଷୟ |

| ଚିତ୍ରର ନାମ | ମୁକ୍ତି | ପ୍ରଯୋଜକ | ନିର୍ଦ୍ଦେଶକ | ମୁଖ୍ୟ ଭୂମିକାରେ |
|---|---|---|---|---|
| ୨୫। ଅଭିନେତ୍ରୀ | ୧୯୬୫ | ଗ୍ରସ୍ୱାବାଣୀ ପ୍ରତିଷ୍ଠାନ | ଅମର ଗାଙ୍ଗୁଲି | ଉମାକାନ୍ତ, ଝରଣା, ବାବୁ, ରଜନୀକାନ୍ତ |
| ୨୬। ମଲଜହ୍ନ | ୧୯୬୫ | ଶ୍ରୀ ଫିଲ୍ମସ୍ | ନିତାଇ ପାଲିତ | ଅକ୍ଷୟ, ଝରଣା |
| ୨୭। କା' | ୧୯୬୬ | କଳିଙ୍ଗ ଫିଲ୍ମସ୍ | 'ସିଦ୍ଧାର୍ଥ' | ଗୌରପ୍ରସାଦ, ଚନ୍ଦନା, ଗୀତା, ଶରତ ମହାନ୍ତି, |
| ୨୮। ଭାଇ ଭାଉଜ | ୧୯୬୭ | ରୂପାଞ୍ଜଳୀ | 'ସାରଥୀ' | ବାବୁ, ମଣିମାଳା, ଶରତ, ପ୍ରଶାନ୍ତ, |
| ୨୯। ମାଟିର ମଣିଷ | ୧୯୬୮ | ଗ୍ରସ୍ୱାବାଣୀ ପ୍ରତିଷ୍ଠାନ | ମୃଣାଳ ସେନ | ଶରତ, ପ୍ରଶାନ୍ତ ସୁଜାତା, ଭାନୁମତୀ |
| ୩୦। ଅରୁନ୍ଧତୀ | ୧୯୬୮ | କନକପ୍ରଭା ପ୍ରଡ଼କ୍ସନସ୍ | ପ୍ରଫୁଲ୍ଲ ସେନଗୁପ୍ତ | ମିନତୀ, ଶରତ, ବ୍ରଜକିଶୋର |
| ୩୧। କିଏ କାହାର | ୧୯୬୮ | ପଞ୍ଚସଖା ପିକଚର୍ସ୍ | ନିତାଇ ପାଲିତ | ଶରତ, ଭାନୁ, ଜ୍ୟୋତି, ଧୀର |
| ୩୨। ସ୍ତ୍ରୀ | ୧୯୬୯ | ପାର୍ବତୀ ଘୋଷ ପ୍ରଡ଼କ୍ସନସ୍ | 'ସିଦ୍ଧାର୍ଥ' | ଗୌରପ୍ରସାଦ, ଚନ୍ଦନା, ଯଦୁନାଥ, ଜ୍ୟୋତି |
| ୩୩। ବନ୍ଧନ | ୧୯୬୯ | ରାଜରାଣୀ ଫିଲ୍ମସ | ନିତାଇ ପାଲିତ | ପ୍ରଶାନ୍ତ, ଗୀତାଞ୍ଜଳୀ, ବାବୁ, ଗୋବିନ୍ଦ |
| ୩୪। ଅଦିନ ମେଘ | ୧୯୭୦ | ଗ୍ରସ୍ୱାବାଣୀ ପ୍ରତିଷ୍ଠାନ | ଅମିତ୍ର ମୈତ୍ର | ପ୍ରଶାନ୍ତ, ଝରଣା, ସନ୍ଧ୍ୟା, ଗୀତା, ବାନୀ |
| ୩୫। ସଂସାର | ୧୯୭୧ | ପାର୍ବତୀ ଘୋଷ ପ୍ରଡ଼କ୍ସନସ୍ | ଗୌର ପାର୍ବତୀ | ଗୌରପ୍ରସାଦ, ଚନ୍ଦନା, ସ୍ୱରୂପ, ଗୀତା |



# ଓଡ଼ିଆ ଏବଂ ଚସ

| ଛବିର ନାମ | ନିର୍ମାଣ କାଳ | ପ୍ରଯୋଜକ | କେଉଁ ଭାଷାକୁ ରୂପାନ୍ତରିତ |
|---|---|---|---|
| ଜନ୍ମାଷ୍ଟମୀ | ୧୯୬୦ | ଗଣେଶ ମହାପାତ୍ର | ହିନ୍ଦୀ |
| ରାମ ବିବାହ | ୧୯୬୦ | ଗଣେଶ ମହାପାତ୍ର | ହିନ୍ଦୀ |
| ଦଶଭୁଜା | ୧୯୬୦ | ଆଲୋକଚିତ୍ର ପ୍ରତିଷ୍ଠାନ | ତେଲୁଗୁ |
| କଂସ | ୧୯୬୧ | ଉତ୍କଳଚଳଚ୍ଚିତ୍ର ପ୍ରତିଷ୍ଠାନ | ତେଲୁଗୁ |
| ନାଗପୂଜା | ୧୯୬୨ | ଉତ୍କଳଚଳଚ୍ଚିତ୍ର ପ୍ରତିଷ୍ଠାନ | ତେଲୁଗୁ |
| ଭକ୍ତ ଧ୍ରୁବ | ୧୯୬୨ | କର ପିକ୍‌ଚରସ୍ | ବଙ୍ଗଳା |
| ସ୍ତ୍ରୀ | ୧୯୬୮ | ରାଜଶ୍ରୀ ପିକ୍‌ଚରସ୍ | ହିନ୍ଦୀ |

'ଉଦ୍ଭବ'ରୁ



ପ୍ରଥମ ଓଡ଼ିଆ ଚିତ୍ର

# ସୀତା ବିବାହ

## (୧୯୩୬)

ପ୍ରଯୋଜକ ଓ ନିର୍ଦ୍ଦେଶକ : ମୋହନସୁନ୍ଦର ଦେବ୍‌ଗୋସ୍ୱାମୀ, ପୁରୀ

ନାୟକ : ମାଖନଲାଲ ବାନାର୍ଜୀ ନାୟିକା : ପ୍ରଭା

ମହର୍ଷି ବିଶ୍ୱାମିତ୍ରଙ୍କର ଯଜ୍ଞ ଅସୁରମାନଙ୍କଦ୍ୱାରା ବାରମ୍ବାର ବାଧାପ୍ରାପ୍ତ ହେବାଫଳରେ ସେ ମହାରାଜା ଦଶରଥଙ୍କର ଆଶ୍ରୟ ଭିକ୍ଷା କଲେ । ଦଶରଥଙ୍କଠାରୁ ସେ ରାମଲକ୍ଷ୍ମଣଙ୍କୁ ନେବାକୁ ଚାହିଁଲେ; କାରଣ ସେ ଦୁଇଭାଇ ଥିଲେ ଅପ୍ରତିଦ୍ୱନ୍ଦ୍ୱୀ ବୀର । ଦଶରଥ ଅନୁନୟ କଲେ ତାଙ୍କର ସମସ୍ତ ସୈନ୍ୟସାମନ୍ତ ଏବଂ ସେ ନିଜେ ଯଜ୍ଞ ରକ୍ଷା କରିବାପାଇଁ ପ୍ରସ୍ତୁତ । ମାତ୍ର ମହର୍ଷି ଥିଲେ ତାଙ୍କ କଥାରେ ଅଟଳ ତାଛଡ଼ା ଦଶରଥଙ୍କୁ ସତ୍ୟ ରକ୍ଷା କରିବାକୁ ହେବ । ରାମ ଲକ୍ଷ୍ମଣ ତାଡ଼କା ସହ ସମସ୍ତ ଅସୁର ବିନାଶ କଲେ । ଏହି ସମୟରେ ଜଣେ ରାଜଦୂତ ସୀତା ସ୍ୱୟମ୍ବର କଥା ଜଣାଇଲା ଏବଂ ମହର୍ଷିଙ୍କୁ ଆମନ୍ତ୍ରଣ ପତ୍ର ଦେଲା । ମହର୍ଷି ବିଶ୍ୱାମିତ୍ରଙ୍କ ସହ ରାମ ଓ ଲକ୍ଷ୍ମଣ ମଧ୍ୟ ସୀତା ସ୍ୱୟମ୍ବରକୁ ଗଲେ । ପୃଥିବୀର ସମସ୍ତ ରାଜା ମହାରାଜା ସେଠାକୁ ନିମନ୍ତ୍ରିତ ହୋଇଥିଲେ । ଅନିମନ୍ତ୍ରିତ ଭାବେ ରାବଣ ମଧ୍ୟ ଆସିଥିଲା । ଶିବଧନୁରେ ଗୁଣ ଚଢ଼ାଇଲେ ସୀତାଙ୍କୁ ଯେ କୌଣସି ବୀରପୁରୁଷ ବିବାହ କରିପାରିବ ଏହା ଥିଲା ସ୍ୱୟମ୍ବରର ସର୍ତ୍ତ ।



ରାମ ଭୂମିକାରେ ଅଭିନୟ କରିଥିବା
ମାଖନଲାଲ ବାନାର୍ଜୀ

ଗୋଟିଏ ପରେ ଗୋଟିଏ ରାଜପୁତ୍ର ବିଫଳ ହେଲେ । ଧନୁ ନିକଟକୁ ଯିବା ମଧ୍ୟ ସମ୍ଭବପର ହେଲନାହିଁ । ହଠାତ୍ ରାବଣ ଆସି ପହଞ୍ଚିଲା । ସେ ମଧ୍ୟ ବିଫଳ ହୋଇ କଳଙ୍କାର ଭାବରେ ସୀତାଙ୍କୁ ହରଣ କରିବା ପାଇଁ ଅଗ୍ରସର ହେଲା । ବୃଦ୍ଧଆଡ଼େ ହାହାକାର ପଡ଼ିଗଲା । ମାତ୍ର ରାବଣ ଦୈବବାଣୀ ଶୁଣି ପାରିଲା—ତୁ ମଧ୍ୟ କୌଣସି କନ୍ୟାର ପିତା, ତୋ କନ୍ୟାକୁ ଅପହରଣ କରାଯାଉଛି । ରାବଣ ଲଙ୍କାପୁରୀ ଫେରିଗଲା ।

ସଭାସ୍ଥଳରେ ନୀରବତା । ରାଜ୍ୟ କ'ଣ ବୀରଶୂନ୍ୟ ହୋଇଗଲା । ଜାନକୀ କ'ଣ କୁମାରୀ ରହିଯିବେ ? ମହର୍ଷିଙ୍କର ଆଶୀର୍ବାଦ ଓ ଅନୁମତି ନେଇ ରାମଚନ୍ଦ୍ର ଧନୁରେ ଗୁଣ ଦେଲେ । ସମସ୍ତଙ୍କ ମନରେ ଆନନ୍ଦ । କୁମାରୀ ସୀତାଙ୍କ ଓଠରେ ହସର ଝରଣା ଲେଉଟିପଡ଼ିଲା । କିନ୍ତୁ କାଳ ବୈଶାଖୀ ପରି ପଶୁରାମ ପହଞ୍ଚିଥିଲେ । କିଏ ସେ ଶିବଧନୁ ଭାଙ୍ଗିଲା ?

କ୍ରୋଧରେ ତାଙ୍କର ଦେହାଙ୍ଗ ଥରହର । କ୍ଷତ୍ରିୟ ବଂଶ ନାଶ କରିବାପାଇଁ ସେ ଶପଥ ନେଇଥିଲେ । ରାମଚନ୍ଦ୍ରଙ୍କ ଦେହରେ ସେ ନାରାୟଣଙ୍କର ସ୍ୱରୂପ ଦେଖି ପାରିଲେ । ନତଜାନୁ ହୋଇ କ୍ଷମା ମାଗିଲେ ।

ସଭାରେ ଉପସ୍ଥିତ ସମସ୍ତଙ୍କ ମନରେ ଆନନ୍ଦ । ହସହସ ବଦନରେ ସୀତା ରାମଚନ୍ଦ୍ରଙ୍କ ଗଳାରେ ବରଣମାଳା ପିନ୍ଧାଇ ଦେଲେ ।



## —ଗୀତ—

ବିତଳକୁ ଆଲିଙ୍ଗନ        କରି ଜାହ୍ନବୀ ଶୋଭନ
ହରେ ସୁର ବର ତାପେ ସ୍ତୁରୁ ଧାରି ସେ
ବନ୍ଦେ ମକର କେତନ        ଉଚ୍ଛନ୍ନ ରଥ ସମାନ
ପୂରିତ ହୋଇଛୁ ପୁଣି ଅଶେଷ ରସେ
ବିଦ୍ୟା ହୈମବତୀ ପଦରେ
ବିଷଭଣ୍ଡ ତୋଷ ଦାନୀ ବେନ ମତରେ । ୧ ।
ବିଷ୍ଣୁପଦୀ ବିଷ୍ଣୁପଦ        ଇକାର ଭେଦ ଶବଦ
ତରଣୀର ଗତାଗତ ତହିଁ ଉଚିତ,
ବିଶାରଦ ସେ ସାମନ୍ତ        ମତ୍ତରେ ଦାସ ସେବିତ
ତାଙ୍କୁ ନ ଶୁଣନ୍ତେ ରଘୁନାଥ କଥିତ
ବିଷଧର ପ୍ରାପ୍ତେକ ରୁନ୍ଧ
ବେଲେ ନେତ୍ର ତାଳି ଶୁଣ ଉଦାର ନୋହି । ୨ ।
ବଧିର ନୁହଇ ବୀର        ବୋଇଲା ତହିଁ ଧୀବର
ଶୁଣିଲିଣି ପଥରେ ପଥର ଅବଳା,
ବାଲି ପଡ଼ି ତୋ ଚରଣୁ        ଆଶଙ୍କା ଉପୁଜେ ଏଣୁ
ନଉକା ନାରୀକା ହେଲେ ବୁଡ଼ିବ ଭେଳା
ବୃତ୍ତି ଏ ମୋ ପୋଷେ କୁଟୁମ୍ବ
ବସାଇ ନ ଦେବି ପାଦ ନ ଧୋଇ ନାବ । ୩ ।
ବଢ଼ାଇ ଦେଲେ ପୟର        ସ୍ୱବଶାଙ୍ଗୀ ରଘୁବୀର
ପୟରେ କ୍ଷାଳିତ କରି ବସନେ ପୋଛି
ବ୍ରହ୍ମାରେ ଧୌତ ଯେ ପଦ        ନୋହୁଛି ଶିବ ବିଷୋଦ-
ନ ପାଇ ଚରଣାମୃତ ପାନକୁ ଇଚ୍ଛି
ବିଜ୍ଞାନୀ କୈବର୍ତ୍ତ ଧୋଇଲା
ବିଶ୍ୱେ ପତିତପାବନ ନାମ ରହିଲା । ୪ ।

ରଚନା: କବିସମ୍ରାଟ ଉପେନ୍ଦ୍ର ଭଞ୍ଜ



ଟଗ୍ରଟ ଇଷ୍ଟର୍ଣ୍ଣ ମୋଭଟନ୍‌ର

# ଲଳିତା

( ୧୯୪୮ )

ଭୂମିକାରେ : ଲୋକନାଥ ମିଶ୍ର, ଉମା ବାନାର୍ଜୀ, ପଙ୍କଜ ନନ୍ଦ

ନିର୍ଦ୍ଦେଶକ—କାଳୀଚରଣ ପଟ୍ଟନାୟକ



ଲଳିତା ଭୂମିକାରେ ନାୟିକା 'ଉମା'

❊ କାହାଣୀ

ଶବର ରାଜା ବିଶ୍ୱାବସୁଙ୍କର ଅଲଅଲ କନ୍ୟା ଲଳିତା । ଘନ ଜଙ୍ଗଲ ଭିତରେ ଶବରରାଜ୍ୟ । ଲଳିତା ସଖୀମାନଙ୍କ ସହ ଖେଳୁଥିଲେ । ହଠାତ୍ ସେଠାରେ ଏକ ଦିବ୍ୟ ସୁନ୍ଦର ଯୁବକ ପହଞ୍ଚିଲେ । ଦିବ୍ୟ ବ୍ରାହ୍ମଣଙ୍କର ରୂପକାନ୍ତିରେ ଶବରକନ୍ୟା ଲଳିତା ବିମୋହିତ । ଚକ୍ଷୁରେ ପଲକ ପଡ଼ୁନାହିଁ । ସେହି ଦିବ୍ୟ ପୁରୁଷଙ୍କ ନାମ ବିଦ୍ୟାପତି । ତାଙ୍କର ଉଦ୍ଦେଶ୍ୟ ଗୋପନୀୟ । ହୃଦୟରେ ପ୍ରେମର ଫଲଗୁ; ପୁନଶ୍ଚ ଅନ୍ୟ ପାର୍ଶ୍ୱରେ କର୍ତ୍ତବ୍ୟ, ରାଜକାର୍ଯ୍ୟ ।



ଲଳିତା ଭୂମିକାରେ ଉମା ଓ
ବିଶ୍ୱାବସୁ ଭୂମିକାରେ ପଙ୍କଜ ନନ୍ଦ

ନିଜର କର୍ତ୍ତବ୍ୟ ସମ୍ପାଦନ କରିବା ପାଇଁ ବିଦ୍ୟାପତି ଲଳିତାଙ୍କୁ ବିବାହ କଲେ । ରଙ୍ଗରସରେ ଦିନ କଟିଗଲା; ମାତ୍ର ବିଦ୍ୟାପତିଙ୍କର ମନ ନୀଳମାଧବଙ୍କ ସନ୍ଧାନରେ । ଶବରରାଜା ବ୍ୟାଘ୍ରଗୁମ୍ଫାରେ ନୀଳମାଧବଙ୍କର ପୂଜା କରେ । ସେଠାକୁ ସାଧାରଣଙ୍କର ପ୍ରବେଶ ନିଷେଧ । ଅନ୍ଧପୁଟୁଳି ବାନ୍ଧି ବିଦ୍ୟାପତିଙ୍କୁ ନୀଳମାଧବଙ୍କ ଦର୍ଶନକରିବାର ବ୍ୟବସ୍ଥା ହେଲା ।

ତାପରେ······କିଛିଦିନ ପରେ ହଠାତ୍ ନୀଳମାଧବଙ୍କୁ ବ୍ୟାଘ୍ରଗୁମ୍ଫାରୁ ଅପହରଣ କରାଗଲା । ଅପହରଣକାରୀ ଆଉ କେହି ନୁହଁନ୍ତି, ସ୍ୱୟଂ ବିଦ୍ୟାପତି । ମାତ୍ର ଅବନ୍ତୀପୁରରୁ ମଧ୍ୟ ନୀଳମାଧବ ହେଲେ ଅନ୍ତର୍ଦ୍ଧାନ ।



ଲଳିତା ଭୂମିକାରେ ଉମା ଓ
ବିଦ୍ୟାପତି ଭୂମିକାରେ ଲୋକନାଥ ମିଶ୍ର



ରୂପଭାରତୀର

# ଶ୍ରୀଜଗନ୍ନାଥ

( ୧୯୫୦ )

## ସଂଗଠନରେ ॥

କାହାଣୀ—ଅଶ୍ୱିନୀକୁମାର ଘୋଷ
ସଳାପ—ଗୋପାଳ ଚନ୍ଦ୍ର ରଥ
ସଙ୍ଗୀତ—ସୁରେନ୍ଦ୍ରକୁମାର ଦାସ, କୃଷ୍ଣପ୍ରସାଦ ବସୁ, ନକୁଞ୍ଜକିଶୋର ଦାସ ।
ସୁରସ୍ରଷ୍ଟା—ରଣଜିତ ରାଏ
ଫଟୋଗ୍ରାଫି—ପ୍ରବୋଧ ଦାଶ
ଚଳନାଟ୍ୟ ପରିକଳ୍ପନା—ଚିରରଂଜନ ମିଶ୍ର

## ରୂପାୟନରେ ॥

ବିଶ୍ୱାବସୁ—ରାମଚନ୍ଦ୍ର ମାଣିଆ, ଇନ୍ଦ୍ରଦ୍ୟୁମ୍ନ—ଖଗେନ୍ଦ୍ର ମିଶ୍ର, ବିଦ୍ୟାପତି—ଗୋପାଳଚନ୍ଦ୍ର ଘୋଷ, ଗାଲମାଧବ— ବାବୁ, ମାଳ—ଚପଳା ନାଏକ, ନୀଳମାଧବ—କାର୍ତ୍ତିକ ଘୋଷ, ସର୍ଦ୍ଦାର—ରଂଜିତ ରାୟ, ଶକ୍ତିଧର—ଗୌରଗୌର ଘୋଷ, ଭକ୍ତ—ନମାଇଁଚରଣ ହରିଚନ୍ଦନ, ଉତ୍କଳ ଦୂତ—ଭୋଳାନାଥ ଦାଶ, ଅବନ୍ତୀ ମନ୍ତ୍ରୀ—ବଂଶୀଧର, ପଣ୍ଡା—ମଧୁସୂଦନ, ବିଶ୍ୱକର୍ମା—ନିରଞ୍ଜନ ଶତପଥୀ, ମହାରାଣୀ ଗୁଣ୍ଡିଚା—ସୀତାଦେବୀ, ଲଳିତା—ଗୋଲାପୀ ରାଉତ, ମଇନା—ସାବିତ୍ରୀ ଚଉଧୁରୀ, ଲଳିତାର ସଖୀ—ଅନୋଉଆ ରାଉତ, ଜାନକୀ ଚଉଧୁରୀ, ଶବରୀଗଣ—ହରିପ୍ରିୟା, ସୁରେଖା, ଶୀବାମୀ, ଗୀତା, ଲକ୍ଷ୍ମୀ, ରେଖା, ଚମ୍ପା, ବିଦ୍ୟୁତ, ଲକ୍ଷ୍ମୀପ୍ରିୟା ପ୍ରଭୃତି ।

ଆଜି ବଡ଼ଦେଉଳର ଦ୍ୱାର ସମସ୍ତଙ୍କ ପାଇଁ ଉନ୍ମୁକ୍ତ । କିନ୍ତୁ ଏଦ୍ୱାର ବହୁଯୁଗ ପୂର୍ବେ ବାମୁଣଙ୍କ କଳ୍ପିତ ଅସ୍ପୃଶ୍ୟତା ନିବାରଣରେ ଧୂଳିପାତ ହୋଇଥିଲା ଉତ୍କଳର ଏହି ନୀଳାଚଳ ଧାମରେ ।

ଅଗ୍ନାଗ୍ନ ବନସ୍ତ । ତା' ଭିତରେ ଗୋଟିଏ ଗୁମ୍ଫା । ବାଘ ସେଠାରେ ଜନ୍ମିଥାଏ ବୋଲି ନାଁ ବ୍ୟାଘ୍ରଗୁମ୍ଫା । ସେଠାରେ ଶବର ରାଜା ବିଶ୍ୱାବସୁ ପୂଜା କରୁଥାନ୍ତି ନୀଳମାଧବଙ୍କୁ ।

ଅବନ୍ତୀରାଜାଙ୍କ ରାଣୀ ଗୁଣ୍ଡିଚା ଦେବୀଙ୍କ ଇଚ୍ଛାରେ ସେନାପତି ବ୍ରାହ୍ମଣ ଯୁବକ ବିଦ୍ୟାପତି ଆସିଲେ ନୀଳାଚଳକୁ । ଘଟଣାଚକ୍ରରେ ସେ ବିଶ୍ୱାବସୁଙ୍କ କନ୍ୟା ଲଳିତାଙ୍କୁ ବିବାହ କରିବା ପାଇଁ ପ୍ରତିଶ୍ରୁତ ହେଲେ । ତାଙ୍କୁ ସେ ଗୁମ୍ଫା ନିକଟକୁ ଆଖିରେ ପଟିବାନ୍ଧି ନିଆହେଲା । ବିଦ୍ୟାପତି ଅତି ଚତୁର ପୁରୁଷ । ସେ ସାଥିରେ ସୋରିଷ ନେଇ ବାଟସାରା



ଇନ୍ଦ୍ରଦ୍ୟୁମ୍ନ ଭୂମିକାରେ ଖଗେନ ମିଶ୍ର

ବୁଣି ବୁଣି ଯାଉଥାନ୍ତି । ଆଖିରେ ତ ପଟି ବନ୍ଧାଯାଇଛି । ପଥ ମୋଟେ ଦିଶୁନାହିଁ । ଶେଷରେ ସେ ବିବାହ କଲେ ଲଳିତାଙ୍କୁ । ତାପରେ ଫେରି ପୁଣି ଗଲେ ସେଇ ସ୍ଥଳକୁ । ସୋରିଷ ଗୁଡ଼ିକ ଏ ମଧ୍ୟରେ ଗଛ ହୋଇସାରିଥାଏ । ଯେଉଁ ରାସ୍ତା ଦେଇ ସୋରିଷ ଗଛ ଉଠିଥାଏ । ସେଇ ରାସ୍ତାରେ ଯାଇ ସେ ନିର୍ଦ୍ଦିଷ୍ଟ ସ୍ଥାନରେ ପହଂଚିପାରିଲେ । ସେଠାରୁ ନୀଳମାଧବଙ୍କୁ ବିଦ୍ୟାପତି ଲୁଚାଇ ନେଇ ଆସିଲେ ଅବନ୍ତୀ ପୁରକୁ । କିନ୍ତୁ ନୀଳମାଧବ ହେଲେ ଅନ୍ତର୍ଦ୍ଧାନ ।

ଉତ୍କଳ ସମ୍ରାଟ ଗାଲମାଧବ ବାଲି ଖୋଳି ବାହାର କଲେ ବଡ଼ ଦେଉଳ । ନୀଳମାଧବ ଦେଖାଦେଲେ ବାଙ୍କି ମୁହାଣରେ ଦାରୁବ୍ରହ୍ମ ରୂପରେ । ତାପରେ ନୀଳମାଧବଙ୍କ ବିଗ୍ରହ ସକାଶେ ଉତ୍କଳ ସହ ଅବନ୍ତୀର ଯୁଦ୍ଧ ହେଲା । ଯୁଦ୍ଧରେ ଅବନ୍ତୀ ପରାଜୟ ସ୍ୱୀକାର କଲା । ନୀଳମାଧବଙ୍କ ବିଗ୍ରହ ଆସିଲା । ଦେଉଳରେ ଶ୍ରୀଜଗନ୍ନାଥ ପ୍ରତିଷ୍ଠା ପାଇଲେ ।

## ଏଇ ଚଳଚ୍ଚିତ୍ରର ଅଭୁଲା ଗୀତ *

୧ । ନୀଳ ସିନ୍ଧୁତଟରେ ନୀଳ ଅଚଳ, ନୀଳ ବନସ୍ପତି ଘେରିଛି ଜଳ
ନୀଳ ଚନ୍ଦ୍ରେ ରଙ୍ଗ ନେତ୍ର ଚଞ୍ଚଳ, ନୀଳ ନଭ ତଟେ ଘନ ଅନ୍ତଳ ହେ···
ନୀଳ ମେଘମାଳା ଆବୃତ୍ତ ହେ,
ଅନଳ ଲହରେ ଧଳାବକ ମାଳା
ଧାଡ଼ି ଧରି ଅବା ଉଡ଼େ, ମହାପ୍ରଭୁହେ ।
ପତିତ ପାବନ ବାନା ଉଡ଼ାଇ, ପତିତ ଜନେ ଦେଉଛ ବୁଡ଼ାଇ
ପତି ଜଗତ କରି ବଡ଼ାଇ, ପାପୀ ମୁଁ କି ଯାଏ ଆଖି ଏଡ଼ାଇ ହେ···
ଥପ୍ପ ନକର ତାହାକୁ ହେ,
ଥାଇ ପ୍ରଭୁପଣ ହୋଇଲେ କୃପଣ
ନାଦବେ ତଉବାହାକୁ ହେ ।
ଚତୁର୍ବର୍ଗ ଦଅ ତକା ନପୂନ, ଚଣ୍ଡାଳ ବ୍ରାହ୍ମଣ ତୋରେ ସମାନ
ଚଉଦ ଭୁବନେ କେ ସମରଥା, ଚଉରାଶି ନର୍କ ନିବାର ବାଧା ହେ
ଚରାଚର ଚିନ୍ତାମଣି ହେ
ଚରଣ ସେବକ କଣାଦାସ ତୋର
ନିରାଶ ନକର ଜାଣି ।



୨ । ହୋ, ଆଜ ବନେ ମଉସୁମ,
ଉଙ୍ଗର ଫାଙ୍କେ କୁଙ୍କୁମ୍ ମାଖେ ଦିନ,
ଦେବତାର ଚୁମ୍ ।
ଝରଣା ଝିଲ ଝିଲମିଲ ଝିଲ୍‌ମିଲ
ଝଲକ୍ ଜନ୍ମେ, ଜଲେ ଥଲେ ଛୁଟେ
କଡ଼ର ଧୂମ୍ ।
ଶୁନ୍ ଭମରର ଗୁନ୍ ଗୁନ୍ ଗୁନ୍ ଗୁନ୍
ପିଇ ମଉସୁମର ଖୁନ୍,
ନାଚେ ମାତାଲ୍ ତାଲେ ଠମକ୍,
ଠୁମ୍ ଠମକ୍ ଠୁମ୍ ।



୩ । ପିଯୂଷୀରେ ନୀର ଖୋଜେ କ୍ଷୀର ଦେବ ମୂର୍ତ୍ତି
ଏ ରାଇଜେ କ୍ଷୀର ନୀର ମିଶାମିଶି ନାହିଁ

ମାର ଲଗେ ଖାର ପର କ୍ଷୀର ଖିଆ ଭୁଇଁ
ତରୁ ଏଠି କଳ୍ପତରୁ ଲତା କଳ୍ପଲତା
ହଂସ ଏଠି ଗୁଟଲେ ବୁଲେ ହସି କହେ କଥା,
ଯେ ଦେଶ ସରଧା ବାଳି ମିଷ୍ଟ ଗୁଳୁଥାଇ
ସେ ଦେଶର ପଥିକରେ ପିପ୍ପାସା କି ଛୁଇଁ ।



୪ ।  କଥାଟିଏ କହୁଁ ।
ଅଗନାଗ୍ନି ବନସ୍ତରେ ଥିଲା ଫୁଲ ବୋହୂ,
ଗୁପତ ତା ମନ କୁଆଁଶୀ ମଉନାବତୀ
ତା'ର, ବୁକୁରେ ପରାଗ ଥିଲା ଆଉ ଥିଲା ମହୁ ।
କାଉଁରୀ ଦେଶୁ କେ ଆସି ସେ ବନେ ପଶିଲା ଝାସି
କୁମାରୀ ଗୁମାନ ମୁଦ ଫିଟାଇଲା ତହୁଁ ।
ପରଦେଶୀ ପରଶରେ ତାର ଅଧର ଅଧରେ ଥରେ
ସଲଜ ଦରେଇ ଝରେ ଉହୁଁ ଉହୁଁ ଉହୁଁ ।
ଜଡ଼ିଲା ତା ତନୁ ଜାଲେ ପଡ଼ିଲା ଅତନୁ ପାଲେ
ଆଉ ଯା' ରହିଲ ବାକି କାଳିକ ତା' ରହୁ ।



୫ ।  ତୁମେ ଲେଉଟିଲ ନାହିଁ ।
କେତେ ତାରା ଫୁଟି ଉଡରେ ଝଡିଲା ତୁମ ବାଟ ଚାହିଁ ଚାହିଁ ।
ମହୁଆ ମୂଳକ ପୁଲକ ଲୁଟାଇ
ହାଟ ଲେଉଟାଣି ଅଳି
ନଫେରେ କି ଆଉ ଫୁଲବାଣୀ ପାଶେ
ପୀରତି' ସଉଦା କରି;
ତୁମେ କହିଥିଲ ପୀରତି ପାଞ୍ଜିରେ ଗୁଡ଼ ବାଡ଼ ଯୋଗ ନାହିଁ...
ତେବେ କାହିଁ କହ ପୀରତିର ଗୀତ ଆନନ୍ଦଏ ମୋହ ପାଇଁ ।
ତୁମେ କହିଥିଲ କେତେ ଦୂରେ ଚାନ୍ଦ କେତେ ଦୂରେ
କେତେ ଦୂରେ ପୁଣି କଇଁ,
ସରଗୁ ଡ଼ାକୁଚି ସବାଗ ପସରା ଦୂରେ ବହୁ ଦୂରେ ରହି;
ତେବେ କାହିଁ କହ ପୀରତିର ଗୀତ ଆନ ହୁଏ ମୋହ ପାଇଁ ।



# ରୋଲସ୍ ୨-୮
## ( ୧୯୮୧ )

ପ୍ରଯୋଜକ—ରତିକାନ୍ତ ପାଢ଼ୀ
ନିର୍ଦ୍ଦେଶକ – କଲ୍ୟାଣ ଗୁପ୍ତ
ଭୂମିକାରେ—ରତିକାନ୍ତ ପାଢ଼ୀ (ଦ୍ୱୈତ ଭୂମିକା), ପଙ୍କଜ ନନ୍ଦ, କମଳା ପଣ୍ଡା ।

**କାହାଣୀ ※**

ସ୍କୁଲପାଠ ପରେ କଲେଜର ଜୀବନ । ସହଶିକ୍ଷାର ବ୍ୟବସ୍ଥା ଅଛି । ଛାତ୍ରଛାତ୍ରୀ ଉଭୟ ପଢ଼ୁଛନ୍ତି । ଉପସ୍ଥାନ ଖାତାରେ ଜଣକର ରୋଲନମ୍ବର ଦୁଇ ଏବଂ ଅନ୍ୟର ଆଠ । ପାଠପଢ଼ା ସମୟରେ ଦୁଇ ତରୁଣ ମନରେ ଫୁଲ ଫୁଟିଛି । ସେ ଫୁଲ ପ୍ରେମର ଫୁଲ । ତା'ର ସମାଧାନ ପରିଣୟ—। କିନ୍ତୁ ପରିଣୟର ବିରୋଧ କରିଛନ୍ତି ଅଭିଭାବକ । ପ୍ରେମିକାର ବିବାହ ଅନ୍ୟ ସ୍ଥାନରେ ହୋଇଯାଇଛି । ପ୍ରେମିକ କିଛିଦିନ ଦୁଃଖରେ କଟାଇବା ପରେ ତା'ର ମଧ୍ୟ ବିବାହ ଘଟିଛି ।

ମାତ୍ର ବିଧିରବିଧାନ ବଡ଼ ବିଚିତ୍ର । ପ୍ରେମିକାର ଗୋଟିଏ କନ୍ୟା ହେବାପରେ ସ୍ୱାମୀ ମୃତ୍ୟୁମୁଖରେ ପଡ଼ିଛନ୍ତି । ପ୍ରେମିକର ମଧ୍ୟ ପୁଅଟିଏ ହୋଇଛି । ଶିଶୁ ଦୁଇଟି ବଡ଼ ହୋଇଛନ୍ତି । ତରୁଣ ତରୁଣୀଙ୍କ ମନରେ ଉଭୟଙ୍କ ପ୍ରତି ଆକର୍ଷଣ । ସେମାନେ ମଧ୍ୟ ଚାହାନ୍ତି ଗୋଟିଏ ସୁଖର ସଂସାର ଗଢ଼ିବେ । ଅଭିଭାବକ ମାନ ଏଠାରେ ପ୍ରତିବନ୍ଧକ ରୂପେ ବାଧା ସୃଷ୍ଟି କରି ନାହାନ୍ତି । ସେମାନେ ତାଙ୍କର ସନ୍ତାନଙ୍କର ମଙ୍ଗଳପାଇଁ ସ୍ୱୀକୃତି ପ୍ରଦାନ କରିଛନ୍ତି । ଏକ ଆନନ୍ଦମୁଖର ପରିବେଶରେ କାହାଣୀର ପରିସମାପ୍ତି ଘଟିଛି ।



ଉତ୍କଳ କଥାଚିତ୍ରର

# ସପ୍ତଶଯ୍ୟା

## (୧୯୫୧)

ଭୂମିକାରେ—ରାମଚନ୍ଦ୍ର ରାମ୍, ବ୍ୟୋମକେଶ, ପଙ୍କଜ ନନ୍ଦ, ଜୟସିଂହ, କମଳା ପଣ୍ଡା ।
ନିର୍ଦ୍ଦେଶକ : କଲ୍ୟାଣ ଗୁପ୍ତ
କାହାଣୀ : ସଂଳାପ : ଗୀତିକାର
ସହନିର୍ଦ୍ଦେଶକ : } ଅନନ୍ତ ପଟ୍ଟନାୟକ
ସଙ୍ଗୀତ ନିର୍ଦ୍ଦେଶକ : ଉଦୟନାଥ ସାହୁ

**କାହାଣୀ** ❊

ନିପଟ ଜଙ୍ଗଲରେ ପାହାଡ଼ତଳି ଗାଁଟିଏ । ନିସ୍ତରଙ୍ଗ ଗାଁରେ ଚହଲ ଲାଗେ । ଗାଁଟିର ଜୀବନଚକ୍ର ପୁରୁଣାସରରେ ଗଡ଼ି ଗଡ଼ି ଚାଲିଥାଏ । ଗାଁର ମୁଖିଆ ଧର୍ମୁ ଚୌଧୁରୀ ଟିଏଙ୍କୁ ଘେନ ହସଖୁସିରେ ଖେଳକୌତୁକରେ ଦିନ କଟାଉ ଥାଆନ୍ତି । ଜମ୍ବୁ, ସନେଇ ନିଜ ନିଜର ମାମଲତକାରୀରେ ଗାଁକୁ ଉଠାପକା କରୁଥାଆନ୍ତି ।

ରାଧାଚରଣ ନିଜର ସ୍ତ୍ରୀ, କନ୍ୟା ହରାଇ ଓଡ଼ିଶା ଛାଡ଼ି କଲିକତାରେ ବସବାସ କରୁଥାଆନ୍ତି । ତାଙ୍କର ଏକମାତ୍ର ଭଣିଜୀ ଲୀଳା । ରାଧାଚରଣ ନିଜର ସମସ୍ତ ସ୍ନେହମମତା ପିତୃମାତୃହୀନ ଭଣିଜୀ ଲୀଳା ଉପରେ ଢାଳି ଦେଇଥାଆନ୍ତି । ମଝିରେ ମଝିରେ ସେ ଭାବନ୍ତି ଓଡ଼ିଶା ଫେରିଯିବେ । ଓଡ଼ିଶାରେ ଶିଳ୍ପ ସ୍ଥାପନ କରି ତାହାକୁ ସମୃଦ୍ଧ କରିବେ । ସେ ଇତିମଧ୍ୟରେ ଧନକୁବେର ଶିକ୍ଷିତ ମିଃ ରାଏ ଓ ଅନ୍ୟ କେତେଜଣଙ୍କ ସହ ପରାମର୍ଶ କରି ଗାଁର ଆଖପାଖ ଅଞ୍ଚଳରେ କାରଖାନା ବସାଇବା ପାଇଁ ଆୟୋଜନ କଲେ । ଗାଁ ଏବଂ କଲିକତା ମଧ୍ୟରେ ଦୂରତ୍ୱ ସତେ ଯେପରି କମିଗଲା । ଧର୍ମୁ, ଜମ୍ବୁ, ଧର୍ମୁର ଝିଅ କୁମ, ଆଉ ଜମ୍ବୁର ପୁଅ ଧୂଳିଆ, ଏହିଭଳି କେତେ କିଏ । ରାଧାଚରଣ, ମିଃ ରାୟ, ରାଧାଚରଣ ବନ୍ଧୁର ପୁଅ ଯୁବକ ଇଞ୍ଜିନିଅର ଆନନ୍ଦ ଏବଂ ରାଧାଚରଣଙ୍କର ଭଣେଜୀ ଲୀଳା ପରସ୍ପର ସହିତ ଜଡ଼ିତ ହୋଇ ପଡ଼ିଲେ ।

ସମସ୍ତେ ସ୍ୱପ୍ନରେ ବିଚରଣ କଲେ । ପରିଣାମରେ ମହାବିପ୍ଳବ ସୃଷ୍ଟି ହେଲା । ନାରୀ ପ୍ରେମିକା, ନାରୀ ହସି ହସାଏ, କାନ୍ଦି କନ୍ଦାଏ, ପଥର ହୋଇ ସବୁ ସହେ । ଆନନ୍ଦ ଭାଷାରେ ଜନତାର ମୁଖ ନାହିଁ ମାତ୍ର ଧନକୁବେର ମିଃ ରାୟ ଗର୍ଜି ଉଠିଲେ ଜନତାକୁ ଦଳିମକଚି ଦିଆଯାଇପାରେ । ଶିଳ୍ପର ଉନ୍ନତି ଲାଗି ଶ୍ରମିକର ଶ୍ରମ ଆବଶ୍ୟକ । ତାହା ସ୍ନେହ ସୌହାର୍ଦ୍ଦ ବଳରେ କିଣାଯାଇପାରେ, ଅତ୍ୟାଚାରର ଧମକରେ ନୁହେଁ, ହିଂସା, ଦ୍ୱେଷ, ଈର୍ଷା, ସଂଘର୍ଷ ନୁହେଁ ।

ଗାଁଟିର ପରିବର୍ତ୍ତନ ହେଲା, ସମସ୍ୟାର ସମାଧାନ ହେଲା ।



## ଗୀତ

ରଙ୍ଗଧାନ କଏ ଲୁଟି ନେଇଚ ଲୋ
ବାଟରେ ପଡ଼ିଛି ଚପୁ
ଗାଁ ମାଇପେ ଲୋ ଫୁଲଫୁଲ ଦଅ
ମୋ ଖଇ ବେଣୀରେ ବସୁ.
ଦଅଁଣା କଏ ଝଙ୍ଗର ଲୋ
ଗୋପର ଗଉଡ଼ୁଣୀ
ଗୋପେ ଗୋପେ ବୁଲିଯାଉଥାଏ
ପତର-ଶଉରୁଣୀ
ଝୁଣ୍ଟିଆ ବାଜେ ଖମ୍ଭଟାଁ
ଶବଦ ଶୁଭେ ମୋତେ
ଦଧିଖାଇ ମୂଳ ପଶୁରୁଛି
ଝୁଣ୍ଟିଆ ଶବଦ କେତେ ।
ଠିଆ ପୂଚ ନାରଙ୍ଗ, ଗୋଡ଼ ଦଣ୍ଟା ସାରଙ୍ଗ
ସାରଙ୍ଗ ବାଈକ ଯାଇଥିଲ, ସାଗ କେଣ କେଉ ଆଣିଥିଲ
ଅଧେ କରିଥିଲ ଭଜା, ଅଧେ କରିଥିଲ ଚଡ଼ୁଚୁଡ଼ା
କେମିତି ଲାଗିଲା ମଜା, ଆଲୋ କେମିତି ଲାଗିଲା ମଜା ।



(୨୬ ପୃଷ୍ଠାର ଅବଶିଷ୍ଟାଂଶ)

କନ୍ଦୁ କେଦାର ବୁଲୁଛି । ତା'ର ମନରେ ଅସୀମ ଦୁଃଖ । ଗୌରୀ କେଦାର ଘର ତ୍ୟାଗକରି ଯିବାକଥା ଶୁଣି ତା ପରେ ପରେ ଯାଉଛି । ଘୋର ଜଙ୍ଗଲ ମଧ୍ୟରେ ରକ୍ତାକ୍ତ ଲୁଗାପଟା ଦେଖି ସେ ମନେକରୁଛି ବ୍ୟାଘ୍ର ଆକ୍ରମଣରେ କେଦାର ଜୀବନ ହରାଇଛି । ଗୌରୀ ଛୁରି ଭୁଷି ଆତ୍ମହତ୍ୟା କରୁଛି । କିଛି ସମୟ ପରେ କେଦାର ଫେରି ଗୌରୀର ମୃତଦେହ ଦେଖିଛି । ଅତ୍ୟନ୍ତ ଆବେଗ ଫଳରେ ସେ ମଧ୍ୟ ଆତ୍ମହତ୍ୟା କରୁଛି ।



ଉତ୍କଳ ଚଳଚ୍ଚିତ୍ର ପ୍ରତିଷ୍ଠାନର

# ଆମର ଗାଁ ଝିଅ

## ( ୧୯୫୩ )

ସଂଗଠନରେ ✱ ପ୍ରଯୋଜନା—ନରେନ ମିତ୍ର
ଉଦ୍ୟୋକ୍ତା— ଗୋପାଲ ଘୋଷ
ଚିତ୍ରଶିଳ୍ପୀ—ରମେନ ପାଲ
ସଙ୍ଗୀତ—ବୈଦ୍ୟନାଥ ଘୋଷ
ସଂଳାପ—ମନୋରଞ୍ଜନ ଦାସ
ଚିତ୍ରନାଟ୍ୟ ଓ ପରିଚାଳନା – ବିନୟ ବାନାର୍ଜି

ରୂପାୟନରେ ✱ ଖଗେନ, ଗୋପାଳ, ନାୟକ, ଦୁର୍ଲ୍ଲଭ, ନରେନ୍ଦ୍ର, ଶରତ, ପାଣ୍ଡେ, ନରେନ, ନଟବର, ଦେବେନ, ପଣ୍ଡା, ସତ୍ୟ, ମନୋରଞ୍ଜନ, ଭବେଶ, ଚପଳା, ଅନିମା, ଲକ୍ଷ୍ମୀ, ଛଣୋଷ, ଖୁକୁ, ନିର୍ମଳା, ହେମ ।

କାହାଣୀ ✱

ଅନୁ ଓ ଗୋପ, ଅାଇର ସ୍ନେହଚ୍ଛାୟା ପାଇ ବଡ଼ ହୁଅନ୍ତି । ଅନୁ ଆମର ଗାଁ ଝିଅ । ସୁନ୍ଦର ବନାନୀସ୍ତ ତାର ରୂପ । ଫୁଲ୍ଲପଣ ନରମ ତା' ମନ ଓ ଚରଣାପର ସେ ଲୀଳାଚଞ୍ଚଳ । ଗୋପ ତା ଚପଳତା ଦେଖି ଅସ୍ଥିର ହୁଏ ।

ଗୋପ ସରଳ ଓ ନିର୍ଲ୍ଲୋଭ ମୁବକ । ମନ ତାର ମମତା ପ୍ରବଣ । ସେ ସବୁବେଳେ ଚେଷ୍ଟାକରେ ଅନୁକୁ ଖୁସି କରିବ ପାଇଁ । ଆଉ କେମିତି ସୁଖରେ କାଳଯାପନ କରିବ ସେ ଥି ପାଇଁ ତା'ର ଅନେକ ଉଦ୍ୟମ !



[ 'ଆମର ଗାଁ ଝିଅ'ରେ ଅନିମା ପେଡ଼ିଜ, ଗୌର, ଖଗେନ ]

ସେଇ ଗାଁର ବିନୋଦ । ସେ ଅନେକ ଦିନ୍ ବିଦେଶରେ । ସେଠାରେ ସେ ଡାକ୍ତରୀ ପାଶ୍ କରି ଗାଁକୁ ଫେରି ଆସିଛି । ଜମିଦାର ଗୃହିଣୀ—ସ୍ନେହାବେଶରେ ପୁଅ ବିନୋଦକୁ କୋଳକୁ ଟାଣି ନେଇଛନ୍ତି ।

'ଗନ୍ଧର୍ବ' ଅର୍ଥାତ୍ ଗଉଆ ପିଲାଦିନର ସାଙ୍ଗ ହିସାବରେ ନିମନ୍ତ୍ରଣ କରିଛି ବିନୋଦକୁ ତା' ବାହାଘରର ବରଯାତ୍ରୀ ହୋଇ ଯିବାକୁ । ବାଲ୍ୟବନ୍ଧୁର ନିମନ୍ତ୍ରଣକୁ ବିନୋଦ ଉପେକ୍ଷା କରିପାରନି । ସେ ଯାଇଛି ଏବଂ ଏକ କଠିନ ସମସ୍ୟାର ସମ୍ମୁଖୀନ ହୋଇଛି ।

ଗାଁ ଟାଉଟର ମହାପାତ୍ରେ ପୁଅ ଗନ୍ଧଅ଼ର ବିବାହ ପାଇଁ ଦାବୀ କରନ୍ତି ଅନେକ ଟଙ୍କା । କନ୍ୟା ରମାର ବାପା ବ୍ରଧାନାଥ ତାଙ୍କ ଦାବୀକୁ ପୂରଣ କରିବାପାଇଁ ଅସମର୍ଥ । ମହାପାତ୍ର ରମାର ଜନ୍ମକୁ ଲକ୍ଷ୍ୟକରି କୁତ୍ସିତ ଇଙ୍ଗିତ କରନ୍ତି । ବିନୋଦ ଏଥିପାଇଁ ମହାପାତ୍ରଙ୍କୁ ଅନେକ ଅନୁରୋଧ କରନ୍ତି । ତଥାପି ସେ ନିବୃତ୍ତ ହୋଇନାହାନ୍ତି । ସନ୍ଧ୍ୟା ବେଦୀରୁ ଉଠି ଆସିଛି ।

ଅସହାୟା ବାଳିକାର ଭବିଷ୍ୟତ ଓ ତା' ପିତାର ଦୁର୍ଦ୍ଦଶା କଥା ଚିନ୍ତାକରି ବିନୋଦ ବିବାହକରେ ରମାକୁ । ମହାପାତ୍ର ପ୍ରତିଶୋଧ ନେବାକୁ ଧମକ ଦେଖାଏ ।

ରମା ଆସେ ଜମିଦାର ଘରର ପୁତ୍ରବଧୂ ହୋଇ ।

ହଠାତ୍ ଦିନେ ବିନୋଦ, ମା'ଙ୍କୁ କହିଛି କଟକ ଯାଇ ପ୍ରାକ୍‌ଟିସ କରିବା କଥା । ମା' ମନା କରନ୍ତି । ଏମିତି ଦିନ ଗଡ଼ିଯାଇଛି । ଆକସ୍ମିକଭାବେ ପୁଣି ଦିନେ ବିନୋଦର ଦେଖା ହୋଇଛି ଅନୁ ସହିତ ।

ବିନୋଦ ଅନୁ ଘରକୁ ଯାଏ । ଆଉ ବସି କେତେ କଥା ଗପେ । ବିନୋଦ ଘରକୁ ଫେରି ମା'ଙ୍କୁ ଟଙ୍କା ମାଗେ । ଅନୁର ବାହାଘର ପାଇଁ ଟଙ୍କା ଆବଶ୍ୟକ ବୋଲି ଜମିଦାର ଗୃହିଣୀ ଜାଣିବାକୁ ପାଇଲେ । ପୁଅର ସାହାଯ୍ୟ ମନୋବୃତ୍ତି ଦେଖି ତାଙ୍କ ମୁଖରେ ଆନନ୍ଦର ଗ୍ରୀଳ ଖେଳିଯାଏ ।

ଅନୁର ବିବାହ ପଥରେ ପ୍ରାଚୀରପରି ଛିଡ଼ା ହୁଏ ଗୋପ—ଦୁଇଜଣଙ୍କ ଭିତରେ ଭୁଲ ବୁଝାମଣା ସୃଷ୍ଟି ହୁଏ । ମହାପାତ୍ରର ଦଳରେ ଯୋଗଦିଏ ଅନୁର ଗଣ୍ଡୋଉ଼ବାପ ଶ୍ୟାମ । ଚକ୍ରାନ୍ତ ଚରମକୁ ଉଠିଛି । ଦେଶସେବା, ଅଧିକ ଖାଦ୍ୟ ଉତ୍ପାଦନ ପ୍ରଭୃତି ଜନହିତକର କାମରେ ନିଜକୁ ନିୟୋଜିତ କରି ଆଗେଇ ଆସିଛି ଧନୀଯୁବକ ଅଜିତ ।

ମହାପାତ୍ର ପ୍ରତିଶୋଧ ନେବାର ଯୋଜନାକୁ କାର୍ଯ୍ୟକାରୀ କରିଛି । ରକ୍ତ ଓ ଗୃହଦାହ ଭିତର ଦେଇ ସେ ପ୍ରତିଶୋଧ ବିଙ୍ଗରତାର ରୂପ ନେଇ ପ୍ରକାଶ ପାଇଛି ।

ଶେଷରେ ସେଇ ପ୍ରତିହିଂସା ବା ପ୍ରତିଶୋଧ ଯଜ୍ଞରେ ଆହୁତି ହୋଇଚ ନିରୀହା ସରଳା ଅନୁ......

ଏଇ ଚଳଚ୍ଚିତ୍ରର ଗୀତ *

ପହିଲି ଆଷାଢ଼ର ଅଶାନ୍ତ ବାଦଲ ଭୁରେ   ଦୂରେ ଯା—ଦୂରେ ଯା......
ତୋ' ମଉଳା ଗ୍ରୀଇ ମୋର ସାଧ ମରମ ଯେରେ   ଦୂରେ ଯା......
ଉଦାସୀ ମୋ' ପ୍ରିୟ ମନର ପରାଣ   ଲିଭିବ ହେଲେ ତୋ ଝିରିଝିରି ସୁରେ ।
ନ ଜାଣେ କି ହେଲା ଆଜି ସେ ବାଉଳା
ଅଶ୍ରୁ ଜୁଆର ମୋ ନୟନେ ଦେଲା
ଯେ ନୟନ ତାରେ ମନଭୁଲା ତାର   ସୁନେଲି ସପନ ଝୁରେ ।
ଯଉଛି ସରଗ ଲୁଟିଛି ପରାଗ ବଇଶାଖୀ ଝଡ଼
ସେଦିନ ନାହିଁରେ ମେଲିବ ପୁଚ୍ଛ ମୟୂର ମୋର
ଆସିଲେ ସେଦିନ ହୃଦ ଅଗନ   ଭରିବୁ ସୋହାଗ ଧାରେ ।



**ରାଧା ପିକ୍‌ଚରସ୍‌ର**

# କେଦାର ଗୌରୀ

**( ୧୯୫୪ )**

ପ୍ରଯୋଜକ : ଚୌଧୁରୀ ବଳରାମପ୍ରସାଦ ଦାଶ
ନିର୍ଦ୍ଦେଶକ : ମନୋରଞ୍ଜନ ଦାସ, ନିତାଇ ପାଲିତ
ସଂଗୀତ ନିର୍ଦ୍ଦେଶକ : ବାଲକୃଷ୍ଣ ଦାଶ

**ଭୂମିକାରେ ✳** ଗୌର, ବୀଣା, ନିତାଇ ପାଲିତ, ଶ୍ରୀକାନ୍ତ ମହାନ୍ତି, ଗୋବିନ୍ଦ **ତେଜ,**
ଧୀର, ରାଧାରାଣୀ, ଶ୍ଲୋକଥା, ହମିଦ୍ ନାସାଦ୍

**କାହାଣୀ ✳**

ଧନୀ ସୌଦାଗରର ଅଲିଅଳ କନ୍ୟା ଗୌରୀ । ସେଇ ଗାଁର ଯୁବକ **କେଦାର ।** **ଉଭୟଙ୍କ** ମଧ୍ୟରେ ସାକ୍ଷାତ ହୁଏ । **ସାକ୍ଷାତ** କ୍ରମଶଃ ନିବିଡ଼ ହୁଏ । ଦୁଇଟି ପ୍ରାଣରେ **ପରସ୍ପର** **ପାଇଁ** ଭଲପାଇବାର ବୀଜ କ୍ରମଶଃ ଅଙ୍କୁରୋଦ୍‌ଗମ୍ ହୋଇ ଧୀରେ ଧୀରେ ପରିପୁଷ୍ଟ **ହୁଏ ।** **କିନ୍ତୁ ନିର୍ମଳ** ଆକାଶ ବୁକୁରେ ହଠାତ୍ ଅଘଟନମେଘ ଦେଖାଦିଏ । ହଠାତ୍ **ବ୍ୟବସାୟ** **କରିବାପାଇଁ** ଜଣେ ସୌଦାଗର ସେଠାରେ ପହଞ୍ଚେ । ଯୁବକ ସୌଦାଗରର **ଲୋଭ** **ଗୌରୀ** ଉପରେ ନୁହେଁ ତା' ପିତାର ଅକଳନ ସମ୍ପତ୍ତି ତଥା ହୀରାନୀଲା ଉପରେ । **କୁଚକ୍ରୀ**



'କେଦାର ଗୌରୀ' ରେ ବୀଣା, ଗୌରପ୍ରସାଦ

**ସୌଦାଗରର** ଯୋଜନା ସଫଳ ହୁଏ । ତା ପୁଅ ସହିତ ଗୌରୀର ବିବାହସ୍ଥିର **ହୋଇଯାଏ ।** **ବିବାହ ପ୍ରସ୍ତାବ** ଶୁଣି କେଦାର ମନଦୁଃଖରେ ଗାଁ ଛାଡ଼ି ଘୋର ଜଙ୍ଗଲକୁ ପାଦ **ବଢ଼ାଏ ।** **ହିଂସ୍ର** ବ୍ୟାଘ୍ର ସିଂହ ପୂର୍ଣ୍ଣ ଜଙ୍ଗଲରେ ମଣିପଞ୍ଜବନ କେତେବେଳେ ଦିବ ତାର ଠିକଣା**ନାହିଁ ।**

(୧୩ ପୃଷ୍ଠା ଦେଖନ୍ତୁ)

**ଡିସେମ୍ବର**

# ଭାଇ ଭାଇ

( ୧୯୫୫ )

**ସଂଗଠନରେ** * କାହାଣୀ—ଶାନ୍ତନୁକୁମାର ଦାସ
ଚିତ୍ରଶିଳ୍ପୀ—ଦୀନେନ ଗୁପ୍ତ
ସଂଳାପ—ମନୋଜ ଦାସ
ସଂଗୀତ—ଭୁବନ-କିଶନ୍
ସଂଗୀତ ଶବ୍ଦଯୋଜନା—ସତ୍ୟେନ ଭଟ୍ଟାଚାର୍ଯ୍ୟ ।
ଚିତ୍ରନାଟ୍ୟ ଓ ପରିଚାଳନା—ନିତାଇ ପାଲିତ

**ରୂପାୟନରେ** * ବାବି, ଶ୍ରୀକାନ୍ତ, ପୀର, ସଚ୍ଚିଦାନନ୍ଦ, ବିନୋଦ, ଉଦୟନାଥ, ଲକ୍ଷ୍ମଣ, ରବୀନ୍ଦ୍ର, ଗୋବିନ୍ଦ, ପୂର୍ଣ୍ଣି, ହେମନ୍ତ, ଅବନୀ, ସୁଭାଷ, ନରେନ୍ଦ୍ର, ଅକ୍ଷୟ, ନଟବର, ଭଗବତୀ, ଜଲିଲ, ଭବାନୀ, କିଶୋର, ଗୌରପ୍ରସାଦ, ଚପଳା, ନୀଳା, ଲକ୍ଷ୍ମୀ, ରାଧାରାଣୀ, ଶୈଳବାଳା ।

**କାହାଣୀ** *

ବଡ଼ ସୃଷୀପୁରେ ସୁଦୁରିଆ ପଧାନର ଘର ନାଅ । ଘର ଭଲଲୋକ । ଗାଁ ବାହାରିଏ ତା' ଜମି ଘରରେ ଚାଷ କରନ୍ତି । କୁନ୍ତିଆ, ବାହୁରିଆ, ସୁଦୁରିଆ ଅତି ପ୍ରିୟ ବନ୍ଧୁ ।



ଭାଇ ଭାଇ'ରେ ନୀଳ ଦୁଲାଳୀ, ଚନ୍ଦନା

କୁନ୍ତିଆ ପୁଅ ଆଉ ସୁଦୁରିଆ ଝିଅର ଏକମନ, ଏକପ୍ରାଣ । ମୋଟଉପରେ କହିବାକୁ ଗଲେ ଏଇ ଦୁଇଟି ବିବେକୀ, ବିଚାରବାନ ଓ ପରିଶ୍ରମୀ ଲୋକଙ୍କ ମୂଳକର ଗାଁଟିର ସୁଖଶାନ୍ତି ଲାଗି ରହିଥାଏ ।

କିନ୍ତୁ ମାଲ ସର୍ବେ ଦ ଆକାଶରେ ବ ବେଳେ ବେଳେ ଅଦନଅ ଝଡ଼ ଉଠେ ସବୁ ଓଲଟ ପାଲଟ କରିଦିଏ । ଅଯୋଗ୍ୟ, ଅକର୍ମୀ ବାନା ପଣତା ଆଖିରେ ବାଉରିମାନଙ୍କର ଏ ଶିଷ୍ଟ ଚଳନାହିଁ । ଏଇମାନଙ୍କପାଇଁ ସେ କୌଣସି ଫାଇଦା ଉଠାଇ ପାରୁନାହିଁ । ତାର ଦୁଷ୍ଟ ମନ ସୁଯୋଗ ଖୋଜିବାରେ ବ୍ୟସ୍ତଥାଏ ।

ସୁଯୋଗ ଆସିଲା···ସେଦିନ ନଧିଆ ବାଉରୀକୁ ସାଥୀରେ ନେଇ ସୁଦୁରିଆ ଗଲା ବାଙ୍କପୁର ଧାନ ଚାଲ କିଣିବାକୁ । ସଙ୍ଗରେ ବାନା ମଧ୍ୟ ଯାଇଥିଲା । ସେଇଠି କଥାପ୍ରସଙ୍ଗରେ ନଧିଆ ଡାକିଦେଲା—"ସୁଦୁରିଆ ଭାଇ" । ବେଶ୍, ବାନା ଏତକ ଚାହୁଁଥିଲା ।

ନଧିଆ ବାଉରୀ ପୁଣି ସୁଦୁରିଆ ପଧାନକୁ ଡାକିଲା "ଭାଇ" ! ବାଙ୍କପୁର ପଧାନକୁ ବାନା ମନେଇ ଦେଲା ।

କଥାଟା ଖାଲି ବାଙ୍କପୁରରେ ନ ଅଟକି ତାଙ୍କ ନିଜ ଗାଁକୁ ବ୍ୟାପିଗଲା । ତ'ପରେ ଛୁଟିଲା ଘଟଣାର ସୁଅ—ଜଣାପ ହେଲା—ଗୋଟାଏ ପଶୁପରି ନଧିଆ ଉପରେ ମାଡ଼ ହେଲା । ଗାଈ ବଳଦ ବି ଏମିତିକା ମାଡ଼ ଖାଇ ନଥିବେ । ବାଉରୀକୁଳ ବାସନ୍ଦ ହେଲା । ପଧାନଙ୍କ କ୍ଷେତ ସେମାନେ ମାଡ଼ିବେ ନାହିଁ ।

ମୂଲ ନାହିଁ, ମଜୁରି ନାହିଁ । ସେମାନଙ୍କର ପିଲାଛୁଆ ଖେକ ଉପାସରେ ଦିନ-କାଟିଲେ । କୁତ୍ରିଆ ମନରେ ଅଭିମାନ—ସୁଦୁରିଆ ସବୁ ବୁଝି ସୁଝି କିଛି ବୁଝିପାରୁନାହିଁ । ସୁଦୁରିଆ ନିରୁପାୟ । କାଠଆଣ ବଟୁରର ଖଣ୍ଡାଧାରରେ ସେ ଚାଲିଛି । ବାନା ଏହା ଦେଖି ମହାଖୁସି ।

ସବୁ ତ ହେଲା, କିନ୍ତୁ ଚାଷ ହେବ କେମିତି ? ମୂଲିଆ କାହାନ୍ତି ? ବାନା ସାହସ ଦେଲା ଯେ ମୂଲିଆ ଯୋଗାଇବ । ଦିନପରେ ଦିନ ଗଡ଼ି ଚାଲିଲା । ମୂଲିଆ କାହାନ୍ତି ? ବାନା କାହିଁ ? ପଧାନପଡ଼ାରେ ହା-ହା କାର ପଡ଼ିଗଲା । ସମସ୍ତେ ଆସି ସୁଦୁରିଆ ନିକଟରେ ହାଜର ହେଲେ । ଗାଁର ସେ ମୁଖିଆ । ସବୁକଥା ସେଇ ବୁଝେ ।

ବାନାକୁ ଡ଼କରା ହେଲା । କିନ୍ତୁ ବାନା କି ଜବାବ ଦେବ ? ଏ ଘଟଣାରେ ସେ ନିଜଛଡ଼ା ଆଉ କାହାର ସ୍ୱାର୍ଥ ଦେଖିବାକୁ ଚାହିଁ ନଥିଲା । ସବଶେଷରେ ପଧାନପଡ଼ାର ସମସ୍ତେ ବଡ଼ ହନ୍ତସନ୍ତ ହୋଇ ଗ୍ରାମ୍ୟକଥାଟା ହୃଦୟଙ୍ଗମ କଲେ ।



ଏଇ ଚଳଚ୍ଚିତ୍ରର କେତୋଟି ଗୀତ

କେହି କି ଦେଖିଛ ପଲ୍ଲୀ ମା'ର
ହସର ଲେଖା ଲୁହରଢେଉ
ଶୁଣାଇବ ତା' ସୁଖର କଥା
ଶୁଣାଇବ ତା' ବେଦନା ବହୁ ।
ବହେ ମଳୟ, ଝରେ ବଉଳ
ହୋଲିର ରଂଗେ ପ୍ରାଣ ଆକୁଳ

ବନ ଜୋଛନା ସ୍ୱପନ ମାଝେ
ଯାତନା ମନେ ଆସିବ କାହିଁ ?
ପଲ୍ଲୀବଧୂ ଅନ୍ତର ମାଝେ
ମଖାଇ ଦେଇ ସଜନୀ ମୁଖେ
ପ୍ରିୟ ଯେ ତାର ଦୂର ବଦେଶେ
ଖେଳଇ ହୋଲି ସୁଖେ ଦୁଃଖେ ।
ଜୀବନେ ତାର ନାହିଁ ଯେ ଦ୍ୱନ୍ଦ
ଲୁଚ୍ଚଇ ଦିଏ ଅଶୁଭ ଗନ୍ଧ ।
ଶୁଣାଇବି......
ଯାଏ ଉଡ଼ାଇ ଫୁଲର ଲେଖା
ବୈଶାଖୀ ଆଣେ ଧୂମାଳ ରେଖା
ସୁଖେ ଓ ଦୁଃଖେ ବାଦଲ ଲାଗି
ଆକୁଳ ଆଜି ସବୁ ବରଜେ
ସୂର୍ଯ୍ୟ ଆଖି ଉକୁଟି ଉଠେ
ସବୁଜ ସୁଖେ ଧରଣୀ ଫାଟେ
ବର୍ଷା ଆସେ ଗ୍ରୀଷ୍ମ ଶେଷେ—
କଳା ବାଦଲ ଆକାଶେ ଉଠେ ।
କମଳ ଝୁରେ ଲଭେ ତା' ହସ
କୃଷକ ହସେ ନଚ୍ଚଇ ବାହୁ
ଶୁଣାଇବି......



୨ । ରାମ ଯେ ଲଇକ୍ଷଣ ହୋ
ଗଲେ ମୃଗମାର
ଘରେ ମୋ' ଏକଲା ଛୋଡ଼ିଲ ବସୁସୀ
ମୋ' ବିନା ତା' ଦିନ ଅଂଧାରିଆ
ତୁଳସୀର ତଳେ ସୁନା ସୁହାଗୀ
ସଳିତା ଜାଳେ ଗୋପୀ ମୋ'ଲାଗି
ଘଡ଼ିକ ପାଇଁ କି ସେ ବିରହ ସହେନ
ତା' ବିନା ମୋ' ଦିନ ଉଦାସିଆ ରେ......
ଲହଡ଼ି ଲୋଟି ଯାଏ ରେ
ସୁନା କ୍ଷେତେ ମୋର
ଝରୁଛି ମୁକୁତା ମୋହର ଝାଳରେ

[ ଆଗା ପୃଷ୍ଠା ଦେଖନ୍ତୁ ]

ଶବ୍ଦମ୍ବର

# ମା

## ( ୧୯୪୮ )

**ସଂଗଠନରେ** ⁂ ପରିଚାଳନା—ନତାଇ ପାଲଡ
କାହାଣୀ— ଜ୍ଞାନୀନ୍ଦ୍ର ବର୍ମା ।
ଫଟୋ—ଗୋପାଳ ଘୋଷ, ବଶୀକର ଦାସ ।
ଗୀତ ରଚନା—କବିଚନ୍ଦ୍ର, ନରସିଂହ ମହାପାତ୍ର, ଗୁରୁକୃଷ୍ଣ ଗୋସ୍ୱାମୀ, ଅକ୍ଷୟ ମହାନ୍ତି ।
ନୃତ୍ୟ ନିର୍ଦ୍ଦେଶନା—କେଳୁଚରଣ ମହାପାତ୍ର ।
ସଙ୍ଗୀତ—ଭୁବନେଶ୍ୱର ମିଶ୍ର ।

**ରୂପାୟନରେ** ⁂ ଚନ୍ଦନା, ଗୌରପ୍ରସାଦ, ଲକ୍ଷ୍ମୀ, ଗୋବିନ୍ଦ ତେଜ, ବଜପୁ, ଗ୍ଲୋରିଆ, ହେଲେନ୍, ଝରଣା ସବିତା, ଗୀତା, କଂଶାରୀ, ହାଡ଼ମଣି, କ୍ଷେତ୍ରପାଳ, ଅନୁ, ସଚିଦାନନ୍ଦ, ହେମନ୍ତ ଆଦି ଅନେକ ।

**କାହାଣୀ** ⁂

ମନୁଆ ବାପ ଛେଉଣ୍ଡ । ତାକୁ ଦୁନିଆରେ ପାଞ୍ଚଜଣରେ ଜଣେ କରେଇବାକୁ ତା' ମା' ସୁମତୀର ଅନେକ ପ୍ରଚେଷ୍ଟା । ମନରେ ଅକଳନ୍ତି ଆଶା । ମନୁ ତା'ର ପାଠ ପଢ଼ିବ । ବଡ଼ ହେବ ।

ଭାବନାରେ ବିହ୍ୱଳ ହୁଏ ସୁମତୀ । କିନ୍ତୁ ନିୟତିର ନିୟମ ଲଂଘନ କରିବା ଅତୀବ କଷ୍ଟସାଧ୍ୟ । ମନୁର ବାପ ସବୁବେଳେ ବେଶ୍ୟାସକ୍ତ । ମଦ ଖାଇ ଖାଇ ଦେହଟାକୁ ଜାଳଦେଇଛି । ସୁରା ଓ ସାକୀ ହିଁ ତାର ସର୍ବସ୍ୱ । ସେଇଥିରେ ହିଁ ଶେଷରେ ସେ ମରଣକୁ ବରଣ କଲା ।

ନାରୀର ଶଙ୍ଖା ସିନ୍ଦୂର ଶୋଭା ଛାଡ଼ି ମନୁର ମା' ସୁମତୀ ହେଲେ ବିଧବା । ତଥାପି ମନର ଆଶା ଆକାଂକ୍ଷା ନ ହରାଇ ସେ ଆଗେଇ ଚାଲିଲା । ମନୁଆକୁ ସେ ମଣିଷ କରିବ । ରାତି ରାତି ବସି ବଡ଼ି ବିକିଲା । ସିଲେଇ କଲା । ମନୁ ବି. ଏସ୍. ସି. ପାଶ କଲା । ସୁମତୀର ଆଶା ବଢ଼ି ଚାଲିଲା ।

ମନୁ ଏମ୍. ଏସ୍. ସି. ପଢ଼ିବାକୁ କଟକ ଆସିଲା । ଅଭାବ ଅନାଟନରେ ମନ୍ଆ ସବଦା ନିଷ୍ପେସିତ । ଘଟଣା ଚକ୍ରରେ ମନୁ ଚନ୍ଦ୍ରାକୁ ବିଭାହ କଲା । ସୁମିତ୍ରାକୁ କଟକ ନେଇ ଆସି ମନୁ ତା' ଛୋଟ ବସା ଘରେ 'ମା ପୁଅର ଛୋଟ ସଂସାର ଗଢ଼ିଲା ।'

ଭଲପାଇବା ସୃଷ୍ଟିର, ଶାଶ୍ୱତ ଏବଂ ଆଦିମ ପ୍ରକୃତି । ଚନ୍ଦ୍ରା ଭଲପାଇ ବସିଲା ମନକୁ ।



ମା ଚିତ୍ରରେ ନାୟିକା ଚନ୍ଦନା

ସେଦିନ ମନୁଠାରୁ ସବୁକଥା ଶୁଣି ଚନ୍ଦ୍ରା କହିଥିଲା ଦୁନିଆରେ ଆଉ କେହି ତୁମକୁ ନବୁଝିନ୍ତୁ, ମୁଁ ତ ବୁଝିଛି । ପ୍ରକୃତିର ପବିତ୍ର ସାକ୍ଷୀରଖି ମନୁ ଚନ୍ଦ୍ରାକୁ ବିଶ୍ୱାସ କଲା । ପ୍ରଣୟ କ୍ରମଶଃ ନିବିଡ଼ ହୁଏ । ଦୁଇଟି ପ୍ରାଣ ଛନ୍ଦମୁଖର ହୋଇଉଠେ ।

ଆଭିଜାତ୍ୟ ଗର୍ବୀ ନବଘନ, ନିଜ ଝିଅ ଚନ୍ଦ୍ରାର ଏ ପ୍ରକୃତି ଦେଖି ସହି ପାରନ୍ତି ନାହିଁ । ସୁମିତ୍ରାକୁ ଦିନେ ନିଜ ଘରେ ଅପମାନ ଦେଇଥିଲେ । ନିଜ ଜୀବନକୁ ତିଳ ତିଳ କରି ଏତେ କଷ୍ଟରେ ଯେ ନିଜ ପୁଅକୁ ମଣିଷ କରିଛି ସେଇ ମାର ଏ ମର୍ମାନ୍ତିକ ଦୁଃଖକୁ ମନୁ ସହ୍ୟ କରିପାରିଲା ନାହିଁ ।

ଚନ୍ଦ୍ରାକୁ ନ ଜଣାଇଁ ମନୁ କଲିକତା ଚାଲିଗଲା । ଝିଅ ସକାଶେ ବିବ୍ରତ ହୋଇ ନବଘନ ଚୌଧୁରୀ ପ୍ରଶାନ୍ତ ସଂଗେ ଚନ୍ଦ୍ରାର ବିବାହ ଠିକ୍‌କରି କଲିକତାକୁ ପ୍ରଶାନ୍ତ ନିକଟକୁ ଚିଠି ଲେଖିଲେ । କଲିକତାରେ ଯେତେବେଳେ ଏ ବିବାହକଥା ପ୍ରଶାନ୍ତ ଠାରୁ ମନୁ ଶୁଣିଲା ତା' ପରଠାରୁ ଦୁଃଖଭାର କମାଇବା ପାଇଁ ସେ ସୁରାର ଆଶ୍ରୟ ନେଲା ।

ଚିତ୍ରରେ ପ୍ରଶାନ୍ତ କ୍ରମେ ସମୁଦାୟ ଖବର ଜାଣିପାରି ମନୁକୁ କୁପଥରୁ ନିବୃତ କରାଇଛି । ଚନ୍ଦ୍ରାସହ ମନୁର ବିବାହ ବହୁ ବାଦବିବାଦ ପରେ ସଂପନ୍ନ ହୋଇଛି । ସୁମିତ ସୁଖରେ କାଳଯାପନ କରିଛନ୍ତି ।

●

## ଏଁଇ ଚଳଚ୍ଚିତ୍ରର ଅଭୁଲା ଗୀତ କେତେକ *

୧ । ଯେତେ ଆଖି ଥିଲା ବାବୁ ଶୁଣ ଶୁଣ
ଏ ଅଂଜନ କାହାଣୀ ଶୁଣ ଶୁଣ—
ଏ ଯେ ବାବୁ ଦେବତାର ଦାନ
ତାଂକଠୁ ଆଣିଲେ ବାବା ନିରଞ୍ଜନ
ବାବା ମୋତେ ଦେଲେ ଆସି ଆଖିର ଅଞ୍ଜନ—
ସବୁ ଆଖି ରୋଗ ପାଇଁ ଅମୃତ ସମାନ
ଗଲେ ଅବା କେବେ ତୁମେ କୋର୍ଟ୍ କଚେରୀକୁ
ଯିବ ଅବା କେବେ ତୁମେ ହାକିମ ପାଖକୁ
ବାବାଙ୍କ ନାଆଁରେ ବାବୁ ମାଖ ଏ ଅଂଜନ
ଗୃହକଷ୍ଟ ପାଇବ ନିଶ୍ଚେ କେଶ୍‌ରେ ଜିତିବ—
ତେବେ ଯାଇ ଜାଣିବ ଏ ଆଖିର ଅଂଜନ
ନିଅନିଅ ନିଅବାବୁ ଆଖିର ଅଂଜନ—୧
ଯାଇପାରୁନ ରାତିରେ ବଇଶ୍ୱକୁ ଡ଼ରି—
ପାଇ ପାରୁନ ଯାହାକୁ ପ୍ରେମକର ବାବୁ ପ୍ରେମକର
ସାତଥର ତାଙ୍କ ନାଁରେ ମାଖ ଏ ଅଂଜନ
ବଇଶ୍ୱ ହାରିବ ବାବୁ ପ୍ରେମରେ ଜିତିବ
ତେବେ ଯାଇଁ ଜାଣିବ······୨—
ପାନ ସିଗ୍ରେଟ ଖାଇବାକୁ ଥିଲୁତ ନିତି
ଏଥିରୁ ଗୋଟାଏ ରଖ ପଇସାରୁ କାଟି
ଆଖିକୁ ବଞ୍ଚେଇ କର ଆଖି ତେଜସ୍ୱାନ—



୨ । ଗୋସ୍ୱ ଗୋସ୍ୱ ଗୋସ୍ୱ, ଆଗୋ ମାଳ ପସ୍ୱ
ରୁହାଁନା ତୁ ଫେର—ଫେର
ଦୂରେ ଦୂରେ ଦୂରେ
ମନ ନେଇ ତୁରେ
ତୋହର ବୁକୁରେ—ଦିଅନାରେ ଭରି ।
ଝିଲମିଲ ଝୀନ୍ ଓଢ଼ଣି, ଛନଛନ ଅଙ୍ଗେ ତୋ ଘେର
ଚୁପିଚୁପି ହସି ଯାଅନା, ମନ କାର ନେଇ ଯାଅନା—

ଯାଅ ଯାଅ ଯାଅରେ
ଗୃହେଁ ନା ମୁଁ ଛୋଡ଼ରେ
ଦୂରେ ଯା ତୁ ଫେର । ୧ ।
ଝିର ଝିର ହସ ଝରଣା, ଛପିଛପି ଆଜ ବୃନ୍ଦାନା
ମନେ ମନେ ତୋର କା' ଲାଗି, ଢନଢନ ରହୁରେ ଜାଗି
ଜାଣେ ଜାଣେ ଜାଣେରେ
କଏ ତୋର ଦୁଆରେ
ନନ୍ତ ଯେ ଭିକାରୀ । ୨ ।
**

୩ । ମୁଁ ଯେ ଭାସି ସପନେ, ଉଡ଼ ତାରା ଗଗନେ
ପ୍ରଣୟର ରଂଗେ, ତୁମ ପ୍ରୀତି ଛନ୍ଦେ—ଲେଖେ ମୁଁ ଗୋପନେ
ତୁମ ଛବି ମରମେ । କେବେ ଯଦି ବରହ
ଧାଆ ଝର ଧରାରେ
ଭାସିଯିବ ଏ ଛବି ଦୂରେ ଲୁହ ସାଗରେ ।
ମିଳନର କୁଞ୍ଜେ, ଝର ଫୁଲ ଫେନେ—ମଣିବ ଜୀବନେ
ଲୁହଭରା ନୟନେ । ୧ ।
ହଜଯାଏ ଯେସନେ, ସଜରଭ ସମୀରେ
ହଜବ ମୁଁ ତୁମର, ମମତାର ସାଗରେ
ତୁମେ ଯେ ଗୋ ସିନ୍ଧୁ, ମୁଁ ପୂର୍ଣ୍ଣିମା ଇନ୍ଦୁ
ଜନମେ ଜନମେ ମଧୁଭରା ମିଳନେ । ୨ ।



---

[ ୨୯ ପୃଷ୍ଠାର ଅବଶିଷ୍ଟାଂଶ ]
ସୁନା ସ୍ୱପନେ ଭରା ମୋ' ଆଖି
ସୁନା ଗୋଷ୍ଠ ମୋର ମନଲ୍ଷି
ନାହିଁ ଶୋଚନାରେ ନାହିଁ ଶୋଚନା
ମୋର ଗୁହାରି କରିବୁ ଯେନା
ଲେ ମୋର ସୁନା ସଲଡା
ତା' ବନା ମୋ' ବନ ଉଦାସିଆ



ଉତ୍କଳ ଚଳଚ୍ଚିତ୍ର ପ୍ରତିଷ୍ଠାନର

# ମହାଲକ୍ଷ୍ମୀ ପୂଜା

(୧୯୫୯)

**ସଂଗଠନରେ** ⁂ ଚିତ୍ରନାଟ୍ୟ, ଗୀତ—ସତ୍ୟନାରାୟଣ ପଣ୍ଡା
ନୃତ୍ୟ—ସଂଯୁକ୍ତା ଓ ଜୟନ୍ତୀ (ଓଡ଼ିଶା) ମାଧୁରୀ ଓ
ବେଲା (ମାନ୍ଦ୍ରାଜ) ଜୟଶ୍ରୀ (କଲିକତା)
ଚିତ୍ର ଗ୍ରହଣ—ରମାନନ୍ଦ ସେନଗୁପ୍ତ ।
ସଂଗୀତ – ନିଚିକେତା ଘୋଷ ।
ନିର୍ଦ୍ଦେଶନା—ବିଶ୍ୱନାଥ ନାୟକ ।

**ରୂପାୟନରେ** ⁂ ଅନୁଭା, ଶେଫାଳୀ, ଶରତ, ଧୀରେନ୍ଦ୍ର, ଶ୍ରୀକାନ୍ତ, ନରେନ୍ଦ୍ର, ଭୋଳା, ନରୋଜ, ବୃନ୍ଦାବନ, ବାଳଗିରିବନ୍ଧୁ ପ୍ରଭୃତି ।

**କାହାଣୀ** ⁂

ଏହାର ବିଷୟବସ୍ତୁ ପୁରାଣରୁ ଗୃହୀତ । ଶ୍ରୀୟା ଚଣ୍ଡାଳୁଣୀର ଘରେ ଲକ୍ଷ୍ମୀ ଯାଇ ଭୋଗ ଗ୍ରହଣ କରିବାରୁ ଜଗନ୍ନାଥ ଘୃଣା କରିଛନ୍ତି । ଅସ୍ପୃଶ୍ୟ ଘରେ ପ୍ରବେଶ କରିଥିବା ହେତୁ ମନ୍ଦିର ଅପବିତ୍ର ହେବା ଆଶାରେ ଜଗନ୍ନାଥ ଲକ୍ଷ୍ମୀଙ୍କୁ ମନାକରିଛନ୍ତି ମନ୍ଦିର ମଧ୍ୟରେ ପ୍ରବେଶ କରିବାକୁ । ଏଥିରେ ଲକ୍ଷ୍ମୀଙ୍କ ମନ କ୍ଷୁବ୍ଧ ହୋଇଛି ।

ଅସ୍ପୃଶ୍ୟ ମାନବ ମଧ୍ୟ ଭଗବାନଙ୍କର ସନ୍ତାନ । ସବୁ ମଣିଷଙ୍କଠାରେ ଭଗବାନଙ୍କ ସତ୍ତା ନିହିତ ଓ ଏକପ୍ରକାର ରକ୍ତ ସେମାନଙ୍କ ଧମନୀରେ ପ୍ରବାହିତ । ଏ ଧାରଣାକୁ ଶ୍ରୀ ଜଗନ୍ନାଥ କପରି ସ୍ମରଣ କରି ପାରିଲେ ନାହିଁ— ଏଥିରେ ଲକ୍ଷ୍ମୀ ବିସ୍ମିତ ଚକିତ ହୋଇଛନ୍ତି । ତତ୍ପରେ ଲକ୍ଷ୍ମୀଙ୍କ ଅନୁପସ୍ଥିତିରେ ମନ୍ଦିର ମଧ୍ୟରେ ଅନେକ ଅବ୍ୟବସ୍ଥା ସୃଷ୍ଟି ହୋଇଛି । ମନ୍ଦିର ଶ୍ରୀହୀନ । ମନ୍ଦିରରେ ଭୋଗ ବ୍ୟବସ୍ଥା ବନ୍ଦ । ଶ୍ରୀଜଗନ୍ନାଥ ଓ ବଳଭଦ୍ର ଚକିତ ହୋଇ ଏହାର କାରଣ ଜାଣିବାକୁ ପ୍ରଚେଷ୍ଟା କରିଛନ୍ତି । ସେମାନେ ଅନେକ ସ୍ଥାନ ଭ୍ରମଣ କରି କ୍ଷୁଧାର୍ତ୍ତ ଓ ତୃଷାର୍ତ୍ତ ହୋଇ ପଡ଼ିଛନ୍ତି । ଯେଉଁ ସ୍ଥାନକୁ ଯାଇଛନ୍ତି

ସେ ସ୍ଥାନରେ ବିଭିନ୍ନ ପ୍ରକାର ପରିବର୍ତ୍ତନ ଘଟିଛି । ଜଳ ଅନୁସନ୍ଧାନରେ ଯାଇ କେବଳ ମରୀଚିକା ଦର୍ଶନ କରିଛନ୍ତି ।



(ମହାଲକ୍ଷ୍ମୀ ପୂଜା ରେ ଝେଲା, ଅନୁଷା, ଧୀରବିଶ୍ୱାଳ)

ଶେଷରେ ଶ୍ରୀୟା ଚଣ୍ଡାଳୁଣୀର ଗ୍ରାମଉପାନ୍ତ ଘରେ ଉଭୟ ଯାଇ ଉପସ୍ଥିତ । ତୃଷାରେ ଅସ୍ଥିର ଭ୍ରାତୃଦ୍ୱୟ ଖୋଜିଛନ୍ତି ଜଳ । ଆକସ୍ମିକ ଭାବେ ଶ୍ରୀୟା ଚଣ୍ଡାଳୁଣୀକୁ ସେମାନେ ଦେଖିଛନ୍ତି ଗ୍ରାମଉପାନ୍ତସ୍ଥିତ କୂପ ନିକଟରେ । ସେ କୂପରୁ ଜଳ ବାହାରକରୁଛି । ଜଗନ୍ନାଥ ଅସ୍ଥିର ମନରେ ଯାଇ ଶ୍ରୀୟାଙ୍କୁ ଜଳ ମାଗିଛନ୍ତି । ଶ୍ରୀୟା ନିଜର ଦୟାମୟତା ପ୍ରକାଶକରି ଜଳ ଦେଉଛି ପବିତ୍ର ମନରେ ।

ତତ୍ପରେ ଲକ୍ଷ୍ମୀ ସମସ୍ତ ଜାଣିପାରି ସମସ୍ତ ଅବ୍ୟବସ୍ଥାକୁ ଦୂର କରିଛନ୍ତି । ଜଗନ୍ନାଥ ନିଜର ଭ୍ରାନ୍ତି ହୃଦୟଙ୍ଗମ କରି ଲକ୍ଷ୍ମୀଙ୍କ ହସ୍ତ ଧାରଣ ପୂର୍ବକ ମନ୍ଦିରକୁ ନେଇଛନ୍ତି ।



# ଶ୍ରୀଲୋକନାଥ
(୧୯୬୦)

**ସଂଗଠନରେ** ❊ ମୂଳ କାହାଣୀ—ଅଶ୍ୱିନୀ କୁମାର ଘୋଷ, ସଂଳାପ—ବିପିନ ବିହାରୀ ମହାନ୍ତି, ସଂପାଦନା—ସୁକୁମାର, ସେନଗୁପ୍ତ, ଚିତ୍ରଶିଳ୍ପୀ—ରାମାନନ୍ଦ ସେନଗୁପ୍ତ, ସଂଗୀତ—ବାଲକୃଷ୍ଣ ଦାସ, ଚିତ୍ରନାଟ୍ୟ—ପ୍ରେମେନ୍ଦ୍ର ମିତ୍ର, ପରିଚାଳନା—ପ୍ରଫୁଲ୍ଲ ସେନ୍‌ଗୁପ୍ତ ।

**ରୂପାୟନରେ** ❊ ମଣିମାଳା, ଉର୍ବଶୀ, ଶାନ୍ତି, କାନନବାଳା, ଅନ୍ନପୂର୍ଣ୍ଣା, ଇନ୍ଦୁମତୀ, ନିର୍ମଳା, ବାବି, ଅକ୍ଷୟ, ସୌମେନ୍ଦ୍ର, ବିମଳ, ଖଗେନ୍ଦ୍ର, ପାଣ୍ଡେ, ଟିମା, କ୍ଷେତ୍ରପାଳ, ଶିବୁ, ଦୁଃଖୀରାମ, ଗୀତବାସ, କ୍ଷୀରୋଦ, ବୃନ୍ଦାବନ, ଅନାଦି, ବାଞ୍ଛାନିଧି, ଶୈଲେନ, ଦୟାନିଧି, ବେଣୁଧର, ମଦନମୋହନ, ନିତ୍ୟାନନ୍ଦ, ପରମାନନ୍ଦ, କୃଷ୍ଣ, ମଧୁସୂଦନ, ଓ ଆହୁରି ୧୦୧ ଜଣ । ଶିଶୁ ଅଭିନେତା—ଝୁନୁ ଓ ଇନ୍ଦ୍ରଜିତ ।

**କାହାଣୀ** ❊

ବାସୁଦେବପୁର ଗାଁ । ସେଦିନ ଅଜୟ ପଟ୍ଟନାୟକଙ୍କ ଘରେ ସାନଭାଇ ବିଜୁକୁ କେନ୍ଦ୍ରକରି ଅଜୟ ଓ ତା' ସ୍ତ୍ରୀ ବାସନ୍ତୀ ମଧ୍ୟରେ ମନୋମାଳିନ୍ୟ ସୃଷ୍ଟିହୁଏ । କୁଟନୀ ବଣି ମହାରଣା ଏହାର ସୁଯୋଗ ନିଏ । ଫଳରେ ଶ୍ରୀଲୋକନାଥ ଦର୍ଶନପ୍ରାର୍ଥୀ ପଡ଼ୋଶୀ ସୋମନାଥ ବାବୁଙ୍କ ପରିବାର ସହିତ ବିଜୁ ପୁରୀ ଯାତ୍ରା କରେ । ଶ୍ରୀଲୋକନାଥଙ୍କ ବେଢ଼ାର ଏକାନ୍ତ ଓ ମୁକ୍ତ ପରିବେଶରେ ବିଜୁ ଓ ସୋମନାଥଙ୍କର ଝିଅ ଲକ୍ଷ୍ମୀ ମଧ୍ୟରେ ପରସ୍ପର ପ୍ରତି ଥିବା ଅନୁରାଗ ଆତ୍ମପ୍ରକାଶ କରେ ।



ଏକ ମୁଖ୍ୟଭୂମିକାରେ ବାବି

ପରେ ସ୍ନେହମୟୀ ଭାଉଜର ସନ୍ତାନ କାମନା କରି ବିଜୁ ଶ୍ରୀଲୋକନାଥଙ୍କୁ ଆକୁଳ ନିବେଦନ ଜଣାଏ । ବିଜ୍ଞାନର ଜୟଯାତ୍ରାରେ ଗର୍ବିତ ଅଜୟ ବାସନ୍ତୀର ଦେବ ଭକ୍ତିକୁ ପରିହାସ କରେ । ମାତ୍ର, ଯଥା ସମୟରେ

ବାସନ୍ତୀର ପୁଅ ସନ୍ତାନ ଜାତ ହୁଏ । ଭ୍ରାତାର ଏକ ନଭୃତ ମନ୍ତବ୍ୟରେ ଆଘାତ ପାଇ ଅନ୍ତର୍ଦ୍ୱନ୍ଦ୍ୱରେ କ୍ଷତ ବକ୍ଷତ ବଜୁ ମଣିଷ ହେବାର ସଂକଳ୍ପ ଗ୍ରହଣ କର ଗୃହତ୍ୟାଗ କରେ ।

ଲକ୍ଷ୍ମୀ ହୁଏ ଗୃହିଣୀ । କନ୍ତୁ ତାର ହୃଦୟକୁ ଆଚ୍ଛନ୍ନ କର ରଖେ ବଚ୍ଛେଦର ଅମାନଶା । ଅଜୟ ଓ ବାସନ୍ତୀର ଭାଗ୍ୟାକାଶରେ ମଧ୍ୟ ଦେଖାଦଏ ଦୁର୍ଯୋଗର ଝଡ଼......

ସେହି ଝଡଝଂଜାରେ ଅସମ୍ଭାଳ ହୋଇପଡ଼େ ବଜୁ । ଏହାପରେ ନାନା ବଡମ୍ବିତ ପଛଭୂମିରେ ଆସି ଦେଖାଦଅନ୍ତି ଉମା ଓ ଅଶୋକ, ସୂର୍ଯ୍ୟନାରାୟଣ ଏବଂ ପ୍ରକାଶ ।

ଆଲୋକ ଓ ଅଂଧକାରର ଦ୍ୱନ୍ଦ୍ୱମଧ୍ୟରେ ନୂତନ ଯୁଗର ଉନ୍ମେଷ ଘଟେ...ଅଜୟ ଓ ବାସନ୍ତୀ କ୍ରମେ ଶ୍ରୀଲୋକନାଥଙ୍କ ମହିମାକୁ ଅସ୍ୱୀକାର କରନ୍ତି । ବାସନ୍ତୀର ପୁଅକୁ ସର୍ପଦଂଶନ କରେ । ସମସ୍ତେ ମର୍ମାହତ ଓ ଚକତ ଏଥିରେ । ବଜୁ ଶ୍ରୀଲୋକନାଥଙ୍କ ନକଟରେ ଆକୁଳ ନବେଦନ ଜଣାଏ ପୁତୁରାର ମଙ୍ଗଳକାମନା କର । ବସନ୍ତୀର ପୁଅକୁ ପରେ ଜଣେ କେଳା ଲାଳନପାଳନ କର ବଞ୍ଚାଏ । ପରେ ଲକ୍ଷ୍ମୀର ଆକାଂକ୍ଷିତ ରଂଗୀନ ସ୍ୱପ୍ନ ଶ୍ରୀଲୋକନାଥଙ୍କ ଦୟାରୁ ସାର୍ଥକ ହୋଇଛି । ଶ୍ରୀଲୋକନାଥ ହିଁ ଚରନ୍ତନ ଏବଂ ସତ୍ୟ ଏହା ସବଶେଷରେ ପ୍ରମାଣିତ ହୋଇଯାଇଛି । ଅଜୟ ବାଧ୍ୟ ହୋଇଛି ଶ୍ରୀଲୋକନାଥଙ୍କ ମହିମାକୁ ବଶ୍ୱାସ କର ସମ୍ମାନ ଦେବାକୁ ।

**କେତୋଟି ଗୀତ** *

ତୁ କ ପରଦେଶୀ ନଜ ଦେଶେ ?
ଅଭିମାନେ କରେ ଛାଡ଼ ନଜବାସ ଯାଉ କେଉଁ ଦୂର ପରବାସେ ।
ଯେ ଥିଲାରେ ତୋର, ସେ ହେଲାକ ପର
ଘର ଛାଡ଼ କାହାକୁ ତୁ କରବୁ ନଜର
କାହା ଲାଗି ଯାଉଁରେ ପଥିକ ଆଜ ପଥ କାହିଁ ନାହିଁ ଦଶେ ।
କପାଳେ ତୋ' ଥିଲା ଲେଖା ଅଜଣା ବାଟେ
ବାଟୋଇ ତୁ ହେବୁ କରେ ଚାଲ ଅବାଟେ
ହଜଲା ସେଦନ କଥା ହଜ କ ଗଳାରେ ଶେଷେ ।

*

ଉମା—ଗୃହେ ନା ମିଛ ଏ ବଂଧନ ଗୃହେ ନା ।
ଅଶୋକ—ନୂଆମନ ଭାଂଗି ତୁମେ ଯାଅନା

ଉମା—ଭାସି ବୁଲ ଏକା ଆକାଶ ମେଘେ
ନିଜ ଲାଗି ଗୀତ ଗାଏ ସ୍ୱରଗେ
କାହା ମନ ଜଗି ମୁଁ ତ ଗାଏନା ।
ଅଶୋକ—ଏଇ ଯେ ସାଗର ଏଇ ବାଲିବେଳା
ହଜିଛି ଆମର କେତେ ମିଛ ଖେଳା
ଉମା—କେତେ ଯେ ଲହରୀ ସେଇ ବାଲିଘର
ଭାଂଗିଚି ଉଜାଡ଼ି ଆମ ହସିଲା ସଂସାର
ଅଶୋକ—ମନେ କି ଗୋ କେବେ ତୁମ ପଡ଼େନା ?
ଉମା—ଭାସିଯିବ ଯେବେ ଯିବ ମୁଁ ସାଥେ
ଯିବା ଚାଲି ଦୁହେଁ ନୂଆ ଜଗତେ ।
ଉଭୟେ—ସାକ୍ଷୀ ସାଗର ନାହିଁ ଭାବନା ।

ଆଜି ଆକାଶେ କି ରଙ୍ଗ ଲାଗିଲା ଚୈତ୍ର ପବନେ ସୁରଭି କେ ଦେଲା ?
ବାଜେ କାହା ଆଗମନୀ ଗୀତିକା ସାଜେ ନୂଆ ସାଜେ ବନ-ବୀଥିକା
ଚମ୍ପା ଫୁଲେ ଫୁଲେ ଆଖି ଠାରିଲା ?
ସାତ ଦରିଆ ପାରି ରାଜକୁମାର
ନାହିଁ ନ ଥିବା ଯା ରୂପର ଗୁମର;
ସେ କି ପକ୍ଷୀରାଜେ ଚଢ଼ି ଅଇଲା ?
ଏଣେ ଲାଜବତୀ କନ୍ୟା ମଣ୍ଡନେ କେତେ ଆଶା ଇନ୍ଦ୍ରଧନୁ ତା'ମନେ
ସତେ ଅତନୁ କି ଛପି ଛୁଇଁଲା···

ଫୁଲ ରସିଆରେ ମନମୋର ଛୁଇଁ ଛୁଇଁ ଯା ଯା
ତୋ' ଲାଗି କଳଣୀ ରହିଁଚି ଏ କୁଞ୍ଜେ ଗୁଞ୍ଜନ ଦେଇ ଯା ଯା
ଯା' ନାରେ ଫେରି ଆସି ପାଶେ ଯା'ନା
ଗା' ମନ ଭରି କରନା ତୁ ମନା ଝୁରିଲେ କି ଆଉ ଆସିବ ଏ ଦିନ
ହସିଲେଟି ଗାଇ ଯା ।
ସାଜ କେତେ କୁଞ୍ଜେ କେତେ ଫୁଲଶେଯେ ମହକ ଛୁଟାଇ ମରେ ନତ ଲାଜେ
ଲାଜ ତେଜି ଆଜି କରୁଛି ଅରଜି
ଥରେ ଧୀରେ ରହିଁ ଯା··· ।



ଉତ୍କଳ ଚଳଚ୍ଚିତ୍ର ପ୍ରତିଷ୍ଠାନର

# ପ ରି ଣା ମ

## ( ୧୯୭୦ )

ପ୍ରତିଷ୍ଠାତା—କବିରାଜ ଶ୍ରୀକୃଷ୍ଣଚନ୍ଦ୍ର ତ୍ରିପାଠୀ
ନିର୍ଦ୍ଦେଶକ—ବିଶ୍ୱନାଥ ନାୟକ
ସଙ୍ଗୀତ ନିର୍ଦ୍ଦେଶକ—ଭୁବନେଶ୍ୱର ମିଶ୍ର
ପ୍ରଚ୍ଛଦପଟ୍ଟଶିଳ୍ପୀ— ଅକ୍ଷୟ ମହାନ୍ତି, ସନ୍ଧ୍ୟା ମୁଖାର୍ଜୀ, ନିର୍ମଳା ମିଶ୍ର
ଭୂମିକାରେ—ପ୍ରମୋଦକୁମାର, ଗୀତିସୁଧା, ଦୁଃଖୀରାମ, ଧୀର, ତୁଷାର, ମାଷ୍ଟର ମାଣିଆ ।

**କାହାଣୀ** ❊

ବିଶିଷ୍ଟ ବ୍ୟବସାୟୀ ଲୋକନାଥ ରାଉତଙ୍କ ସାନପୁଅ ଅଜୟର ସେଦିନ ବାହାଘର । ଗୁରୁଆଡ଼େ ଶଙ୍ଖ, ହୁଳହୁଳି, ବାଦ୍ୟବାଜଣା, ହସର ଉତ୍ସବ ।

ଅଦିନ ମେଘରେ କିନ୍ତୁ ବେଳେବେଳେ ଝଡ଼ ଦେଖାଦିଏ । ଆନନ୍ଦରେ ଥିଲା ଘରଟି ଅକସ୍ମାତ୍ ସ୍ତବ୍ଧ ହୁଏ !! ରାଉତଙ୍କ ସ୍ତ୍ରୀ ବାସନ୍ତୀର ଏକାନ୍ତ, ସେ ବୋହୂକୁ ଗ୍ରହଣ କରିବେନି । ମା ବାପହରା ଗୋଟିଏ ଗରିବ ଝିଅକୁ ବୋହୂକରି ବୃଦ୍ଧ ଲୋକନାଥ ବାସନ୍ତୀକୁ ହତାଶ କରନ୍ତି ।



ପରିଣାମର ନାୟିକା ଡାଃ ଗୀତିସୁଧା

ନିତିନିତି ସୂର୍ଯ୍ୟଉଇଁ ପୁଣି ଅସ୍ତ ଯାଏ, ନୂଆରଙ୍ଗ ନିଏ ପୃଥିବୀ; ନୂଆ କଥା କହେ । ଆପଣାର ସମସ୍ତ ସେବା ତ୍ୟାଗ-କରି ଦେଇବି ନୂଆବୋହୂ କରୁଣା କିନ୍ତୁ ଟଳେଇ ପାରେନି ଶାଶୁଙ୍କର ନିଷ୍ଠୁର ପ୍ରତିଜ୍ଞାକୁ । 'ମା' ମା' ବୋଲି କେତେ ସେ ଡାକେ··· ହୃଦୟ ଅଜାଡ଼ ମମତା ଦିଏ···;

ପ୍ରତିଦାନରେ କିଛି ପାଏ ଖାଲି ନିନ୍ଦା । ଗୋଟିଏ ବୋଲି ନଣନ୍ଦ; କେତେ ସବୁରେ ତାଙ୍କୁ ଟିକି ବୋହୂକର ସଜେଇବାଅନ୍ତି କରୁଣା !! ସେ ବି ଧରେ ବୋଉର ପଟ । ଯିଏ ସହିପାରେନା, ଦୁନିଆଁ ତା' ଅସ୍ତିତ୍ୱକୁ ସ୍ୱୀକାର କରେନି । ସମସ୍ତ ଦୁଃଖକୁ ହସି ହସି ସହିଯାଏ କରୁଣା ଏବଂ ତାର ଏହି ଅଦ୍ଭୁତ ସହିଷ୍ଣୁତାରେ ମଣିଷ ହୁଏ ଅଜୟ—ତାର ଆଦରର ସ୍ୱାମୀ···ସୁଖଦୁଃଖରେ ହିନ୍ଦୁନାରୀର ଏକମାତ୍ର ସାଥି···ଶର ସମ୍ବଳ ।

ବୃଦ୍ଧ ଲୋକନାଥ ଦୀର୍ଘ ନିଶ୍ୱାସ ମାରନ୍ତି । ଶିକାର ପ୍ରତି ବ୍ୟବସାୟରେ ମନ ଦିଏ ଅଜୟ···କିନ୍ତୁ ନହିଁଆଁ ପୁଅ ଅକ୍ଷୟର ଚକ୍ରାରେ ଘାଂଟିପଡ଼ନ୍ତି ବୃଦ୍ଧ । ମଦ୍ୟପ ଅକ୍ଷୟ ଘରର ସମସ୍ତ ଗହଣା, ଟଙ୍କା ଗ୍ରେଣକର ଅନିର୍ଦ୍ଦିଷ୍ଟ ହୁଏ । ବଡ଼ପୁଅ ବିଜୟ ସ୍ତ୍ରୀର ପ୍ରରୋଚନାରେ ପୈତୃକ ସମ୍ପତ୍ତିକୁ କବ୍ଜା କରିବାକୁ ଚେଷ୍ଟା କରେ । ସର୍ବୋପରି ବୃଦ୍ଧ ଲୋକନାଥଙ୍କ ସରଳତା ଫଳବତୀ କରେ ବଡ଼ ବୋହୂ କୁନ୍ତଳାର ହୀନ ଚକ୍ରାନ୍ତକୁ ।

ବୃଦ୍ଧଙ୍କ ମୃତ୍ୟୁପରେ···ସମସ୍ତ ସମ୍ପତ୍ତିର ମାଲିକ ହୁଏ ବିଜୟ । ଘଟଣା ଚକ୍ରରେ ଅକ୍ଷୟ କାରାରୁଦ୍ଧ ହୁଏ । ପୈତୃକ ସମ୍ପତ୍ତିରେ ଆପଣା ଅଂଶରୁ ଶୋଚନୀୟ ଭାବେ ବଞ୍ଚିତ ହୁଏ ଅଜୟ ।

ଦୁନିଆଁର ଏ ବିରାଟ ବସ୍ତୁତି ଭିତରେ କେଉଁଠି ନିଶ୍ଚିହ୍ନ ହୋଇଯାଏ ନିର୍ଯ୍ୟାତିତ ଅଜୟ ଓ କରୁଣାର କାନ୍ଦଣା । ସୁଖୀ ପରିବାରଟି ଆସ୍ତେ ଆସ୍ତେ ଭୁଷୁଡ଼ି ପଡ଼େ । ହେଉନ୍ତ ସେପାରି, କିନ୍ତୁ ନୂଆ ମଣିଷ ନୂଆ ପ୍ରାଣନେଇ ଆପେ ଆପେ ଗଢ଼ିଉଠେ ଅନ୍ୟ ଏକ ହସନ୍ତ ପୃଥିବୀ ।

*

## ଗୀତ

(୧)

ଧୋ ରେ ବାଇଆ ଧୋ
ଯେଉଁ କଅଁଆରେ ଗଢ଼ିଲି ମାଣ୍ଡିଆ
ସେଇ କଅଁଆରେ ଶୋ···
କାନ୍ଦନା ତୁ ଆଉ ଦୁଃଖୀଧନ
ରଙ୍କନିଧି ମୋ ଜୀବନ···
ଆସିବ ପରା ସେ ନବ ପରା···
ନବତୁଇଁ···ଦବ ଘାରି !
ନବ ପରା···ଥିରି ଥିରି ଥିରି ଆ

ସୁଖ ନିଦ ଭରି ଭରି ଭରି ଯା—
ଆଖି ମୁଦି ଶୋ···
ଧୀରେ ଧୀରେ ଶୋ···
ଶୋଇଛି ଦୁନିଆ ଜାଗିଛି ମୁଁ
ଦୁଃଖ ବୁଝିପାରୁ କି ତୁ !
ବୁଝିଲେନି କେହି ଆଖିଲୁହ
ଛୁଟର ଏ ମନ କୋହ—
ଆଖି ଲୁହ ଝରି ଝରି ଝରି ଯା
ମନ କୋହ ମରି ମରି ମରି ଯା
ଧୀରେ ଥିର ହୋ
ଧୀରେ ଧୀରେ ଶୋ······ ।

※

(୨) ରାଧିକା ମୋହନ ଏବେ
ପଦ ତଳେ ନିଅ ଡାକି
ଆଉ କେତେ କନ୍ଦାଇବ
ନୟନ ଗଲାଣି ଶୁଖି—
ତୁମକୁ ଭରସା କରି
କେତେ ପାପୀ ଗଲେ ତରି
ଯେତକ ଛଳନା ସବୁ
ମୋହରି ଲାଗି କି ଖାଲି ·····
ଲୋକହସା କରି ମୋତେ
କେଉଁ ଯଶ ଯିବ ରଖି—
ଯାହା ଦେଇଥିଲ ସବୁ ଆପେ ପୁଣି ଗଲ ନେଇ
ସୁଖଲାଗି ଏ ଜୀବନେ ଆଶା ଆଉ ରଖିନାହିଁ
ବଞ୍ଚିଯାଉ ବାକି ଦିନ
ତୁମ ପଦକଞ୍ଜ ଦେଖି—



ଉତ୍କଳ ଚଳଚ୍ଚିତ୍ର ପ୍ରତିଷ୍ଠାନର

# ଦସ୍ୟୁ ରତ୍ନାକର

(୧୯୭୧)

ନିର୍ଦ୍ଦେଶକ : ପ୍ରଭାତ ମୁଖାର୍ଜୀ, ପ୍ରମୋଦ ପାଣିଗ୍ରାହୀ, ସଂଳାପ : ପ୍ରମୋଦ ପାଣିଗ୍ରାହୀ, ଗୋବିନ୍ଦ ମିଶ୍ର, ସଂଗୀତ ନିର୍ଦ୍ଦେଶକ : ବାଳକୃଷ୍ଣ ଦାଶ, ନୃତ୍ୟ : ସଂଯୁକ୍ତା ପାଣିଗ୍ରାହୀ, ମାୟା; ଭୂମିକାରେ : ଶରତ ପୂଜାରୀ, ମାଷ୍ଟର ମାଣିଆ, ଧୀର, ଝିଷ୍ଟା, ଶାନ୍ତ ।

**କାହାଣୀ**:: ଚୈତନ ମହର୍ଷିଙ୍କର ପୁଅ ରତ୍ନାକର । ମା ସୁକନ୍ୟା ଡାକୁଥିଲେ ରତ୍ନ । ପିଲାଟି ବହୁ ଖର ବୁଦ୍ଧି । ମନରେ ସବୁବେଳେ ପ୍ରଶ୍ନ—ମା ବାପା ତ କହନ୍ତି ଭଗବାନ ସମସ୍ତଙ୍କର, ସମସ୍ତଙ୍କୁ ସୁଖରେ ରଖିବାକୁ ଚାହାନ୍ତି, କିନ୍ତୁ ଆମେ ଦିଓଳା ଦିମୁଠା ଖାଇବାକୁ ପାଉନା, ଆଉ ନଗରପାଳ ଝିଅ ପଦ୍ମାବତୀ ଏତେ ଧନରତ୍ନ ଭୋଗକରେ କାହିଁକି ? ସେଦିନ ତ ନଗରପାଳଙ୍କ କର୍ମଚାରୀ ଧୀରର ବାପାକୁ ଖଜଣା ଦେଇ ନଥିଲେ ବୋଲି ମାରି ମାରି ପ୍ରାଣରେ ମାରିଦେଲେ । ପଦ୍ମା ତ ମୋର ପିଲାଦିନରୁ ସାଙ୍ଗ । ତା ସଙ୍ଗରେ ଖେଳୁଛି, ବୁଲୁଛି, କିନ୍ତୁ ତାକୁ ଅନ୍ୟଠି ବାହା କରେଇ ଦିଆଗଲା କାହିଁକି ? କ'ଣ ଆମେ ଗରିବ ବୋଲି ଆମଠି ସ୍ନେହ ଶ୍ରଦ୍ଧା ନଥିଲା ନାହିଁ ?

ରତ୍ନାକର ମନ ମାନିଲା ଭଳି କୌଣସି ଉତ୍ତର ପାଏନା । ସେ ଏହି ପ୍ରଶ୍ନର ଉତ୍ତର ପାଇବାପାଇଁ ଆଦରି ନିଏ ଦସ୍ୟୁ ବୃତ୍ତିକୁ । ଦଳ ବାନ୍ଧେ, ଲୁଟତରାଜକରେ, ଜଙ୍ଗଲରେ ଜୀବନଧାରଣ କରେ । ଶୋଷକ କବଳରୁ ଶୋଷିତଙ୍କୁ ରକ୍ଷାକରେ । ଦିନେ ଏହିଭଳି ଏକ ଶୋଷିତ କନ୍ୟା ଅର୍ଦ୍ଧପୂର୍ଣ୍ଣା ସହିତ ତାର ଭେଟ ହୁଏ । ପ୍ରାଣରେ ପ୍ରୀତି ଜାଗେ । ତା ପରେ ସଂସାର ପାତେ ତାକୁ ନେଇ । ରତ୍ନର ବଡ଼ ସାଙ୍ଗ ଧୀର ଏକ ଅଦ୍ଭୁତ ଚରିତ । ଘରେ ଧୀର ସ୍ତ୍ରୀ ଲକ୍ଷ୍ମୀ, ସାକ୍ଷାତ ଉଗ୍ରଚଣ୍ଡୀ । ଏକ ଦୁଇ ତିନି ଗୁଣି କରି ବହୁତ ପିଲା । ଧୀରର କାହିଁକି, ଗାଇଜଣାପାଳ ଲୋକଙ୍କର ଧୀର ସ୍ତ୍ରୀକୁ ବଡ଼ ଭୟ । ଧୀର, ସ୍ତ୍ରୀ ପାଖରେ ବାଘ ପାଖରେ ଛେଳି ପରି । କିନ୍ତୁ



(ଦସ୍ୟୁ ରତ୍ନାକରରେ ଶରତ ପୂଜାରୀ, ଧୀର ବିଶ୍ୱାଳ)

କହେନା, କଣ୍ଟ କରେନା । ଗଣ୍ଡେ ଖାଇଦେଇ ଗୃହକୁ ଆସେ ରତ୍ନାକର ପାଖକୁ ।

ଧୀରର କାମ କେଉଁଠି କଏ ଗରିବ, କଏ ଲୋକ ଉପରେ ସନ୍ତୁଷ୍ଟ, ତାର ହିସାବ ରଖିବା । ଏମାନଙ୍କ ଭିତରେ ଧନରତ୍ନ ବାଣ୍ଟିବା ।

ଶେଷରେ ଏଭଳି ପରିସ୍ଥିତି ଦେଖାଯାଏ, ଯେଉଁଥିରେ ରତ୍ନାକର ହତ୍ୟାକରେ ଧୀରକୁ ।

ଅତି ଅନ୍ତରର ଘନିଷ୍ଠ ବନ୍ଧୁକୁ ହରେଇ ରତ୍ନାକରର ମନ ଭାଙ୍ଗିପଡ଼େ । ସେ ଦସ୍ୟୁବୃତ୍ତି ଛାଡ଼େ, କିନ୍ତୁ ଘରେ ଯେ ପିଲାଏ······ସେମାନେ ଚଳିବେ କିମିତି ? ପୁଣି ସେଇ 'ଖାଇବାକୁ ଦିଅ' ଡାକର ଆହ୍ୱାନ ତା କାନରେ ପଡ଼େ । ସୁପ୍ତ କେଶରୀ ପୁଣି ଜାଗିଉଠେ—ପୁଣି ଲୁଣ୍ଠତରାଜ, ହତ୍ୟା କରିବା ପାଇଁ ସେ ଜଙ୍ଗଲକୁ ବାହାରେ······ ।

ବାଟରେ ଦେଖାହୁଏ ନାରଦଙ୍କ ସହିତ । ଏହାପରେ ପୁରାଣ କଥିତ ସମସ୍ତ ବୃତ୍ତାନ୍ତ । ······ଦସ୍ୟୁ ରତ୍ନାକରରୁ ବାଲ୍ମୀକି···ଲବ କୁଶଙ୍କ ଜନ୍ମ, ଅଶ୍ୱମେଧ ଯଜ୍ଞ······ତାପରେ ସୀତାଙ୍କ ପାତାଳ ଗମନ ଇତ୍ୟାଦି ।

**ଗୀତ** ❊

ମାୟାଘେରା ମଧୁବନେ
ପ୍ରୀତିଝର ଶିହରଣେ
ମନ-ଝର କୂଳ ମାନେନା ।
ବନେ ବନେ ଲାଗେ କୁସୁମ ମେଳା
ନବ ବେଶେ ସାଜେ ଗୀତିମୟୀ ଧରା
ଲହରୀରେ ନାଚ
ଝରିଯାଏ ଆଜ ଏଇ ଝରଣା ।
ଭାସିଯାଏ ମୁଁ ସେ ସପନ ତରୀରେ
ସୁଧାଝରା ମୋର ମିଳନ ବାସରେ
ଝରିଯାଏ ଯହିଁ
ଝିଲମିଲ ଝିଲମିଲ ଜୋଛନା ।
ଛୁଇଁ ଛୁଇଁ ଜାଦୁ ଘେରି ମୋ ନୟନ
ଭରି ଭରି ଦେବ ସୁନେଲି ସପନ
ପ୍ରଣୟରେ ମୋର
ଗାଇଯିବ ଏଇ ବନ ଝରଣା ।



କେ. ଜି. ପ୍ରଡ଼କ୍‌ସନ୍‌ର

# ଜୟଦେବ
(୧୯୭୨)

**ସଂଗଠନରେ** ❊ ପରିଚାଳନା—ଶିବ ଭଟ୍ଟାଚାର୍ଯ୍ୟ
ସଂଗୀତ—ବାଳକୃଷ୍ଣ ଦାଶ
ସଂଗୀତ ରଚନା—ଡକ୍ଟର ମାୟାଧର ମାନସିଂହ, ଗୋଦାବରୀଶ
ମହାପାତ୍ର (କବି ଖୁଣ୍ଟିଆ) ଶାରଦା ପ୍ରସନ୍ନ ନାୟକ, ନରସିଂହ ମହାପାତ୍ର
ଚିତ୍ର ଗ୍ରହଣ – ବିଜନ ଦେ।

**ରୂପାୟନରେ** ❊ ଶେଫାଳୀ, ନୋରି, ବିହାରୀ, କମଳା, ପ୍ରଭାବତୀ, ମନୋଜ,
କୁମୁଦିନୀ, ସୁଷମା, ଆହ୍ଲାଦିନୀ, ବ୍ୟୋମକେଶ, ନରେନ୍ଦ୍ର, ସୁରେନ୍ଦ୍ର,
ଶ୍ରୀକାନ୍ତ, ଅର୍ଜୁନ, ଭୋଳେଶ୍ୱର, ନନ୍ଦିଆବିହାରୀ, ଯଦୁନାଥ,
ଚିତ୍ତନନ୍ଦ, ବିରେନ୍ଦ୍ର, ଜ୍ଞାନେନ୍ଦ୍ର, ଶ୍ରୀଧର ଆଦି ଅନେକ।

**କାହାଣୀ** ❊

ଜଗନ୍ନାଥ ସବୁ ଯୁଗରେ ସବୁକାଳରେ ଭକ୍ତର। କିନ୍ତୁ ଭକ୍ତ କିଏ? ଏଇ ମଣିଷ ଭିତରେ ଯେତେବେଳେ ଭକ୍ତି ଉଙ୍କିମାରି ଉଠି ତାର ତମସାଚ୍ଛନ୍ନ ହୃଦୟକୁ ଉଜ୍ଜ୍ୱଳ ଆଲୋକରେ ଆଲୋକିତ କରେ, ସେତେବେଳେ ସେ ସାଧାରଣ ମଣିଷ ହୋଇ ରହେ ନାହିଁ। ସେ ହୁଏ ଅସାଧାରଣ, ମହାମାନବ।

ଓଡ଼ିଶାର କେନ୍ଦୁଲି ଗ୍ରାମରେ ଯେତେବେଳେ ଜୟଦେବ ଗୋସାଇଁଙ୍କର ଜନ୍ମ ହୁଏ, ଗ୍ରାମର ସୁପଣ୍ଡିତ ଏବଂ ଗୁରୁ ଭବିଷ୍ୟତବାଣୀ ଶୁଣାଇଥିଲେ—ଏ ପିଲା ଅସାଧାରଣ। ମାନବକୁଳରେ ଏପ୍ରକାର ପିଲାର ଜନ୍ମ ଦୁର୍ଲଭ। ତେଣୁ ଅଳ୍ପ ବୟସରେ ଜୟଦେବଙ୍କୁ ବିବାହ ଦେବାର ପ୍ରସ୍ତାବ ଯେତେବେଳେ ତାଙ୍କ ବାପା ଠିକ୍ କରି ଗୁରୁଙ୍କର ସାହାଯ୍ୟ ପ୍ରାର୍ଥନା କଲେ—ସେତେବେଳେ ଗୁରୁଦେବ ଦୃଢ଼ କଣ୍ଠରେ ପ୍ରତିବାଦ କରି କହିଲେ — ନା, ଜୟଦେବଙ୍କର ବର୍ତ୍ତମାନ ବୟସରେ ବିବାହ ଅସମ୍ଭବ। ମୁଁ ତାର ଶିକ୍ଷା ଦାୟିତ୍ୱ ନେବି।

ଶିକ୍ଷା ଦାୟିତ୍ୱ ନେଲେ ଗୁରୁଦେବ। ଜୟଦେବଙ୍କ ସଙ୍ଗେ ପରାଶରଙ୍କର ଶିକ୍ଷାକାଳରେ ଜୟଦେବଙ୍କର ଅସାଧାରଣ ବ୍ୟକ୍ତିତ୍ୱ ଫୁଟିଉଠିଲା ନାନାଦି ଭାବଧାରାରେ। ରାଧାକୃଷ୍ଣଙ୍କ ଲୀଳା ମାହାତ୍ମ୍ୟରେ ବିଭୋର ହୋଇ ଉଠିଲେ ଏବଂ ସେଇ ଭାବଧାରାକୁ ସଂସ୍କୃତ ଶ୍ଳୋକ ଆକାରରେ ଲେଖି ପ୍ରକାଶ କଲେ।

ଶ୍ରୀଜଗନ୍ନାଥଙ୍କ ଆଶୀର୍ବାଦରୁ ପଦ୍ମାବତୀ ନାମ୍ନୀ ଜଣେ ଅସାଧାରଣ ତନ୍ବୀଙ୍କୁ ସଂଗରେ ନେଇ ତାଙ୍କ ପିତା ଆସି ଦ୍ୱାରସ୍ଥ ହେଲେ ଜୟଦେବଙ୍କର । ଶ୍ରୀଜଗନ୍ନାଥଙ୍କର ସ୍ୱପ୍ନାଦେଶ ହୋଇଛି । ଦେବଦାସୀ ରୂପେ ଯେଉଁ ପଦ୍ମା, ଜଗନ୍ନାଥଙ୍କର ସେବାକରିବେ ବୋଲି ମାନସିକ କରିଥିଲେ, ପଦ୍ମାର ପିତାମାତା —ବର୍ତ୍ତମାନ ସେଇ ପ୍ରଭୁ ସ୍ୱପ୍ନାଦେଶ ଦେଇଛନ୍ତି—ପଦ୍ମା, କେନ୍ଦୁଲି ଗ୍ରାମର ଜୟଦେବଙ୍କର । ଜୟଦେବ ତାଙ୍କୁ ଗ୍ରହଣ କଲେ ମୁଁ ଗ୍ରହଣ କରିବା-ପରି ହେବ ।

ଏହା ଶ୍ରବଣ କରି ଜୟଦେବ ସ୍ତମ୍ଭିତ ହେଲେ । ପଦ୍ମାଙ୍କୁ ସେ ଗ୍ରହଣ କରିବା ଅସମ୍ଭବ । ରାଧାମାଧବଙ୍କ ଚରଣ ତଳେ ଲୋଟି ପଡ଼ିଲେ ସେ । ରାଧାମାଧବ ଆଦେଶ ଦେଲେ—ଜୟଦେବ ! ତମେ ପଦ୍ମାଙ୍କୁ ଗ୍ରହଣ କର ।

କିନ୍ତୁ ପଦ୍ମା କାହାନ୍ତି ? ଘର ଶୂନ୍ୟ । ତେବେ କ'ଣ ଆତ୍ମହତ୍ୟା କଲେ ପଦ୍ମା ?

ଆତ୍ମହତ୍ୟା ପାଇଁ ଉଦ୍ୟତ ହୋଇଥିବା ପଦ୍ମାଙ୍କୁ ଗ୍ରହଣ କଲେ ଜୟଦେବ । ପଦ୍ମାଙ୍କ ସାହଚର୍ଯ୍ୟରେ ତାଙ୍କର ଅଲୌକିକ ପ୍ରତିଭାର ବିକାଶ ହେଲା । ସେ ତତ୍ପରେ ରଚନା କଲେ ଗୀତଗୋବିନ୍ଦ । ଜଗନ୍ନାଥଙ୍କର ଜଣେ ବିଶିଷ୍ଟ ଭକ୍ତରୂପେ ସେ ଓଡ଼ିଶାର ପୁରପଲ୍ଲୀରେ ମଧ୍ୟ ପୂଜିତ ହେଲେ ।

**ଗୀତ** ❊

ଲିଭି ଲିଭି ଆସେ ଖରା, ବେଗି ବେଗି ଯିବାପରା
ନଉକା ସଜାଡ଼ି ଭରା ସେ କୂଳେ ନେଇ,
ଅନ୍ଧାର ଆସିବ ମାଡ଼ି
ଏ ଯେ ଗଛ ଧାଡ଼ି ଧାଡ଼ି
ମିଶିଯିବ ସେ ପାରିରେ ଦିଶିବ ନାହିଁ ।
ଅଜର ଫୁଟିଲା ଫୁଲ କାଲିକି ନଥିବ ମୂଲ
ବନର ଆଲୁଅ ମିଶେ ରାତିରେ ଯାଇ,
ଦେଏ ଧାଇ ପାଲ ଟେକ
ଆଉ ନାହିଁ ବେଳ ବାକି
ଲହଡ଼ି ଉଠିଛି ପରା ସେ କଥା କହି······



ଯମୁନା ନଈରେ ପାଣି
କୃଷ୍ଣ ପାଇଁ ସତେ ରାଧା ବାଧୁଣୀ
ନୟନୁ ବୁହାଇ ପାଣି । ୧ ।
ବାଉଳୀ ହେଲେ କି ରାଧା
କୃଷ୍ଣ ବିନା ମନେ ନାହିଁ ଶରଧା
ମିଛେ କରେ ଆଖିଓଦା । ୨ ।
ପୀରତି ଝୁଲଣା ଖେଳ
ଉଠାଏ ପକାଏ ମାରଇ ଶେଳ
ହସେ, କାନ୍ଦେ କାଟେ ବେଳ । ୩ ।
ଆଜ ଏ ରଜରେ ପର୍ବ
ନବ ଯଉବନା ପୂରୁଣା ଧର୍ବ
ବୋହିବ ଜନମ ଗର୍ବ
କାଳିଆ ବଉଦ ଆସି ଧରିକୁ ଚୁମିବ ପ୍ରୀତି ପ୍ରକାଶି
ଜୀବନ ଉଠିବ ହସି ।



ଲଳିତ ଲବଙ୍ଗଲତା ପରିଶୀଳନ କୋମଳ ମଳୟ ସମୀରେ
ମଧୁକର ନିକର କରମ୍ବିତ କୋକିଳ କୂଜିତ କୁଞ୍ଜ କୁଟୀରେ ।
ବିହରତି ହରିରିହ ସରସ ବସନ୍ତେ
ନୃତ୍ୟତି ଯୁବତିଜନେନ ସମଂ ସଖି ବିରହି ଜନସ୍ୟ ଦୁରନ୍ତେ ।
ଉନ୍ମଦ ମଦନ ମନୋରଥ ପଥିକ ବଧୂ ଜନିତ ବିଳାପେ
ଅଳିକୁଳ ସଙ୍କୁଳ କୁସୁମ ସମୂହ ନିରାକୁଳ ବକୁଳ କଳାପେ ।
ମୃଗମଦ ସୌରଭ ଶଂବଦ ନବଦଳ ମାଳ ତମାଲେ
ଯୁବାଜନ ହୃଦୟ ବିଦାରଣ ମନସିଜ ନଖରୁଚି କିଂଶୁକ ଜାଲେ ।
(ଗୀତଗୋବିନ୍ଦ)



ପଞ୍ଚସଖା ପିକ୍‌ଚର୍ସର

# ନୂଆବୋଉ

( ୧୯୭୨ )

**ସଂଗଠନରେ** ❋ ଗଳ୍ପ—ଶ୍ରୀହର୍ଷ ମିଶ୍ର, ଗୋପାଳ ମିଶ୍ର ।

ସଂଳାପ—ଗୋବର୍ଦ୍ଧନ ମିଶ୍ର, ଗୋପାଳ ଛୋଟରାୟ ।

[illegible]ାର— ନରସିଂହ ମହାପାତ୍ର, ଗୁରୁକୃଷ୍ଣ ଗୋସ୍ୱାମୀ, ନାରାୟଣ ପ୍ରସାଦ ସିଂହ ।
ଆଲୋକଚିତ୍ର--ଅଜୟ ମିତ୍ର; ସଙ୍ଗୀତ--ବାଳକୃଷ୍ଣ ଦାସ; ନିର୍ଦ୍ଦେଶକ--ପ୍ରଭାତ ମୁଖାର୍ଜୀ

**ରୂପାୟନରେ** ❋ ଧୀର, ପ୍ରଶାନ୍ତ, ଟିମା, ଶରତ, ପ୍ରତିହାରୀ, ବିଜୟ, ଝୁନା, ବଳରାମ, ଲୀଳା, ପଦ୍ମା, ରାଧାରାଣୀ, କଳ୍ପନା, ଶୁକ୍ଲା, ନଗେନ ନଳିମା ।

**କାହାଣୀ** ❋ ଏକ ସହର ତଳ ମଫସଲି ଗାଁର ସେ ଜଣେ ଡାକ୍ତର । ବପୁଟି ଯେମିତି ବିଶାଳ, ନାଁଟା ତହୁଁ ବଳିକା । ଡାକ୍ତର ଧରଣୀଶ୍ୱର ଧନେଶ୍ୱର ଦାସ । କମ୍ପାଉଣ୍ଡର ମକୁନ୍ଦକୁ ଡାକ୍ତର ଗେଲରେ ଡାକନ୍ତି ମକୁ ବୋଲି । ଡାକ୍ତରଙ୍କ ଅନୁଗତ ଶିଷ୍ୟ ସେ ।

ସେଇ ଗାଁରେ ସୁରବାବୁଙ୍କ ପରିବାର—ଘରେ ସ୍ତ୍ରୀ ପାର୍ବତୀ, ୫।୬ ବର୍ଷର ପୁଅ ଦେବ, ଛୋଟଭାଇ ରାଜୁ ଆଉ ଚାକର ଭୋଳା । ରାଜୁ ଟିକିଏ ତରଳ କିନ୍ତୁ ଭାରି ଚାଲାକ ।

'ଧନେଶ୍ୱର ନାଁକୁ ସିନା ଡାକ୍ତର—ଡାକ୍ତରୀ କ'ଣ ଜାଣନ୍ତି ନାହିଁ । ସେ କେବଳ ଗୋଟିଏ ଔଷଧ ଜାଣନ୍ତି 'ନ ଆଉ ମ' । 'ନ' ବୋଇଲେ ନିମ ପତ୍ରକୁ ବୁଝାଏ, 'ମ' ବୋଇଲେ ମେଡ଼ିସିନ୍ । ଡାକ୍ତର ରୋଗୀକୁ କହନ୍ତି ଏଥିରୁ ଦି ପୁଡ଼ିଆ ନେଇ ଯା—ସବୁ ରୋଗ ଆରୋଗ୍ୟ···

ଡାକ୍ତରଙ୍କ ଗୁମରକଥା ରାଜୁ ଜାଣେ । କାଳେ କେଉଁଠି ଖୋଲିକହି ଦେବ ବୋଲି ରାଜୁକୁ ଡାକ୍ତରଙ୍କର ବଡ଼ ଭୟ ।

ନୂଆବୋଉ ପାର୍ବତୀ ନିଜ ପୁଅଠୁ ବଳି ଭଲ ପା'ନ୍ତି ରାଜୁକୁ । ରାଜୁ ନ ଖାଇଲେ ସେ ଅନ୍ନ ସ୍ପର୍ଶ କରନ୍ତିନି । ରାଜୁ ଆଖିରେ ଲୁହ ଦେଖିଲେ ତାଙ୍କ ଆଖିରୁ ଲୁହ ଖସି ଆସେ ।

ରାଜୁ ବିରୁଦ୍ଧରେ କେହି କିଛି କହିବାକୁ ସାହସ କରିପାରନ୍ତି ନାହିଁ । ଥରେ ଥରେ ଅସହ୍ୟ ହୋଇଉଠିଲେ କେବଳ ଡାକ୍ତରହିଁ ତାଙ୍କ ଭାଇ ଭାଉଜଙ୍କ ଆଗରେ ଅଭିଯୋଗ ଆଣନ୍ତି । ନୂଆବୋଉ ପାର୍ବତୀ ରାଜୁକୁ ଜିଆନ୍ତି । ଭାଇ କିନ୍ତୁ ଭାରି ରାଗି ଉଠନ୍ତି । କେବେକେବେ ତାଙ୍କର ହାତ ବି ଉଠିଯାଏ ।

ଏହା ମଧ୍ୟରେ ଘରେ ଆସି ପହଞ୍ଚନ୍ତି ପାଟଣର ମା ଓ ଭଉଣୀ ଚମ୍ପା । ଚମ୍ପା ଅବିବାହିତା, ବୟସ ଏଇ ସତର ଅଠର ମଧ୍ୟରେ ।

ମନ୍ତୁ ଯାଇଥାଏ ଗଜୁର ନୂଆବୋଉକୁ ଔଷଧ ଦେବାପାଇଁ । ଚମ୍ପା ସହିତ ହଠାତ୍ ଦେଖାହୁଏ । ତାର ରୂପଲାବଣ୍ୟରେ ମନ୍ତୁର ଆଖି ଝଲସି ଉଠେ । ମନେମନେ କଳ୍ପନା କରେ ମତେ ଯଦି ଇଏ ବାହା ହୁଅନ୍ତା··· !

ତା' ଆଖିରେ ଚମ୍ପାର ମୋହ···ଚମ୍ପାକୁ ପାଇବାପାଇଁ ଗଜୁକୁ ହାତକରେ । ତାକୁ ଚକୋଲେଟ୍ ଆଦି ଲାଞ୍ଚଦିଏ—ଚମ୍ପା ମା'ର ବହୁତ ସେବା କରେ । ଏପରିକି ଗୋଡ଼ବି ଘଷିଦିଏ । ଇତିମଧ୍ୟରେ ଚମ୍ପାର ମା' ଗଜୁ ବିରୁଦ୍ଧରେ ଏକ ଅଭିଯାନ ଆରମ୍ଭ କରି ଦିଅନ୍ତି । ତାଙ୍କ ଇଚ୍ଛା ଏ ଘରୁ ତାକୁ ବାହାର କରିଦେବା ପାଇଁ ।

ରବି ଜଣେ ନୂଆ ତରୁଣ ଡାକ୍ତର···ନୂଆ ହୋଇ ସହରରୁ ଡାକ୍ତରୀ ପାସ୍‌କରି ଆସନ୍ତି ସେ ଏଇ ଗାଁକୁ ଡାକ୍ତରୀ ବ୍ୟବସାୟ କରିବା ପାଇଁ । ଚମ୍ପା ସହ ରବିର ଦେଖାହୁଏ ଏକ ଅସ୍ୱାଭାବିକ ପରିସ୍ଥିତିରେ—ଚମ୍ପା ଆକୃଷ୍ଟ ହୋଇପଡ଼େ ରବି ପ୍ରତି । ତା ଦେହରେ ପୁଲକ ଖେଳେ··· । ଆନନ୍ଦରେ ଥରେ ଥରେ ତା'ମନ ନାଚିଉଠେ···



(ହାସ୍ୟରସ ଭୂମିକାରେ ଟିମା)

ଏଣେ ଜନ୍ମୁ ନୂଆ ଡାକ୍ତରଙ୍କ ଡାକ୍ତରୀ ଓ ଜନପ୍ରିୟତାର ଖବରପାଇ ଡାକ୍ତର ଧରାଧୀଶ୍ୱର ଧନେଶ୍ୱର ଦାସଙ୍କ ଦେହ ଜଳିଉଠେ ।

ପ୍ରେମ ବ୍ୟାପାରରେ ରବି, ମନ୍ତୁର ପ୍ରତିଦ୍ୱନ୍ଦ୍ୱୀ ।

ଡାକ୍ତରୀ ବ୍ୟବସାୟରେ ଏଇ ରବି, ଧନେଶ୍ୱରଙ୍କର ମଧ୍ୟ ପ୍ରତିଦ୍ୱନ୍ଦ୍ୱୀ । ମଝିରେ ଚମ୍ପା··· । ଚମ୍ପା ଶେଷରେ ରବି ସହ ବିବାହ କଲା । ଗଜୁ ଆଉ ଭାଗ ନ ନେଇ ଭାଇପାଖେ ରହିଲା ।

*

## ଗୀତ

ରଥ ଯା' ଚାଲଯା—ଚକ ଗଡ଼ଯା'ରେ

ଆମେ ତ ଗଲୁରେ ଯାତକୁ    ମଜାରେ ଦେଖିଲୁ ରଥ,
ବାଟେ ଭେଟିଲୁ ପେଟୁ ବଇଦ    ମୁଣ୍ଡେ ବୁଲେଇଲୁ ହାତ ।

ଦୁର୍ବିଁକି ଦୁର୍ବିଁ ତ ଠକରେ    ମକୁଦ ପାରୁଡ଼ା ପୋକ
ଦଇଜା ନାଆଁରେ କର ଭକୁଆ   ଝାଡ଼ିଲୁ ପଇସା ପାଳ ।
ବଣିଆ ଟିହ୍ନରେ ସୁନାକୁ
ଗୁଣିଆ ଛଡ଼ାଏ ଭୂତ ।
ଆମେ ପିଆଣା ଜାତିଆ କେଳା
ରଖିଛୁ ମହୁର ଗଦ ।
କଳସ ପଟର ପିଠାରେ, ଦୁର୍ବିଁକୁ କାଟିଲୁ ଚଟା
ଦଅଁ ଦେଖି ଆଣୁ ବାଟ ଖରଚ    ଆମ କଥମନ୍ତ ଦେଖ···



ନା ଉଠନା କର ମୋ' ଗୁହାଷ ଯେନା—
ଆଉଟିକେ ବସିଯାଅ
କଥାମୋର ଶୁଣିଯାଅ···ନା ଉଠନା···
ବିଧାତା ଗଢ଼ିଛି କଳଣ ଯାହାକୁ ପାରିଜାତ ଫୁଲପରି,
ରୂପରେ ସତେ ସେ ଅନାର କଳି ହୋ—
ଯାର ବଚନ ଅଙ୍ଗୁର କୋଳ ହୋ ମୋ ଚମ୍ପା ସୁନ୍ଦରୀ
ମନ ଗାଇଜେ ରାଣୀ କରିଲି
ଦେଖି ଚଉଦ ଭୁବନ ସାରା ହୋ ତାର ରୂପର ଶିରୀ···
ପ୍ରେମରଣେ ମୁଁ ଝାସ ଦେବି
ବିରହର ଯେତେ ଦୁଃଖ ନାଶିବି
ନହେଲେ ମରି ଶହୀଦ ହେବି ।
ପ୍ରୀତି ଚିତାକାଠି ସାଜିବି ବାବାଜୀ ମୁଁ
ଚମ୍ପା ଦେବୀଙ୍କୁ ନିତି ପୂଜିବି ମୁଁ
ନୋହିଲେ ହୋଇବାପ୍ପା ହେବି ମୁଁ ପ୍ରେମକୁଆ
ସଞ୍ଜ ସକାଳେ ଚମ୍ପା ଘରେ କରିବି କାଆ କାଆ···
ଦଲ୍ ଆପନା ନେଲ ଚମ୍ପା ଚୋରାଇ
ରଖିବ କି ସେ ଦେବ ଫେରାଇ
ବୁଢି ମୋତେ ଦଅ ବତାଇ
ମୋର କସ ହେବ ହେ ଭାଇ···



ଢଲ୍ ଦେବ ଢଲ୍ ଦେବ ଢଲ୍ ଦେବରେ···
ବସାଇବ ନେଇ ତୋତେ ଢଲ୍ ର ମଂଜଲ୍ ରେ·।
ଢଲ୍ଟା ଦେବ ମୋର କାଠିରେ, ଦୁହିଁଙ୍କୁ ଅଧାଅଧି ବାଣ୍ଟିରେ
ଭାଗକଲେ ଅଭିମାନ କେହି ନ କରିବରେ···
ଲଗାଇ କହୁଛି ବାଜରେ, ମିଆଁ ବିବି ଯେବେ ରାଜରେ···
କଣ୍ଡାଗଣ୍ଡା କରି ପ୍ରେମ କରିବା ହାସଲରେ ।
କଥା ମୁଁ ତୋର ଜାଣେରେ, ପାଉଛୁ କେତେ ଦୁଃଖ ମନେ ଝୋ
ପାଇବୁ ତୁ ଏବେ ଢଲ୍ ବଡ ମୁଷ୍କିଲ୍ ରେ ।

*

ମନଢୋଲ ଉଡ଼ ଯା···ଯା ରେ—
ମେଘ ଛୁଇଁ ଫେରି ଆ ରେ ।
ବସୁମତୀ ମାଆ ଶରଧା କଥା, ମେଘ ଦେଶେ କହିବ ଆ ରେ···
ଯାଆ ··ମନ ଢୋଲ ଉଡ଼ ଯା'ରେ···
ଅଳି ରାଇଜର ଥାଳ ଚଳମ
ଦକ୍ଷିଣୀ ରାଇଜ କମ
କାଟରି ଆଣିଛି କାଚ ସଜଣି
ନାଇବା ପୂରାଇ ମନ
ଆଷାଢ଼େ ଲବ କଆ ଫୁଲ ଯା···ଖୋଷିଦେବା ଜୂଡ଼ାରେ ।
କଅଁଳ କାକୁଡ଼ି ରୈପା ବହଳ
, କାଟି ଢଅ ପରିବାକୁ,
ବାପଘର ସୁଖ ଶାଶୁଘରେ ଯା—
ଝୁରି ଝୁରି ମରିବାକୁ,
ଗଡ଼ିଲେ ଟକ ବାର ହାତେ ଲୋ କଥା ଅଛି ମହିରେ ।
ଆଳୁ ପଟଳ କ ସରୁ ପଟଳ
କେବେକ ହୋଇବ ପାନ
ମିଳିବ କେବେ କ ରଜ ମଜଜ
ସରିଲେ କୁଆଁରି ଦିନ,
ଆସ ଗୋ ଆସ କୁଆଁରି ଆସ ହଜପିବା ଗୀତରେ



କଳିଙ୍ଗ ଫିଲ୍ମସ୍‌ର

# ଲକ୍ଷ୍ମୀ

(୧୯୬୨)

ପ୍ରଯୋଜକ— ପାଟଶ୍ରୀ, ଗୌର ପ୍ରସାଦ

ସଂଳାପ, ସଂଗୀତ ରଚନା ଓ ନିର୍ଦ୍ଦେଶ—ସାରଦା ପ୍ରସନ୍ନ ନାୟକ

ସଂଗୀତ—ବାଳକୃଷ୍ଣ ଦାସ

ଭୂମିକାରେ—ବାଣୀ, ମଣିମାଳା, ଗୌରପ୍ରସାଦ, ଚନ୍ଦନା, ପାଣ୍ଡେ, ଶରତ, ସୁଧାଂଶୁ, ସୁବାସ, ଦସ୍ୟୁନିଧି, ଅନିମା ଓ ମେନା ପ୍ରଭୃତି ।

**କାହାଣୀ ※**

ବିଶ୍ୱନାଥ ଗୋଟିଏ ଗାଁର ହସଖୁସିଆ ମଧ୍ୟବୟସ୍କ ଗୃହସ୍ଥ । ଘରେ ସେ, ତା ସ୍ତ୍ରୀ ଲକ୍ଷ୍ମୀ ଆଉ ତା ମା' ; ଚଳଣି ଏକ ରକମର ଭଲ । କିନ୍ତୁ ସଂସାରରେ ଅଶାନ୍ତି କେବଳ ଗୋଟିଏ କାରଣ ପାଇଁ । ଏତେବର୍ଷ ବାହାଘର ପରେ ଲକ୍ଷ୍ମୀର ପିଲପିଲି କିଛି ନାହିଁ । ସେଥିପାଇଁ ବିଶ୍ୱନାଥ ଯେତେ ନୁହେଁ, ତା' ମା' ଆଉ ସ୍ତ୍ରୀ ଖୁବ ବ୍ୟସ୍ତ । ଏଇ ବ୍ୟସ୍ତତା ଭିତରେ ବିଶ୍ୱନାଥର ମା' ଲକ୍ଷ୍ମୀପ୍ରତି ସମସ୍ତ ସମୟରେ ଦୁର୍ବ୍ୟବହାର ମଧ୍ୟ କରିବାକୁ ଆରମ୍ଭ କରି ଦେଇଥିଲେ । ବିଶ୍ୱନାଥ ବିଚରା ଏମିତି ପରିସ୍ଥିତିରେ ବଡ଼ ଅତିଷ୍ଠ ହୋଇ ଉଠୁଥାଏ । ସେଇ ଗାଁରେ ଗୋଟିଏ ଡାକ୍ତରଖାନାରେ ତା'ର କମ୍ପାଉଣ୍ଡର ଓ ତାଙ୍କର ମା' ଛେଉଣ୍ଡ ଝିଅଟିଏ ରହୁଥାନ୍ତି । ଝିଅଟି ଉପରେ ବିଶ୍ୱନାଥର ମା'ଙ୍କର ଆଖିଥାଏ । ସେ ବିଶ୍ୱନାଥକୁ ଆଉଥରେ ବାହାଦବାକୁ ଚାହୁଁଥାନ୍ତି । ଏଣେ ସେଇଗାଁରେ ଗୁଣନିଧି ମହାପାତ୍ର ବୋଲି ଜଣେ ଧୂର୍ତ୍ତ ମାମଲତକାର ରହୁଥାନ୍ତି । ତାଙ୍କର ଗୋଟିଏ ଆଡ଼ବାଇଆ ପୁଅ ଥାଏ । କମ୍ପାଉଣ୍ଡର ଖୁବ୍ କଞ୍ଜୁସ୍ ଲୋକ ଥିଲେ । ତାଙ୍କ ପାଖରେ ପଇସାପତ୍ର ଖୁବ୍ ଥାଏ । ସେଇ ଲୋଭରେ ଗୁଣନିଧି ମହାପାତ୍ର ତା' ପୁଅକୁ କମ୍ପାଉଣ୍ଡର ଝିଅ ସାଙ୍ଗରେ ବାହାଦବାକୁ ଖୁବ୍ ଲୋଭେଇ ଥାଏ । ଏଇ ସମୟରେ ସେଇ ଗାଁ ଡାକ୍ତରଖାନାକୁ ଗୋଟିଏ ନୂଆ ଡାକ୍ତର ବଦଳିହୋଇ ଆସିଲେ । ଡାକ୍ତର ଜଣେ ସୁନ୍ଦର ଯୁବକ । ଡାକ୍ତରଙ୍କ ସାଙ୍ଗରେ ବିଶ୍ୱନାଥର ଘଟଣାଚକ୍ରରେ ଖୁବ୍ ବନ୍ଧୁତା ହୋଇଗଲା । ଡାକ୍ତର, କମ୍ପାଉଣ୍ଡରଙ୍କ ଘରେ ପେଇଁଗେଷ୍ଟ ହୋଇ ରହିଲେ । କ୍ରମେ ଡାକ୍ତର ଓ କମ୍ପାଉଣ୍ଡରଙ୍କ ଝିଅ ଉଭୟେ ପରସ୍ପରକୁ ଖୁବ୍ ଭଲ ପାଇବାକୁ ଲାଗିଲେ । ଗୁଣନିଧି ମହାପାତ୍ର ଏ କଥା ଜାଣିପାରି କମ୍ପାଉଣ୍ଡରଙ୍କୁ ଖୁବ୍ ହଇରାଣ କରିବାକୁ ଚେଷ୍ଟା କଲା । ବିଶ୍ୱନାଥ ଏ ସବୁ କଥା ଜାଣିପାରିଲା ।

ବିଶ୍ୱନାଥର ଗାଁରେ ଅନୁପସ୍ଥିତିର ସୁଯୋଗ ନେଇ ଗୃଣକ୍ୟ ଡାକ୍ତରଙ୍କୁ ମିଛ କଳଙ୍କିତ କରିଦେବ ବୋଲି ଧମକ ଦେଲା । ଜଟିଳ ପରିସ୍ଥିତି ହୃଦୟଙ୍ଗମ କରି ଅନିଚ୍ଛା ସତ୍ତ୍ୱେ ଡାକ୍ତର ଡାକ୍ତରଖାନା ଛାଡ଼ି ଚାଲିଗଲେ ଓ ପାଖରେ ଏକ ଗାଁରେ ରହିଲେ ।



(ଚନ୍ଦନା)

ସବୁଆଡ଼େ ଗୋଟାଏ ବିରାଟ ପୂର୍ଣ୍ଣଚ୍ଛେଦ ପଡ଼ିଗଲାପରି ମନେ ହେଲା । ଇତିମଧ୍ୟରେ ସ୍ତ୍ରୀ ଅନ୍ତଃସତ୍ତ୍ୱା ହେଲା ଓ ଶାଶୁ ସାଙ୍ଗରେ କଳିଆକରି ଘରୁ ପଳାଇଯାଇ ନଈକୁ ଡେଇଁ ପଡ଼ିଲା । ସେଥିରୁ ଉଦ୍ଧାର ମଧ୍ୟ ପାଇଲା । ଏଇ ଡାକ୍ତରଙ୍କର ଚିକିତ୍ସାରେ ସଂଜ୍ଞା ଲାଭ କଲା । ଅବଶ୍ୟ ତା'ର ଅନ୍ତଃସତ୍ତ୍ୱା ହେବା କଥା ବିଶ୍ୱନାଥ କି ବିଶ୍ୱନାଥର ମା' କେହି ଜାଣି ନ ଥିଲେ । ଠିକ୍ ଏତିକିବେଳେ ଗୃଣକ୍ୟ କମାଣ୍ଡରର ଝିଅ ସାଙ୍ଗରେ ବାହାଘର ସ୍ଥିର କରିଦେଲା । ବିଶ୍ୱନାଥ କୌଶଳକ୍ରମେ ସବୁ କଥା ଜାଣିପାରି ଗୃଣକ୍ୟକୁ ବୋକା କରିଦେଲା, ଡାକ୍ତରଙ୍କୁ ଖୋଜିଆଣିଲା ଓ କମାଣ୍ଡରଙ୍କ ଝିଅ ସାଙ୍ଗରେ ତା'ର ବାହାଘର କରାଇଦେଲା । ବିଶ୍ୱନାଥର ଆଜି ଥରେ ବାହାଘର ହେଉଛି ବୋଲି ଭୁଲରେ ଶୁଣି ଲକ୍ଷ୍ମୀ ଆସି ବେଦୀ ପାଖରେ ପହଞ୍ଚିବା ପରେ ସବୁ କଥା ଜଣା ପଡ଼ିଗଲା ଓ ଶାଶୁ ବଂଶସନ୍ତାନର ଜନନୀ ବୋହୂକୁ କୋଳରେ କାଖେଇ ଘରକୁ ନେଇ ଆସିଲେ । ଗୃଣକ୍ୟ ମହାପାତ୍ର ଶିଶୁପାଳର ପିତା ପରି ଘରକୁ ଲେଉଟିଗଲେ ।

ବିଶ୍ୱନାଥ ମାନବିକତାର ଏକ ଜ୍ୱଳନ୍ତ ନିଦର୍ଶନ ଦେଖାଇ ସେମିତି ହସ ଖୁସିରେ ଡେଇଁବାକୁ ଲାଗିଲେ ।



## ଗୀତ ❊

ଆରତ ସୁରେ ବାରେ କରେ ମିନତିରେ
ଚକା ନୟନ ଗୃହ୍ଲାଁ ମାଗେ ମାଗୁଣିରେ—
କଳା କଳା ଦୁଇ ଆଖି ମନ କେତେ ଖୋଜନ୍ତି
ଉଷାକାଳ ରବି ଛବି ମନେ ମନେ ଡକନ୍ତି
ଆଖି ନାହିଁ ସାକ୍ଷୀ ନାହିଁ ସାଥୀ କାହିଁ ଝୁରେରେ ।
ଚକା ନୟନ ଗୃହ୍ଲାଁ.........||— | ୦ |

ନ ଦେଲେ ନ ଦଅ ପଛେ ଆଖିରେ ମୋ ପରଶ
ସବୁଟି ପରଶୁ ପ୍ରଭୁ ନ ନିଅ ହରଷ
ବିଲ ବନ ଗିରି ଶିରି କେତେ ରଙ୍ଗେ ଭରରେ
ଚକା ନୟନ ଗୃହ୍ଲାଁ..... | ୧ |

ସବୁଜ ପତରେ ଥରେ ହାତ ତୁମେ ରଖିଲେ
ସବୁଜ ପଥରେ ଥରେ ପାଦ ତୁମେ ଥାପିଲେ,
ନଈ ନାଳ ତୋଟା ମାଳ ଫୁଲେ ଫୁଲ ହସେରେ,
ଚକା ନୟନ ଗୃହ୍ଲାଁ......... | ୨ |

ଘର ଛାଡ଼ି ପରଦେଶେ ପରଦେଶୀ ପଥିକ
ନ ଭାବ ଏ ଭବେ ଅଛି ଜଣେ ଏକା ନାବିକ
ସାଙ୍ଗେ ସେହି ଗଢ଼େ ସେହି ମାଳଗିରି କନ୍ଦରେ
ଚକା ନୟନ ଗୃହ୍ଲାଁ......... | ୩ |

❊

ମନେ ଭରି ଅଭିମାନ, ଯାଏ ଛାଡ଼ି ବୃନ୍ଦାବନ
ରୁଷିଛି ସଙ୍ଗି ପରାଣ ଝୁରେ ପାଷାଣ
ଶାଶୁର ଗଞ୍ଜଣା କଷଣ ||
ମନେ ଭରି......... | ୦ |

ବାରୁଣୀ ଗଗନେ ଘାରୁଛି ଅନ୍ଧାର
ଲିଭିଯାଏ ନାଲି ସୁରୁଜର ଧାର
କଥା ମାନ ଗାଈ ମାନ କଥା ଥରେ,

(୫୭ ପୃଷ୍ଠା ଦେଖନ୍ତୁ)

ପ୍ରଞ୍ଜସଖା ପିକ୍‌ଚର୍ସର

# ମାଣିକ ଯୋଡ଼ି

## ( ୧୯୭୩ )

**ସଂଗଠନରେ** ✻ ଗଳ୍ପ ଓ ସଂଳାପ—ଭୁଜଙ୍ଗ କିଶୋର ପଟ୍ଟନାୟକ
ନୃତ୍ୟନିର୍ଦ୍ଦେଶନା—କେଳୁଚରଣ ମହାପାତ୍ର
ସଂଗୀତ—ବାଳକୃଷ୍ଣ ଦାସ
ଆଲୋକଚିତ୍ର—ଅଜୟ ମିତ୍ର
ନିର୍ଦ୍ଦେଶକ—ପ୍ରଭାତ ମୁଖାର୍ଜୀ

**ରୂପାୟନରେ** ✻ ବାବି, ସଞ୍ଜନ ଦାସ, ଅନନ୍ତ, ଅକ୍ଷୟ, ପ୍ରଶାନ୍ତ, ଝିମା, ଧୀର, ଶିବୁ, ଶରତ, ବ୍ରଜ, ଦାମ, ସୁଖଲତା, ଲୀଳା, ଗୀତାବାଣୀ, ପୂର୍ଣ୍ଣିମା, ଲକ୍ଷ୍ମୀ ପ୍ରଭୃତି ।

**କାହାଣୀ** ✻ ଐଶ୍ୱର୍ଯ୍ୟ ଏବଂ ଆଭିଜାତ୍ୟର ମୋହ କେମିତି ମନୁଷ୍ୟକୁ ଅନ୍ଧ କରିଦିଏ ଏବଂ ମାନବିକତା କିପରି ସଂକୀର୍ଣ୍ଣ ସ୍ୱାର୍ଥ ନିକଟରେ ବଳିପଡ଼େ ମାଣିକଯୋଡ଼ି ତାର ଏକ ଜ୍ୱଳନ୍ତ ନିଦର୍ଶନ ।

ମାଣିକଯୋଡ଼ର ମିଳାମ୍ବର ସିଂହ ବାଗପଦା ପଟ୍ଟନାୟକ ବଂଶର କନ୍ୟା ସରୋଜିନୀଙ୍କୁ ବିବାହ କରିବାର ପ୍ରତିଶ୍ରୁତି ଦେଇ ବିବାହର ଅବ୍ୟବହିତ ପୂର୍ବରୁ ବିବାହ ପ୍ରସ୍ତାବ ପ୍ରତ୍ୟାଖ୍ୟାନ କରିଥିବାରୁ ସରୋଜିନୀ ମନଦୁଃଖରେ ଆତ୍ମହତ୍ୟା କରିଥିଲେ ।

ଏହିଘଟଣାରେ ବରଦାପ୍ରସନ୍ନ ପଟ୍ଟନାୟକଙ୍କ ପ୍ରାଣ ସିଂହବଂଶ ବିରୁଦ୍ଧରେ ପ୍ରତିହିଂସାପରାୟଣ ହୋଇଉଠିଲା ଏବଂ ସେ ମିଳାମ୍ବର ସିଂହବଂଶର ସର୍ବନାଶ କରିବାକୁ ମନେ ମନେ ପ୍ରତିଜ୍ଞା କରି ବସିଲେ । ଘଟଣାକ୍ରମେ ବରଦାପ୍ରସନ୍ନଙ୍କ ଝିଅଶୈଳ, ମିଳାମ୍ବର ସିଂହଙ୍କ ପୁତ୍ର, ପାର୍ଥସିଂହ ସହିତ ବିବାହ ସୂତ୍ରରେ ଆବଦ୍ଧ ହୁଏ ।

ଏଇଠାରୁ ଆରମ୍ଭ ହୁଏ ପ୍ରତିଶୋଧର ଉଦ୍‌ଯୋଗ ପର୍ବ···

ମାଣିକଯୋଡ଼ର ଖଣ୍ଡେ ଜମିକୁ କେନ୍ଦ୍ରକରି ଦୁଇପରିବାର ମଧ୍ୟରେ କଳହର ସୂତ୍ରପାତ ହୁଏ । ଏଇ ସୁଯୋଗରେ ଶୈଳକୁ ତା' ସ୍ୱାମୀ-ସଂସାରକୁ ନ ପଠାଇବା ପାଇଁ ନିଷ୍ପତ୍ତି ଗ୍ରହଣ କରନ୍ତି ବରଦାପ୍ରସନ୍ନ । ଶୈଳ ସିଂହବଂଶର ବଧୂ···ତେଣୁ ପାର୍ଥର ବଡ଼ଭାଇ ସିଦ୍ଧାର୍ଥ ସିଂହ ତାକୁ ଫେରାଇ ନେବାକୁ ବାଗପଦା ଆସନ୍ତି । ବରଦାପ୍ରସନ୍ନଙ୍କ ସହିତ ଏକ ସାଲିସ କରିବାର ପ୍ରସ୍ତାବ

ଦଅନ୍ତି ସେ। ମାତ୍ର ବରଦାପ୍ରସନ୍ନ ସେ ପ୍ରସ୍ତାବରେ କର୍ଣ୍ଣପାତ ନକରି ସିଦ୍ଧାର୍ଥଙ୍କୁ ଅପମାନ ଦେଇ ବାହାରି କରି ଦଅନ୍ତି। ଶୈଳ ସହିତ ପାର୍ଥ ବିବାହ ପର୍ଯ୍ୟନ୍ତ ସେ ଅସ୍ୱୀକାର କରନ୍ତି। ଦୁଇଟି ସାମାଜିକ ପରିବାରରେ ଉଠିଆସେ କାଳବୈଶାଖୀ ଝଡ଼···



('ମାଣିକଯୋଡ଼'ରେ ବାବି, ଲୀଲା, ଅକ୍ଷୟ, ଅନନ୍ତ)

ସେଇ ଝଡ଼ ଝଞ୍ଜାରେ ଶୈଳ ଓ ପାର୍ଥ, ପରସ୍ପରଠାରୁ ବିଚ୍ଛିନ୍ନ ହୋଇଯାଆନ୍ତି। ଅପମାନର ପ୍ରତିଶୋଧ ନେବାକୁ ଯାଇ ପାର୍ଥ ଅନ୍ୟତ୍ର ବିବାହ କରିବାର ସଂକଳ୍ପ କରନ୍ତି।



('ମାଣିକଯୋଡ଼'ରେ ଅକ୍ଷୟ, ଡଃ ସୁଖଲତା)

ଘଟଣାପରେ ଘଟଣା ଦ୍ରୁତଗତିରେ ଘଟିଚାଲେ। ସିଦ୍ଧାର୍ଥଙ୍କ ଆଦେଶରେ ପାର୍ଥ ମାଣିକଯୋଡ଼ ମଉଜାର ନଜିର ଘରଟି ଖଚାଖଚ ତୋଳିଥାନ୍ତି, ଦଳଲୋକ ନେଇ ବରଦାପ୍ରସନ୍ନ ସେ ଘର ଉପରେ ହଠାତ୍ ଚଢ଼ାଉ କରନ୍ତି। ଫଳରେ ଉଭୟପକ୍ଷ ମଧ୍ୟରେ ସଂଘର୍ଷ ହୁଏ। ପାର୍ଥଙ୍କୁ ଜଖମ କରି ବରଦାପ୍ରସନ୍ନଙ୍କ ଲୋକେ ତାଙ୍କୁ ନେଇଯାନ୍ତି ବାଗଧରା। ସମ୍ବାଦ ପାଇ ସିଦ୍ଧାର୍ଥ, ବରଦା ପଟ୍ଟନାୟକଙ୍କ ଘରେ ଉପସ୍ଥିତ ହୁଅନ୍ତି, ଆହତ

ପାର୍ଥକୁ ଫେରାଇ ଆଣିବାଲାଗି । ମାତ୍ର ନିଷ୍ଠୁର ବରଦାପ୍ରସନ୍ନଙ୍କ ପ୍ରତିଶୋଧ ...ର ଜଳନ ହୁଅନ୍ତି ସେ । ମାତ୍ର ନିୟତିର ଆଦେଶରେ ଅବସ୍ଥାର ପରିବର୍ତ୍ତନ ଘଟେ । ଆହତା ବିହଙ୍ଗୀ ସଦୃଶ ଧୂଳିରେ ଲୋଟିଯାଏ ଶୈଳ । ପାର୍ଥ ଓ ଶୈଳର ପୁଣି ମିଳନ ହୁଏ ।

**ଗୀତ ଃ**

ନୂଆ ହୋଇ ବୋହୂଟି ଯାଏ ବାପଘର
ସୁଖର ସପନ ଉଇଁ କେତେ ରେ
ମନେ ଭରେ ହସର ଜୁଆର ।
ରଜର ସଜବାଜ ଲୋ
ଅଳତା, ମିଠା, କଜଳ
ଝୁଲୁକୁଣୀ ଫୁଲତୋଳା ଗଛଲୋ···
କୁଆଁର ପୁନେଇଁ ପୁଚି ଖେଳ
ମା' ବାପର ଗେଲବସର ଝିଅଲୋ···
ସାଇପଡ଼ିଶା ସାଙ୍ଗସାଥୀ ମେଳ ।
କହିବ କେ ମିତଣୀ, ତୁଲେ ବଡ଼ ସିଆଣୀ ।
ଶାଶୁଘରେ ଯାଇ ସବୁ ଭୁଲିଗଲୁଣି···
ନାଗରର ପିରତିରେ ମଜ୍ଜିଗଲୁଣି···



ମୋ ମନ-ବୀଣାର ତାରେ ହେ ଅବୁଝା ମୂର୍ଚ୍ଛନା
ଏ ମଧୁ ସୁରେ ଆଜି ମୋତେ ଡାକନା···ନା···
କୁହୁ କମା ଏତେ ସୁର ଏ ମନେ ବଜାଇ ଗଲ
ସବୁଜ ସପନ ମାୟା ଏ ଆଖିରେ ଖୁଇ ଦେଲ
ତେଣୁ ଆଜି ଆଉ କିଛୁ ଭଲଲାଗେ ନା···
ତୁମେ ନୀଳ ଆକାଶର ଚନ୍ଦ୍ରମା ମୁଁ ନୀଳକଇଁ···
ନୀଳିମାର ଦିଆନିଆ—ଏ ସାରା ଜୀବନପାଇଁ
ଚନ୍ଦ୍ର ମୁଁ ସୁର ତୁମେ—ଭୁଲିପାରେନା···

✱

କୁଆଁର ପୁନେଇଁ ଜହ୍ନଲୋ ଫୁଲ ବଉଳବେଣୀ
ଚହଟ ସୁଗନ୍ଧ ଚହଟି ଯାଏ
ଉଚାଟ କରେ ଏ ମନ ଫୁଲ ଲୋ, ଫୁଲ ବଉଳ ବେଣୀ···

କଇଁ ଫୁଲ କଇଁ କଇଁ ଲୋ ଫୁଲ ବଉଳ ବେଣୀ
ଜହ୍ନ ଧରିବାକୁ ହାତ ବଢ଼ାଇଲା
ଏ ଯାକେତ ପାଇ ନାହିଁଲୋ ଫୁଲ ବଉଳ ବେଣୀ
କୁଆଁଶ ମନରେ କାଉଁଶ ଲଗେ
ଉଇଁଶ ଖେଳେ ତା' ମନେ
ତୁମ ତାନ କଆଁ ଜହ୍ନିଫୁଲ ଗୋ ବସିଛ କ ଅଭିମାନେ···
ହଳଦୀ ମାଖି ଅଙ୍ଗରେ, ଫୁଟିଛୁ କେଉଁ ଢଙ୍ଗରେ
ଜହ୍ନମାଇଁ ଗୋ କଜଆ କଲକ ଜହ୍ନମାମୁଁଙ୍କ ସାଙ୍ଗରେ
ଛୁଆ ଲୋ ଛଳୁ ପଚଗ
ଜହ୍ନ ମାମୁଁ ତୋ' ସ୍ନେହପଗ
ଗରଜ ପଡ଼ୁଛି ଜହ୍ନମାଇଁ ହେବ
ତାକୁ ବାହାହେଉ ମନ୍ଥଗ···
ମେଘର ବୋଇତ ବାହିଲୋ ଫୁଲ ବଉଳ ବେଣୀ
ଜହ୍ନମାମୁଁ ଯିବେ ପାରଧିକୁ ଯିବେ
ଝୁରୁଥିବ ଜହ୍ନ ମାଇଁଲୋ ଫୁଲ ବଉଳବେଣୀ···
ଜହ୍ନ ପଡ଼େ ହନ ପରି ଲୋ ଫୁଲ ବଉଳ ବେଣୀ
କୁଆଁର ପୁନେଇଁ ହଉନ କମ୍ପା
ସବୁହନେ ଏଇପରି ଲୋ ଫୁଲ ବଉଳବେଣୀ ।

❊

---

(୫୩ ପୃଷ୍ଠାର ଅବଶିଷ୍ଟାଂଶ)

ଘର କଥା ଏ ତ ନନ୍ଦନ
ମନେ ଭରି ଅଭିମାନ······ । ୧ ।

ଶ୍ୟାମଳ କେଦାରେ ହସେ କାଶ ଫୁଲ
ମଉଳା ମନରେ କୁହୁଳେ ମଶାଲ
ମୁକୁତା କ ହେବ ମମତାର ମୂଲ
କରମଟା ଏଡ଼େ ହୀନମାନ ।
ମନେ ଭରି ଅଭିମାନ··· । ୨ ।



**ଉଦୟନ ପିକ୍‌ଚର୍ସର**

# ସୂର୍ଯ୍ୟମୁଖୀ

**( ୧୯୭୩ )**

**ସଂଗଠନରେ** ✻ କାହାଣୀ, ଚିତ୍ରନାଟ୍ୟ, ପ୍ରଯୋଜନା—ସୌମେନ୍ଦ୍ର ମିଶ୍ର
ସଂଗୀତ ରଚନା ଓ ପରିଚାଳନା—ଶାନ୍ତନୁ ମହାପାତ୍ର
ସଂଳାପ—ଗୁରୁକୃଷ୍ଣ ଗୋସ୍ୱାମୀ
ଫଟୋଗ୍ରାଫି—କାନାଇ ଦେ
କଣ୍ଠ ସଂଗୀତ—ଲତାମଙ୍ଗେସକର, ମାନ୍ନା ଦେ, ପ୍ରଣବ, ନିର୍ମଳା, ସିକନ୍ଦର ଆଲମ, ଶେଫାଳୀ, କାହ୍ନୁଦାସ, ଗୁମେଲ୍ଲି, ମଲ୍ଲିକା ।
ପରିଚାଳନା—ପ୍ରଫୁଲ୍ଲ ସେନଗୁପ୍ତ ।

**ରୂପାୟନରେ** ✻ ଡଃ ମିନତି ଦାସ, ସୌମେନ୍ଦ୍ର, ଅନନ୍ତ, ବାବୁ, ଡାଃ ସୁଖଲତା, ବିମଳ, ଧୀରେନ୍ଦ୍ର, ଲକ୍ଷ୍ମୀ, ବିମଳ ଚୌଧୁରୀ ଏବଂ ଆହୁରି ଅନେକ ।

**କାହାଣୀ** ✻

ଓଡ଼ିଶାର ଏକ ଅଖ୍ୟାତ ପଲ୍ଲୀରେ ମଧ୍ୟବିତ୍ତ ପରିବାରରେ ରାଜୁର ଜନ୍ମ । ବହୁଦିନୁ ପିତାଙ୍କ ବିୟୋଗ ହେତୁ ବିଧବା ମାଆ ଏବଂ ଶିକ୍ଷିତ ବଡ଼ଭାଇ ମୋହନଙ୍କ ତତ୍ତ୍ୱାବଧାନରେ ସେ ମଣିଷ ହୋଇଛି । ନିରାଡ଼ମ୍ବର ଏବଂ ସରଳତା ଥିଲା ରାଜୁ ଜୀବନର ପ୍ରଥମ ଓ ପ୍ରଧାନ ଆଦର୍ଶ । ଗୃହିଁ ନଥିଲା ପଲ୍ଲୀମାଆର ମଧୁର ମମତାକୁ ଛିନ୍ନକରି ସେ ଚାଲିଯିବ ଆଭିଜାତ୍ୟପୂର୍ଣ୍ଣ ମହାନଗରୀକୁ ।

ପଲ୍ଲୀର ସବୁଜିମା ଭିତରେ ସେ ପ୍ରାଣଠାରୁ ଅଧିକ ଭଲ ପାଉଥିଲା ଗୀତାକୁ······ଗୀତା ହିଁ ଥିଲା ତାର ପଲ୍ଲୀ ଜୀବନର ସୁରଭିତ ଝଙ୍କାର······

ମା' ଓ ଭାଇଙ୍କର ଆଶା ସାର୍ଥକ କରି ବି.ଏ. ପରୀକ୍ଷାରେ ପ୍ରଥମ ସ୍ଥାନ ଅଧିକାର କରିଛି ରାଜୁ । ତାପରେ ଗାଁ ଗହଳର ପାଣି, ପବନ, ମା'ଙ୍କର ସ୍ନେହ, ବଡ଼ଭାଇଙ୍କ ଶ୍ରଦ୍ଧା, ଗୀତାର ସହାନୁଭୂତି ସବୁକୁ ପଛରେ ପକାଇ ଉଚ୍ଚଶିକ୍ଷାପାଇଁ ରାଜୁ ଚାଲି ଆସିଛି ସେଇ ଆଭିଜାତ୍ୟ ପୂର୍ଣ୍ଣ କଟକ ନଗରୀକୁ—ଯେଉଁ ନଗରୀ ପଲ୍ଲୀ ଗାଁକୁ ପରିହାସ କରେ, ଯେଉଁଠି ସଭ୍ୟତାର ମାପ କାଠିରେ ମଣିଷ ନିଜକୁ ଚଢ଼ିଲେ ।

ସମୟର ସ୍ରୋତ ବହି ଚାଲିଛି । ସେହି ସ୍ରୋତରେ ଭାସିଯାଏ ସ୍ନେହମୟୀ ଜନନୀ, ଅଗ୍ରଜ ମୋହନ, ପ୍ରାଣପ୍ରତିମା ଗୀତା କେଉଁଆଡ଼େ ହଜିଗଲେ·········


[`ସୂର୍ଯ୍ୟମୁଖୀ'ର ନାୟିକା ନିନଡ଼]

ରାଜୁର ଜୀବନାକାଶରେ ଦେଖାଦେଲା ସରଳା ପକ୍ଷୀ କିଶୋରୀ ଗୀତା ପରିବର୍ତ୍ତେ ଲାସ୍ୟମୟୀ ଉଷା······ ରାଜୁର ସହପାଠିନୀ । ଜଣେ ଧନୀ ବ୍ୟକ୍ତିଙ୍କର ଏକମାତ୍ର କନ୍ୟା ସେ । ଉଷାକୁ ପାଇ ରାଜୁ ଭୁଲିବାକୁ ଲାଗିଲା ନିଜର ଆଦର୍ଶ । ରାଜୁର ଜୀବନ କାହାଣୀରେ ସୃଷ୍ଟି ହେଲା ନୂତନ ଅଧ୍ୟାୟ । ଉଷା ସହିତ ରାଜୁର ସମ୍ପର୍କ କ୍ରମଶଃ ସହପାଠୀ ମାନଙ୍କର ଚକ୍ଷୁଶୂଳ ହେଲା ।

ହଠାତ୍ ରାଜୁ ଆଜି ଉଷାର ଭାଗ୍ୟାକାଶରେ ଦେଖା ଦେଇଛି ଦୁର୍ଦ୍ଦିନର ଝଡ଼······ସବୁକିଛି ଓଲଟ ପାଲଟ ହୋଇଯାଇଛି ।

ତା'ପରେ ଦୁର୍ଘଟଣାରେ ରାଜୁ ହରାଇ ବସେ ମହାମୂଲ୍ୟବାନ ଦୁଇଟି ଚକ୍ଷୁ······ଏଣେ ମା' ଶଯ୍ୟାଶାୟୀ । ଗୀତା ଆକୁଳ ନିବେଦନ ଜଣାଏ ଠାକୁରଙ୍କୁ । ହେଲେ ଠାକୁର କ'ଣ ତାର ଡାକ ଶୁଣିଲେ ? ରାଜୁର ଲକ୍ଷ୍ୟ ପୂରଣ ହେଲା ? ଉଷା କ'ଣ ରାଜୁକୁ ଫେରି ପାଇଲା ? ଆଉ ପିଲାଦିନର ଧୂଳି ଖେଳର ସାଥୀ ଗୀତା ଜୀବନରେ କ'ଣ

‘ସୂର୍ଯ୍ୟମୁଖୀ’ ଫୁଲପରି ଚାହିଁ ରହିବା ସାର ହେଲା ? କାହିଁକି ? ଏଥିପାଇଁ ଦାୟୀ କିଏ ? ସବୁ ସେଇ ଅଦେଖା ହାତର ନିର୍ଦ୍ଦେଶ……

ଯେଉଁ ନିର୍ଦ୍ଦେଶରେ ମଣିଷ ପୃଥିବୀର ଚଲା ପଥକୁ ଆସେ, ଚାଲେ, ହସେ, କାନ୍ଦେ ଆଉ ଚାଲିବା ଶେଷକରେ । ସେଇ ହାତର ନିର୍ଦ୍ଦେଶରେ ହୁଏତ ମଣିଷ ସାଗରରୁ ଆଶା କରି ଶାମୁକା ପାଏ । ସବୁଜ ବନଶାଖାରେ ନୀଡ଼ ବାନ୍ଧିବାର ଲକ୍ଷ୍ୟ ନେଇ ହୁଏତ ମରୁଭୂମିର ବାଲିଝଡ଼ ଭିତରେ କାନ୍ଦିଉଠେ……

## କେତୋଟି ଅଭୁଲା ଗୀତ *

ସେଇ ଚିହ୍ନା ଗଛଫୁଲ ଆଜି,
କିଏ—ଚିମିଚିମି ଗଲା ହାୟ ହଜି… …
କମ୍ପା ତାର ମଧୁଛୁଆଁ
ଆଣେ ଏ ନିଶୀଥେ ମାୟା
ପାରେ ନାହିଁ ମୁହିଁ ବୁଝି…
ହାୟ, ଗାଏନା ମୁଁ ତାରେ ଖୋଜି…
ସେ ଯେ ଭିଜା ବଉଳର, ମିଠା ମିଠା ମହକରେ
କମ୍ପା ଆଣେ ଶିହରଣ, ମଧୁ ପୁଲକ ଭରେ
ଧିମା ଧିମା ସମୀରରେ, ଝିଲ୍ଲୀ ସୁରେ ସୁରେ
ଅଜ୍ଞାତ ମୋ’ ଦେଲା ଭିଜି…
ଆଖିରେ ମୋ’ ଦେଇଗଲା କୁହୁକ କଜଳ
ଯେ ପାଇଁ କି ଦିଶେ ସବୁ ସବୁଜ ମଧୁର…
ସେ ଯେ ଝରା ଶିଶିରରେ ଟୋପା ଟୋପା ଅଭିମାନ,
ଦେଇଗଲା ଉପହାର,
ତୋଳିନେଲା ମୋର ମନ
ଚେନା ଚେନା ଭାବନାରେ ରଙ୍ଗୀନ କରି ଧୀରେ
ଆଗତ ମୋ ଦେଲା ସାଜି…



ବନ୍ଧରେ…ଦୁନିଆରେ ସମୟର ନଈ ବହିଯାଏ…
ଏ କୂଳ ଭାଙ୍ଗି କେବେ ଆରକୂଳ ଗଢ଼ିଦିଏ,
ଦୁଇକୂଳ କେବେ ଭାସିଯାଏ ।
ଏ କୂଳରେ ସୁନା କ୍ଷେତ, ଭରା ହସ ଫସଲର

ସେ କୂଳରେ ଫଟାଭୂଇଁ, ଆଉ ତାର ହାହାକାର
ଏ କୂଳେ ଗୋଧୂଳି ଝୁମେ···ସେ କୂଳେ ରଜନୀ·ପାହେ
ସେ କୂଳରେ ମିଳନର
ଚନ୍ଦ୍ର କିରଣ ଝରେ
ଏ କୂଳରେ ବିରହର
ଉଆଁସ କାଳିମା ଘେରେ···
ସେ କୂଳରେ ହସେ କିଏ, ଏ କୂଳରେ କାନ୍ଦେ କିଏ ।

❋

ରାଜୁ—ସେଇ ନୀଳପରୀ ଦେଶ
ଯହିଁ ଚନ୍ଦ୍ରମା ହସେ,
ଯିବ ମୁଁ ମାଖି ଏ ଜୋଛନା···
ଉଷା—ଏଇ ସବୁଜ ଧରାରେ
ଯହିଁ ଫୁଲ ହାସ ଝରେ, ଥିବ ମୁଁ ଦେଖି ଏ ଜୋଛନା···
ତୁମେ ରହିବ କି ନାହିଁ କୁହନା···
ରାଜୁ—ତୁମେ ଯିବ କି ଗୋ ନାହିଁ କୁହନା ?
ଯହିଁ ରୂପାର ଲତିକା, ଧରେ ହୀରାର କଳିକା
ସୁନାର ବିହଙ୍ଗୀ ଯେ ବନେ
ପୁଲକ ଆଣେ ତା' କୂଜନେ,
ଭସା ବାଦଲ ରଥରେ
ଭ୍ରମି ଆକାଶ ବୁକୁରେ···
ଯିବା ଆମେ ଯହିଁ ଆଶା ଟଳେନା
ଅବା କଇଁଫୁଲ କେବେ କାନ୍ଦେନା
ସେଇ ନୀଳପରୀ ଦେଶେ···
ଉଷା—ଏଇ ମାଟିର ଜୀବନ, ନୁହେଁ କେବଳ ସପନ
ଭବ ସେ ବିରହେ ମିଳନେ, ଗଢ଼ା ସେ ସତ ଓ ସପନେ
ଖାଲି ସପନ ମାୟାରେ,
ତାର କୁହୁକ ଛୁଆଁରେ
ମାଟିଫୁଲ ପାଦେ ଦଳି ଦିଅନା
ଏଇ ଧରା ଧାରା ଭୁଲି ଯାଅନା···



ଉତ୍କଳ ଚିତ୍ରପ୍ରତିଷ୍ଠାନର

## ନାରୀ
(୧୯୬୩)

ସଂଗଠନରେ * କାହାଣୀ, ସଂଳାପ, ଚିତ୍ରନାଟ୍ୟ ଓ ପରିଚାଳନା—ବିଲୋଚନ

ସଂଗୀତ ରଚନା—ଭବଚନ୍ଦ୍ର
ସଂଗୀତ ପରିଚାଳନା—କାଳୀଚରଣ ଓ ଉଦୟନାଥ
ଅଲୋକ ଚିତ୍ର—ଶ୍ରୀ ଶଙ୍କର ବାନାର୍ଜୀ
କଣ୍ଠଶିଳ୍ପୀ—ଭବଚନ୍ଦ୍ର, ଉଦୟ, ନିର୍ମଳା, କମଳା ।

ରୂପାୟନରେ * ଅଶୋକ, ବଳରାମ, ଦୁର୍ଲଭ, ରବିନ୍, ରଣେନ୍, ନିତ୍ୟାନନ୍ଦ, ଉଦୟ, ଗୋକୁଳ, ପ୍ରକାଶ, ମୀର, ରଣଜିତ, ନରେନ୍ଦ୍ର, କାଳୀ, ଅମଲ, ସୁଷମା, ଅନିମା, ମାଳା, ଝରଣା, କମଳା ।

କାହାଣୀ * "ଜୀବନ ଝରଣାମର ଯା'ରେ ମନ ଦେଇଛୁ ସେ କା'ରେ···"


(କାଳୀ ଚରଣ ପଟ୍ଟନାୟକ)

କଥାଟା ଜୟନ୍ତ ଆଉ ମାନସୀ ଜୀବନରେ ସତ ହୋଇଛି । ଦୁହେଁ ଥିଲେ ପାଠର ସାଥୀ, ସେହିଦିନଠୁଁ ଏକାଡ଼ାଳରେ ବସା ବାନ୍ଧିବାର ଆଶାରେ ସରିଯାଇ ଥିଲା ମନଦିଆ ମନନିଆ ।

ହଠାତ୍ ଆକାଶରେ ଅଦିନ ଘୋରଘନ ଘେରି ଆସିଲା । ବିଜୁଳିର ଚମକରେ ଭାଂଗିଗଲା ସୁଖର ସାଗି ସ୍ୱପ୍ନ । ଉତ୍କଟ ବସନ୍ତରେ ଜୟନ୍ତ ହରାଇ ବସିଲା ଆଖି ଦୁଇଟି । ସେବିକା ମାଳତୀ ଏତିକିବେଳେ ଦେଖା

ଦେଇଛନ୍ତି ଅସହାୟ ଜୟନ୍ତ ଜୀବନରେ···

ଜାଁଧ୍ୟା, ଜନନୀ, ଭଗିନୀର ମମତା ଧରି ମାଳତୀ ଦେଖା ଦେଇଛନ୍ତି । ଅନ୍ଧକୁ ଚକ୍ଷୁ ଦାନ ଦିଏ ସେଇ ନାରୀ । ମାଳତୀ ଯୋଗୁଁ ଜୟନ୍ତ ଫେରି ପାଇଛନ୍ତି ଆଖି । ଆଖି ମେଲି କେତେ ଆଶା, କେତେ ଉତ୍କଣ୍ଠାରେ ଜୟନ୍ତ ସେହିଦିନ ଖୋଜିଛନ୍ତି ତାର ମାନସ ପ୍ରତିମାକୁ । ଶେଷରେ ବହୁ ବାଦବିସମ୍ବାଦ ପରେ ଦେଖା ହୋଇଛନ୍ତି ମାନସୀ ସହିତ । ଭଙ୍ଗାଗଢ଼ା ସଂସାରର ଅନେକ ଭଲମନ୍ଦ ଗୁଣ୍ଠାମଣା ଭିତରେ ନାରୀର ରୂପ ଓ ଆଦର୍ଶର ଏକ ସ୍ୱୟଂ-ସମ୍ପୂର୍ଣ୍ଣ ଅବତାରଣା ଏଥିରେ ହୋଇଛି ।

❊

## କେତୋଟି ମନ ଭୁଲାଣିଆ ଗୀତ ❊

ବାହାରେ—ଅନ୍ଧନ ଘୋର ଘନ ଘେରି ନୀଳାମ୍ବରେ
କେ' ପିଆସୀ ମୋରେ ଡାକେରେ···

କେକା କାନନେ ନାଚେ କେକୀ ପୀରତି ମାଗି
ଲୁଚି ଦାମିନୀ ରଚେ ମାୟା ବାଦଲ ଲାଗି,
ଥିଲ ଓଢ଼ଣା ତଳେ
ଯେ, ସପନ କୋଳେ
ଆଜ, ରହେନା ଘରେ—ରହେନା ଘରେ,
କେ' ପିଆସୀ ମୋରେ ଡାକେରେ··· ।୧।

ରୁମୁ ଝୁମୁ ଝୁମୁରୁ ମଞ୍ଜିର କା'ର
ଘୁମ ନୟନେ ଲେଖେ ଲଜୁଆ ଗାର
ଛନ୍ଦ ଭୁଲି—ଖୋଜେ ଆଜ ସଂଗୀ
କାନ୍ଦି କାନ୍ଦି ସେ ରେ··· ।୨।
କେ' ପିଆସୀ ମୋରେ ଡାକେରେ···

❊

ମନୁ ଭୁଲିଯା, ଭୁଲି ଯା···
ଭୁଲିଯା, ମହୁଆ ଦିନ
ନାହିଁ ମନେ, ନାହିଁ ମୋର, ଅଭିମାନ ।
କାଲିର ସ୍ୱପନଅଁ ରାତି
ଆଜିର ହେଲେ ପାହାନ୍ତ
ଆଉ କି ହୁଏ ସେ କା'ର
ବୁକୁର ଅଲିଭା ଗାର
ଛନ୍ଦା ଘେରା-ନୟନେ, ସେ ପରୀ ଦିନର ସପନ ।୧।

ତୁମ ଅବସରେ ଖାଲି, ଆସିଥିଲି ବୁଲି ଗୋ,
ତୁମ ମନ ବନେ ଫୁଲ
ଫୁଟାଇ ଯିବି ମୁଁ ଭୁଲି
ତୁମରି ମେଘେ ଆଜି—ଅରୁଣ ହଂସ ସାଜି
ମୋର ଯେ ମାଧବୀ ଜଣୀ—ଜଣୀ ଆଜି ପରବାସୀ
କଣ୍ଠ ଭରି ମଉନେ—ଗାଇଛ, ସାରିଛୁ ସେ ଗାନ ।୨।



ଗାଙ୍ଗୁଲି ଫିଲ୍ମ ପ୍ରଡ଼କ୍ସନ୍ସର

# ଶ୍ରୀ ଶ୍ରୀ ପତିତପାବନ

## ( ୧୯୬୩ )

**ସଂଗଠନରେ** ❊ ପ୍ରଯୋଜନା—ଏସ୍. ଗାଙ୍ଗୁଲି ଏଣ୍ଡ୍ସନ୍ସ, ପୁରୀ
ମୂଳକଥା—ପଣ୍ଡିତ ଭୋଳାନାଥ, ଗୀତ ଓ ସଂଳାପ—**ହରିହର ମିଶ୍ର,**
ସଂଗୀତ ପରିଚାଳନା—ଚନ୍ଦନ, ରଘୁନାଥ ପାଣିଗ୍ରାହୀ ଓ **ରାଧାମଣି**
ମହାପାତ୍ର, ଚିତ୍ରଗ୍ରହଣ—ଏସ୍. ଗାଙ୍ଗୁଲି, ଚିତ୍ରନାଟ୍ୟ—ଏସ୍. ଗାଙ୍ଗୁଲି
ଓ ସାରେନ ଦାସ, ନିର୍ଦ୍ଦେଶକ—ସୁକୁମାର ।

**ରୂପାୟନରେ** ❊ ସତ୍ୟବାଦୀ, ଚିତ୍ରମଣି, ଲକ୍ଷ୍ମୀପ୍ରିୟା, ଶ୍ୟାମସୁନ୍ଦର, ନିତ୍ୟାନନ୍ଦ,
ଗୌରାଙ୍ଗ, ନରସିଂହ, ପଦ୍ମାବତୀ, ଦଣ୍ଡପାଣି, ରମାନନ୍ଦ, ହରିହର,
ବିଜୟ, ବିଶ୍ୱନାଥ, ଗୀତା, କୋଇଲପ୍ରଭା, ଭରତ, ଲକ୍ଷ୍ମୀନାରାୟଣ,
ଗୋବିନ୍ଦ, ସବିତା, ମିସ୍ ଶତପଥୀ, ବନ୍ତୁ, କୁମ, ମାଳା, ମଲ୍ଲିକା,
ଜ୍ୟୋତ୍ସ୍ନା, ପୂର୍ଣ୍ଣିମା, ବେଳା, ରାଣୀ, ଚଞ୍ଚଳା ଆଦି ଅନେକ ।

**କାହାଣୀ** ❊

ପ୍ରାୟ ସତୁରି ବର୍ଷ ତଳେ ଆଜଠାରୁ ସେଦିନ ବି ବିଶ୍ୱପତି ଶ୍ରୀ ଜଗନ୍ନାଥଙ୍କର ଗୌରବଗାନ ସର୍ବତ୍ର ମୁଖରିତ ହେଉଥିଲା ।



(ନାୟକ ଶ୍ୟାମସୁନ୍ଦର)

ବାଟଲେଣ୍ଡ୍ର ଜିଲ୍ଲାର ଏକ ଅଖ୍ୟାତ ପଲ୍ଲୀରୁ ସେହି ପରମାତ୍ମାଙ୍କ ଦର୍ଶନ ଆକାଂକ୍ଷା ନେଇ ଯାତ୍ରାପଥରେ ଯୋଗ ଦେଇଥିଲେ ଦୁଇଟି ପରିବାର । ଗୋଟିଏ ପ୍ରତିପତ୍ତିଶାଳୀ ଜମିଦାର ପରିବାର ଆଉ ଅପରଟି ଏକ କ୍ଷୁଦ୍ର ଚଣ୍ଡାଳ ଗୋଷ୍ଠୀର ଦୁଇଟି ସରଳ ପ୍ରାଣୀ—ହରିଆ ଆଉ ତା'ର ଭକ୍ତପ୍ରାଣା ଆଈ ।

କିନ୍ତୁ ଆଭିଜାତ୍ୟର ଅହମିକା ଠେଲି ତା'ର ବାଲ୍ୟସ୍ମୃତିର ପ୍ରଶାନ୍ତ ଅଶ୍ୱପୃଷ୍ଠ ଜମିଦାର କନ୍ୟା ଚମ୍ପା ନିଜ ପରିବାରରୁ ହୁଏ ବ୍ୟତିକ୍ରମ। ହରିଆ ଆଉ ଚମ୍ପା ଜୀବନସ୍ରୋତରେ ପରସ୍ପର ଆକୃଷ୍ଟ ହୋଇ କେଉଁ ଅଜ୍ଞାତ ଉପକୂଳକୁ ଭାସିଯା'ନ୍ତି ଆପଣାର ଅଗୋଚରରେ। ଦୁଇଟି ପରିବାର ଯାତ୍ରାପଥରେ ଅଗ୍ରସର ହୁଅନ୍ତି ରଥଯାତ୍ରା ଦେଖିବାର ଆଭିମୁଖ୍ୟନେଇ।



(ନାୟିକା ଲକ୍ଷ୍ମୀପ୍ରିୟା)

କିନ୍ତୁ ହିଂସ୍ରଜନ୍ତୁ ସଂକୁଳ ଦୁର୍ଗମ ପଥର ବଣ ଗୁହା ପାହାଡ଼ରେ ବର୍ଗୀ ଦସ୍ୟୁଦଳର ରକ୍ତାକ୍ତ ଆକ୍ରମଣରେ ବିପଦର ଝଡ଼ଝଞ୍ଜା ମାଡ଼ିଆସେ; କେ' କୁଆଡ଼େ ଛିନ୍ନଭିନ୍ନ ହୋଇଯା'ନ୍ତି ହଠାତ୍।

କିନ୍ତୁ ସାହସୀ ହରିଆ ଆଉ ତା'ର ବନ୍ଧୁ ରମିଆ ଅଦ୍ଭୁତ କୌଶଳରେ ଓ ଚଣ୍ଡାଳୁଣୀ ବୁଢ଼ୀର ଐକାନ୍ତିକ ପ୍ରାର୍ଥନାରେ ଶ୍ରୀ ଶ୍ରୀ ପତିତପାବନଙ୍କର ଆଶିଷ ପୀୟୂଷ ଧାରା ଝରିପଡ଼େ ଓ ଶେଷରେ ସବୁ ହୁଏ ସତ୍ୟ, ଶିବ, ସୁନ୍ଦର……

**କେତୋଟି ଅଭୁଲା ଗୀତ ❊**

କହିବି ଗୋ କାହାରି ଚୁପ୍ ଚୁପ୍ କଥା
ମଉଳି ନ ଯିଉ ଲାଜକୁଳୀ ଲତା
ନୂଆ ତୋ ବଅସ ସବୁ ଲଖିଛି କା' ମନ
ତନୁ ଛନ ଛନ ତୋର ଚହଟେ ଚନ୍ଦନ
ଜାଣିଛି ଗୁମର ତୋର କହିବିନି ଥା—
ଚୁପ୍ ଚୁପ୍ କଥା……
ଶୁଣି ଶୁଭ କାଉ ଡାକ ଚମକନା ମାନିନୀ
ଗଲେ ବନ୍ଧୁ ଫିରୁ ଭୁଲି ସତେ କାଲି ସଜନୀ
ଆଣିବ ତୋ'ଲାଗି ବହୁଦୂର ବାରତା—
ଚୁପ୍ ଚୁପ୍ କଥା…



ତୁମେ କହ ପଥିକ ପଥ କେଉଁ ଦୁରେ
ସେହି ପଥେ ମତେ ନେବ କି ସାଥୀରେ······

ଶୀର ଶୀର ସମୀରରେ ଫୁଲହାର
ଝର ଝର ଜୋଛନାରେ ଉପହାର ।
ତାରକା ଝଟକଲଣି ସଜାଇ ଆମ ସରଣୀ
ରଜନୀ ମରମେ ସରମ ଆସେ ଧୀରେ······

ଥିର ଥିର ଇଙ୍ଗିତ ନୟନ ତଳେ
କେତେ ଗୈରିକଭାଷା ଲୁଚକାଳି ଖେଳେ
ସେହି ମଧୁମିଳନ ପୀରତି ଅମଳିନ
ଜୀବନେ ଯଉବନ ସରଗ ପୀୟୂଷରେ······



ଦେବାଶିଷ୍ ପିକ୍‌ଚର୍ସର

# ଜୀବନ ସାଥୀ

( ୧୯୬୩ )

**ସଂଗଠନରେ** ✱ ସଂଗୀତ—ବାଳକୃଷ୍ଣ ଦାଶ, ନିର୍ଦ୍ଦେଶକ—ପ୍ରଭାତ ମୁଖାର୍ଜୀ
**ରୂପାୟନରେ** ✱ ଶରତ, ବାବ, ଗୀତା, ସିମନ୍ତ, ନିରଞ୍ଜନ ।
**କାହାଣୀ** ✱

ପ୍ରେମ ଚରନ୍ତନ । ତାହାର ଏକ ଉଜ୍ଜ୍ୱଳ ଆଲେଖ୍ୟ ଜୀବନ ସାଥୀ । ଦୁଇବନ୍ଧୁ ଲୁଗାକଳ ବସାଇଛନ୍ତି । ତାଙ୍କ ମଧ୍ୟରୁ ଜଣେ ସେଇ ଲୁଗାକଳରେ ଇହଲୀଳା ସମ୍ବରଣ କରନ୍ତି । ମୃତ ବନ୍ଧୁଙ୍କ ପୁଅ ସେଇ ଲୁଗାକଳରେ ଆପ୍ରେଣ୍ଟିସ୍ ରୂପେ କାମ ଶିଖାକରି ବଡ଼ ହୋଇଛି ।

ଲୁଗାକଳର ଅନ୍ୟ ପରିଚାଳକଙ୍କ ଝିଅ ସହ ଖୁବ୍ ଭଲ ସମ୍ପର୍କ ଥାଏ ମୃତବନ୍ଧୁଙ୍କ ପୁଅର । ପରିଚାଳକଙ୍କ କନ୍ୟା ଉଚ୍ଚଶିକ୍ଷିତା । ସେ ମଧ୍ୟ ଆ... ଜଣେ ବିଲାତ ଫେରନ୍ତା ଇଂଜିନିୟରଙ୍କୁ ଲୁଗାକଳର ଉନ୍ନତି ସକାଶେ



(ଜୀବନ ସାଥୀରେ ଶରତ ପୂଜାରୀ, ବାବି)

ନିଯୁକ୍ତ କରାଏ । ବିଲାତଫେରନ୍ତା ଇଂଜିନିୟରଙ୍କ ଦୃଷ୍ଟି ସର୍ବଦା ମିଲ୍ ମାଲିକଙ୍କ ଶିକ୍ଷିତା କନ୍ୟା ଉପରେ । ତା ସହ ଆପ୍ରେଣ୍ଟିସ୍‌ଭାବେ କାମ ଶିଖା କରୁଥିବା ଯୁବକର ସମ୍ପର୍କ ଦେଖି ବିଲାତଫେରନ୍ତା ଇଂଜିନିୟର ସହ୍ୟ କରି ପାରନ୍ତି । ଏ ମଧ୍ୟରେ ଲୁଗାକଳକୁ ଅନେକ ବାଜେ ଭୁଲ ଆସିବାକୁ

ଜିନିଷପତ୍ର ବସ୍ତୁଗୁଡ଼ିକ ବଜାରରେ ବିକ୍ରୀ ହୋଇ ପାରୁନାହିଁ । ଅପର୍ଯ୍ୟାପ୍ତ କ୍ଷତି ହେଲା । ବ୍ଲାକ୍ ମେଲିଂ ହେବା କଥା କ୍ରମେ ଧରା ପଡ଼ୁଛି । ସେଇ ବିଲାତ-ଫେରନ୍ତା ଇଂଜିନିୟରଙ୍କ ଏ ସବୁ ଷଡ଼ଯନ୍ତ୍ର । ତାଙ୍କୁ ବାହାର କରି ଦିଆ ଯାଇଛି ।

ତତ୍ପରେ ମୃତ ବନ୍ଧୁଙ୍କ ପୁତ୍ର ଚାଲିଆସିଛି ସିମଳା ନିକଟସ୍ଥ ଏକ ଜଙ୍ଗଲକୁ । ସେଠାରେ ଡାକବଙ୍ଗଳା ରକ୍ଷକ ଜଣେ ଆଦିବାସୀ । ସେହି ଆଦିବାସୀର ଝିଅ ଚମ୍ପକ ସହ ତା'ର ଦେଖା ହୁଏ ଏବଂ ପ୍ରେମ କ୍ରମେ ନିବିଡ଼ ହୁଏ । ସେ ଆଦିବାସୀ ଝିଅ ଆଉ ଜଣେ ଆଦିବାସୀ ଯୁବକକୁ ପୂର୍ବରୁ ଭଲ ପାଉଥିଲା । ସେ ଜାଣିପାରି ବିଭିନ୍ନ ପ୍ରକାର ଆକ୍ରମଣ କରୁଛି । ଏଣେ ମିଲ୍ ମାଲିକଙ୍କ କନ୍ୟା, ମୃତ ବନ୍ଧୁଙ୍କ ପୁତ୍ରର ଚିନ୍ତାରେ ବ୍ୟସ୍ତ ଚକିତ । ନିଜର ଭୁଲ ହୃଦୟଙ୍ଗମ କରୁଛି ।

ଆଦିବାସୀ ଝିଅ ଚମ୍ପକକୁ ଛାଡ଼ି ବାଧ୍ୟ ହୋଇ ଆସିଛି ମୃତ ବନ୍ଧୁଙ୍କ ପୁତ୍ର । ମିଲ୍ ମାଲିକଙ୍କ ଝିଅ ସହ ତାର ବିବାହ ହୋଇଛି । ଉଜଟି ରାତିରେ ସେ ଅନୁଭବ କରୁଛି ଅନେକ ମାନସିକ ଯନ୍ତ୍ରଣା । ଚମ୍ପକର ଗୀତ ତାର ମନେ ପଡ଼ୁଛି । ଅସ୍ଥିର ଏବଂ ବିବ୍ରତ ହୋଇ ସେ ଧାଇଁ ଯାଇଛି ଚମ୍ପକ ନିକଟକୁ ।

ଗଲାବେଳକୁ ଆଦିବାସୀ ଯୁବକର ଅତ୍ୟାଚାର ସହ୍ୟକରି ନ ପାରି ଚମ୍ପକ ପାହାଡ଼ ଉପରୁ ଡେଇଁ ଆତ୍ମହତ୍ୟା କରୁଛି । ତାକୁ ରକ୍ଷାକରିବାକୁ ଯାଇ ମୃତ ମିଲ୍ ମାଲିକର ପୁତ୍ର ମଧ୍ୟ ପ୍ରାଣତ୍ୟାଗ କରୁଛି ପାହାଡ଼ ଉପରୁ ଖସି ।

## ଅଭୁଲା ଗୀତ କେତୋଟି ::

ଏ ରଙ୍ଗ ଏ ନିଶା                    ଲାଗେ ଆଜି ମନେ
କିଏ ଅଜଣା ଆସିଲା ଏ ବନେ

ଚମ୍ପକ ଚକିତ ହୋଇଲା ସେ ଆସି        ଭରି ବଉଳେ ଉଠିଲି ମୁଁ ହସି
ତା'ର ସାହା, ତା' ଛୁଆଁ ପାଇଲି ଗୋପନେ......

ମୁଁ ଯେ ଗୃହକୀ ଡାକଇ ତ ଝୁରି        ହୋଇ ବଉଦ ପଡ଼ିଲା ସେ ଝରି
ତା' ସାହା, ତା ଛୁଆଁ ପାଇଲି ଗୋପନେ......

ସେ ଯେ ଦରିଆ ଡାକଇ ତ ଦୂରେ        ହୋଇ ଝରଣା ତା' ପାଇଁ ମୁଁ ଝୁରେ
ତା' ସାହା, ତା' ଛୁଆଁ ପାଇବି ତ ଦିନେ......



କେତେ ଯେ ଫୁଲ ମୋ' ବନେ    କେତେ ଯେ ସୁର ମୋ' ଗାନେ·····
ଚନ୍ଦ୍ରର ଲତା ସାଜଛି···ପ୍ରୀତିର ମଧୁ ସୁମନେ······ । ୧ ।
ଦରଦୀ ମଳୟ ଛୁଇଁ, ଯାଅମୋ' ସୁରଭି ନେଇ
ମଧୁପ ନଅ ମୋ' ମଧୁ, ଆଜ ମଧୁ ଲଗନେ···କେତେ ଯେ ।୨।
ଜୀବନ ବସନ୍ତେ ମମ  ଆସ ହେ ପ୍ରିୟତମ···
ସବୁଜ ମନର ବନେ,  କୋକିଳ କୁହୁ କୂଜନେ··· । ୩ ।

⁂

ସାଥୀରେ···ସାଥୀରେ···ସାଥୀରେ···
ଏକା ଲାଗେ ଅତି, ମନେ କେତେ ଛାତି···
ମତେ କି ଆସିବ ନାହିଁ, ଫୁଲରେ ଭଅଁର ହୋଇ
ମୋ ମନର ମଧୁ ପାଇଁ··· । ୧ ।
ତୁମେ ତ ଆସିବ ବୋଲି  ପାଖୁଡ଼ା  ପାରୁନ ଖୋଲି
ଏ ଫଗୁଣ ଯିବ ଚାଲି । ୨ ।
ମାଡ଼ଟିଏ ଟିକେ ଛୁଇ ଏ ଜୀବନେ ଗଲି ପାଇ
ଆଉକିଛି ଲୋଡ଼େଁ ନାହିଁ ।୩।
ସାଥୀରେ···ସାଥୀରେ···ସାଥୀରେ···

★

ବୋଢ଼ୁ ସାଜ ମୁଁ ଆସିଛି ହୋ—ହୋ···
ମୋ' ପାଦ ପଡ଼ୁ ନାହିଁ ବଙ୍କା
ନେଇ ଯାଅ ମୋତେ ଦେଖିବ ଯାତରା,
ସୁଣ ଯିବ ଛତେ  ସଖା··
ମୁହିଁ ସଗଗରେ ମାଖିଛି ମଥାରେ
ଫୁଲୁରି ତେଲ ଯା' କରିଛି ଖୋସା
ଦେଖି ରସେ ହସି ରସିକ ନାଗର
ଶୁଣ ମୋର ପ୍ରେମଡ଼କା···
ଆଖି ତଳେ ମୋର ନାଇଛି କଜଳ
କପାଳେ ଦେଲି ଯା ନାଲିଆ ଟିପା
ବାସଢ଼ିଆ ପାନ କରିଛି ସେବନ
କଥା ମୋର ମହୁମଖା···

●

ଡ଼ାଇମଣ୍ଡଭ୍ୟାଲି ପ୍ରଡକ୍‌ସନ୍‌ର

## ସାଧନା

## (୧୯୬୪)

**ସଂଗଠନରେ** ❊ କାହାଣୀ—ଅନ୍ନପୂର୍ଣ୍ଣା ଦେବୀ
ସଂଳାପ—ଶୀଳାଦିତ୍ୟ, ଶରତ ଓ ମିନତି
ସଙ୍ଗୀତ—ବାଳକୃଷ୍ଣ ଦାସ
ଆଲୋକଚିତ୍ର—ଧୀରେନ୍ ଗୁପ୍ତ
ନିର୍ଦ୍ଦେଶନା—ପ୍ରଭାତ ମୁଖାର୍ଜୀ

**ରୂପାୟନରେ** ❊ ଶରତ, ବାବି, ଅନନ୍ତ, ଧୀର, ବିଜୟ, ବିଭୂତି, ଶୈଳେଶ, ତୁଷାର, ପ୍ରଶାନ୍ତ, ରାଧାଶ୍ୟାମ, ମିନତି, ରାଧାରାଣୀ, ଲୀଳା, ଉର୍ବଶୀ, ବାସନ୍ତୀ, ତପସ୍ୱିନୀ, ଦୀପାଳୀ, ସୁଶୀଳା ।

**କାହାଣୀ** ❊

ସତ୍ୟ ଶିବ ସୁନ୍ଦରର ଉପାସକ ଡ଼ାକ୍ତର ଅରୂପ ଦାସ ସଙ୍ଗରେ ଦେଖାହୁଏ ପ୍ରତିପତ୍ତିଶାଳୀ ଆଡ଼୍‌ଭୋକେଟ ଶ୍ରୀକାନ୍ତ ପଟ୍ଟନାୟକଙ୍କ ଅଲଅଲି ସାନ ଭଉଣୀ ସୁରେଖାର ସ୍ୱାସ୍ଥ୍ୟକୁଦ ଜଳନିଷ୍କାସନ ଗେଟ୍‌ପାଖରେ । ତାପରେ ସାନଭାଇ ଅନୁ ଓ ବଡ଼ ଭାଉଜ ଶୋଭାଦେବୀଙ୍କ ଆଦର ଯତ୍ନରେ ପରିଚୟ ଘନିଷ୍ଠ ହୁଏ ।

ଡ଼ାକ୍ତର ଅରୂପର ମା ବାପା ନାହାନ୍ତି । ଅଛି କେବଳ ଭଉଣୀ ଅଳକା; ସେ ମୂକ । କଥା କହିପାରେନା । ଅରୂପର 'ସାଧନା ସୌଧ' କେତେଜଣ କୁଷ୍ଠ ରୋଗୀଙ୍କୁ ନେଇ ଗଢ଼ିଉଠିଛି । ପାଖରେ ଅଛନ୍ତି ବାବୁଜୀ—ଡ଼ାକ୍ତରଖାନାର ହିସାବପତ୍ର ଦେଖନ୍ତି ଅସୀତ; ଅରୂପଙ୍କୁ ରୋଗୀ ଦେଖାରେ ସାହାଯ୍ୟ କରନ୍ତି ।

ସୁରେଖା ଓ ଅରୂପର ଅବାଧ ମିଳାମିଶାକୁ ପସନ୍ଦ କରନ୍ତି ନାହିଁ ବଡ଼ ଭାଇ ଶ୍ରୀକାନ୍ତ ଓ ମଝିଆଁ ଭାଇ ପ୍ରଶାନ୍ତ । ମଝିଆଁ ଭାଉଜ ଶାନ୍ତି ଦେବୀ ଓ ବଡ଼ ଭଉଣୀ ସୁଜାତା ସେଥିରେ ଅଗ୍ନି ସଂଯୋଗ କରନ୍ତି ।

ବଡ଼ ଭାଉଜ ଶୋଭା ଦେବୀ କିନ୍ତୁ ଏ ଦୁଇଜଣଙ୍କୁ ବିବାହ ବନ୍ଧନରେ ଆବଦ୍ଧ କରିବାକୁ ମନସ୍ଥ କରିଛନ୍ତି ଅନେକ ଆଗରୁ । ବଡଭାଇ ଓ ଭାଉଜଙ୍କ ମଧ୍ୟରେ ହୁଏ ସଂଘର୍ଷ ଓ ପରିବାର ଭିତରେ ଘନେଇଁ ଆସେ ଅଶାନ୍ତି । ଶେଷରେ

ଅରୂପ ଓ ସୁରେଖା ଏକ ବିରାଟ ପଦକ୍ଷେପ ନିଅନ୍ତି—ସୁରେଖା ତାଙ୍କ ଘରୁ ବିଦାୟ ନେଇ ଆସେ ଅରୂପର ସାଧନା ସୌଧ ଗଢ଼ିବାକୁ ।



( 'ସାଧନା'ରେ ଶରତ, ମିନତି )

ବଡଭାଇଙ୍କ ମନ ବଦଳେ । ସେ ବିବାହରେ ମତ ଦିଅନ୍ତି । ଅରୂପ ଓ ସୁରେଖାକୁ ଆଶୀର୍ବାଦ କରନ୍ତି ।

ସୁଖର ସଂସାର ଆରମ୍ଭ ହୁଏ । କିନ୍ତୁ ମଝିରେ ଆସେ ନିସ୍ପୃହା କାଙ୍କ୍ଷିଣୀ ଅଳକା । ଅରୂପ ଓ ଅଳକାର ସମ୍ପର୍କରେ ସନ୍ଦେହ କରେ ସୁରେଖା । ପରିବେଷ୍ଟନୀରେ ପଡ଼ି ଦୁଇ ଜଣଙ୍କ ମଧ୍ୟରେ ଆସେ ବିରାଟ ବ୍ୟବଧାନ । ଶେଷରେ ଏହାର ସମାଧାନ ହୁଏ ବିଗ୍ରାଲପୂରରେ । ସୁରେଖା ପକ୍ଷରୁ ଛାଡ଼ପତ୍ର ପାଇଁ ଆବେଦନ ହୁଏ । ଛାଡ଼ପତ୍ର ମଞ୍ଜୁର ହୁଏ । ଡାକ୍ତର ଅରୂପର ସଂସାର ଭାଙ୍ଗିଯାଏ । ଭଉଣୀ ଅଳକା ତା' ଜୀବନରୁ ଅପସରି ଯାଏ, ଆଉ ଦୂରେଇଯାଏ ସୁରେଖା ତଥାପି ସେ ଏକାକୀ 'ସାଧନା ସୌଧ' ରେ ମଗ୍ନ ରହେ । ଶେଷରେ ଏହାର ସମାଧାନ ହୋଇଛି । ସୁରେଖା ଭୁଲ ବୁଝିପାରିଛି । ତଥାପି ଅରୂପ ତା' ନିଜ ଜୀବନର ବେଦନା କାହା ଆଗରେ ପ୍ରକାଶ କରେ ନାହିଁ ।



('ସାଧନା' ରେ ମିନତି, ଶରତ)

## ଗୀତ *

ଜାଣେନା···ଜାଣେନା···
ମୁଁ ଯିନା ପାରେନ ବୁଝି
ସେ କି ସତେ ବୁଝେନା ।
ଫଗୁଣର ଏଇ ଲଗନେ ଜାଣେନା···।
ବନଫୁଲ କାନେ କାନେ
କହିବ କି ଗୁଞ୍ଜନେ
ମନକଥା ନମାନ ମନା ଜାଣେନା··· ।
ସେ ଯେ ରଙ୍ଗ ଭରା ଉଦାସୀ ଅଳି
ମୁଁ ଯେ ଶୂନ୍ୟ ଭରା ରଜନୀ କଳି
ସହସା ତା' ସପନେ ଚମକି ମୁଁ ଶୟନେ
ବୁଝେଁ ସେ କି—
ଖାଲି ଛଳନା-ଜାଣେନା··· ।

*

ତୁମର ପ୍ରୀତି ନେଇ, ନୟନୁ ଲୁହ ଝରେ
ନବଡ଼ ବେଦନାରେ ପୁଲକେ ମନ ଭରେ···
ତୁମର ଅଭିସାରେ,
ଯିବ ଅଗମ ପାରେ
ପବଣ ଲଗୁ ପଛେ
ମୋ' ଚଲାପଥ ପରେ···
ପରାଣେ ବାଜେ ବେଣୁ
ନୟନୁ ବହେ ଧାର
ଦୁଃଖର ମାଧୁରୀରେ କରଲ ଦଗଦର
ସବୁ ତ ନେବ କାଢ଼ି ନ ଦେବ ତେବେ ଛାଡ଼ି
ମନ ଯାଏନା ଫେର
ବପଦେ ମୃର୍ଚ୍ଛି ମରେ···ତୁମର ପ୍ରୀତି ।



ଛାୟାବାଣୀ ପ୍ରତିଷ୍ଠାନର

# ଅମଡ଼ାବାଟ

(୧୯୬୪)

ସଂଗଠନରେ * କାହାଣୀ—ବସନ୍ତ କୁମାରୀ ପଟ୍ଟନାୟକ ।
ଚିତ୍ରରୂପ ଓ ସଂଳାପ—ଗୋପାଳ ଶ୍ରେଷ୍ଠସ୍ୱ ।
ଚିତ୍ରଗ୍ରହଣ—ଦେଓଜୀ ଭାଇ ।
ସଂଗୀତ—ବାଳକୃଷ୍ଣ ଦାସ ।
ଗୀତ ରଚନା—ନରସିଂହ ମହାପାତ୍ର, ନାରାୟଣପ୍ରସାଦ ସିଂ ।
ନୃତ୍ୟ ନିର୍ଦ୍ଦେଶକ—କେଳୁଚରଣ ମହାପାତ୍ର ।
ନିର୍ଦ୍ଦେଶକ—ଅମର ଗାଙ୍ଗୁଲି ।

ରୂପାୟନରେ * ଗୀତା, ଝରଣା, କୃଷ୍ଣା, ଲକ୍ଷ୍ମୀ, ମେନା, ଭରଣି, ସ୍ନେହ, କୃଷ୍ଣପ୍ରିୟା, ସାଧନା, ଜ୍ୟୋ, ପ୍ରଭା, କଣୋଗ, ମଞ୍ଜୁ, ମୀରା, ଡଲି, ଉମାକାନ୍ତ, ବିମଳ, ଅକ୍ଷୟ, ଶରତ, ବିଭୂତି, ନଟବର, ନରେଶ, ଶ୍ରୀବତ୍ସ, ବୃନ୍ଦାବନ, ଉଜୀର, ଅପନ୍ନ କୁମାର, ଅମୂଲ୍ୟ ।
ଶିଶୁ ଅଭିନେତା – ପୁନ୍‌ପୁନ୍, ପୁଲୁ, ବୁବୁନ୍ ।

କାହାଣୀ * ମାଲ୍ୟା ଆଉ କାବେରୀ—ସମାଜର ଦୁଇଟି ନାରୀ । ଦୁହେଁ ଉଚ୍ଚଶିକ୍ଷିତା । ପିତାମ୍ବର ବାବୁଙ୍କ ଏକମାତ୍ର ଝିଅ ମାଲ୍ୟା । ଘର ଭାଇରେ ଭଉଣୀ । ମାଲ୍ୟା ବିରୁଦ୍ଧରେ ଅଭିଯୋଗ, ଗୋଟିଏ ଝିଅ ବୋଲି ସେ ସମସ୍ତଙ୍କର ସ୍ନେହ ଆଦର ପାଇ ଦିନକୁ ଦିନ ଜିଦ୍ଦିଖୋରୀ ହୋଇଯାଉଛି ।



['ଅମଡ଼ାବାଟ'ରେ ଅକ୍ଷୟ, ଝରଣା]

ବଡ଼ପୁଅ ମୋହନର ବିବାହ ହୋଇଗଲା—ବୋହୂ ହୋଇ ଆସିଲା କାବେରୀ । ସମସ୍ତଙ୍କର ଆଶା—କାବେରୀ ହେବ ମାଲ୍ୟାର ଆଦର୍ଶ । ମାଲ୍ୟା ତା'ଠାରୁ ବୋହୂପଣିଆ ଶିକ୍ଷା କରିବ । କିନ୍ତୁ କାବେରୀ ସେ ମହାକାଳ ଫଳ । ଉପରେ ଉପରେ ପାଣି ତାଳ ଭିତରେ ଚେର କାଟିବା ହେଲା ତାର ମତ । ପୀତାମ୍ବର ବାବୁଙ୍କ ସଂସାର ଉଜୁଡ଼ିଗଲା । ମୋହନ କାବେରୀକୁ ନେଇ ଘର

ଛାଡ଼ି ବାହାରେ ରହିଲା । ଯଥା ସମୟରେ ମାମ୍ବାର ବିବାହ ହୋଇଗଲା । ସମସ୍ତଙ୍କର ଆଶଙ୍କା — ଏ ଉଦ୍ଦଣ୍ଡୀ ଝିଅ ଶାଶୁଘରେ କାହାର ମନ ନେଇ ଚଳିପାରିବ ନାହିଁ । ପୁଣି ମାମ୍ବାର ଯେଉଁ ଶାଶୁ ! ସିଏତ ଜଟିଳାର ଅବତାର ।

କିନ୍ତୁ ଏ କ'ଣ ? ଦିନ କେଇଟାରେ ମାମ୍ବା-ଶାଶୁ କହୁ ବୁଲିଲେ, ଏଭଳି ବୋହୂ କୋଟିକରେ ଗୋଟିଏ ନାହିଁ । ଦିନ ଗଡ଼ି ଚାଲିଛି । ମାମ୍ବା ଶାଶୁ ଅସୁସ୍ଥା ହୋଇ ଶଯ୍ୟା ଧରିଲେ । ପାଖେ ପାଖେ ମାମ୍ବା ! ଗୋଟିଏ ମୁହୂର୍ତ୍ତି ପାଇଁ ସେ ମାମ୍ବାକୁ ପାଖରୁ ଛାଡ଼ୁ ନାହାନ୍ତି । ଏତିକି ବେଳେ ଖବର ଆସିଲା — ପୀତାମ୍ବର ବାବୁଙ୍କ ଅବସ୍ଥା ସଙ୍କଟାପନ୍ନ । କହୁଛନ୍ତି, ମାମ୍ବାକୁ ନ ଦେଖିଲେ ସେ ବଞ୍ଚିବେ ନାହିଁ । ମାମ୍ବା କରିବ କ'ଣ ? କାହାକୁ ପର କରି କାହାକୁ ନିଜର କରିବ ? ଶେଷରେ ଶାଶୁଙ୍କୁ ଛାଡ଼ି ସେ ଯିବାକୁ ପସନ୍ଦ କଲାନାହିଁ ।

* * *

## କେତୋଟି ଅଭୁଲା ଗୀତ *

ଏ'ତ କଳିକାଳ ଘୋର ବିପରୀତ ଯୁଗରେ,
ଆଣୁ ରଣ ଚଣ୍ଡୀ ଘରେ ହାତ ଧରି ବାହା ହୋଇରେ ।
ଶଶୁର ଶାଶୁର ସେବା ସେତ ହେଲା ପାପରେ,
ଦେଖି ରୁ ବାବାଜୀ ସାଜି ହରି ନାମ ଜପରେ ।
ନହେଲେ ରୁ ଠେଙ୍ଗା ଧର
ଆଉ ବାଟ ନାହିଁ ନାହିଁରେ ।୧।
ନିଜ ସୁଖ ପାଇଁ ସେ ଯେ ତୁଚ୍ଛା ମିଛ କଥାରେ
ହାତ ଦେଇ ପାରେ କହୁ ଜଗନ୍ନାଥ ମଥାରେ ।
ବୁଲେ ପୁଣି ସଙ୍ଗ ସାଜି ଛାଡ଼ି ଘର ଯାଇ ଯାଇରେ ।୨।
ଏପରି ଘରଣୀ ଖଣ୍ଡେ ଘରେ ଥିବ ଯାହାର
ତା ଲାଗି ଶାସନ ନୀତି ଦିନରାତି ଯାହାର
ନୀରବର ଠେଙ୍ଗା ଧର ଆଉ ବାଟ ନାହିଁ ନାହିଁରେ । ୩ ।

*

ଜୀବନ ଯମୁନାରେ ଜୁଆର ଉଠେରେ
ନହୁଲୀ ବୟସୀ ସଖୀ ନୀଡ଼ ରଚି ଯାଏ,
ଆବେଶରେ ମଗନ ହେବାର ଲଗନ
ସବୁଜ ସପନ ଯେତେ ଆଜି ରୂପ ପାଏ ।୧।
ରଜାର କୁମର ସାଧବର ଝିଅ
ପରୀ ରାଇଜର ସୁନା ସୂତା ଖିଅ
କୁଆଁରୀ ମନର କାହାଣୀ କଥାର ସବୁଜ ସପନ……।୨।
ଅଜଣା ପୁଲକ ଭରେରେ
ଜଣୋଶୀ ଦୂରୁ ଦୂରୁ ଦୂରୁ ଛୁଉ କରେ ରେ

ଆଖିର ଲୁହରେ ସାଥୀ ମୋ ପାଣରେ—
ସବୁଜ ସପନ...... ।୩।
ସାଥୀ ତା' ଅଜଣା ପଲ୍ଲବସ୍ପର୍ଶ ନୂଆ
ବଧୂ ହୋଇ ହେବ ମନଲକ୍ଷ୍ମି ପ୍ରିୟା
ଯାଣାରେ ଆଣାରେ ମରେ ସେ ଲାଜରେ
ବାସର ସପନ ପୁଣେ ମନ ମଜା ଯାଏ ।୪।

*

ମମତା ମଧୁର ପ୍ରିୟ ଜନ ସ୍ନେହ ପ୍ରୀତ
ତେଜ ପିତା ମାତା କୋଳ ଶଇଶବ ସାଥୀ ।
ସ୍ୱାମୀ ସାଥେ ନେଇ ସତୀ ସିନ୍ଦୂର ମଥାରେ
କଣୋଗ୍ର ବଧୂବେଶେ ଆନ ଗାଏ ଚଲେ ।୧।
ସବୁଜ ବନର ଶୀର ନଈ ଚୋଟା ମାଳ
କୁଆଁର ପ୍ରନେକ୍ତି ପୁଚ ରଜ ଦୋଳ ଖେଳ ।
ଭାସିଯାଏ ମନେ ମନେ ବିଦାୟ ବେଳାରେ
ନୟନେ ନୀର ଧାର ଝରଝର ଝରେ ।୨।
ବାଟ ଘାଟ ପୂଜା ପୀଠ ଦେବତା ମନ୍ଦର,
ସୁନେଲି ସପନେ ଭରା ଦନ ଅତୀତର ।
ସାଥୀକରେ ସବୁ ତେଜ ଯାଏ ଶାଶୁ ଘରେ
ଜୀବନେ ଲୀଳା ଖେଳା ସାର ବାପ ଘରେ ।୩।

*

ଦେଲେ ଧରା କଥା ସରେ, ଥାଏ ମଜା ଦୂରେ ଦୂରେ
ଅଳ ପାଶେ ନାହିଁ ଗଲେ ଫୁଟା ଫୁଲ ଝୁରି ମରେ ।
କରେ ଅଧୀର ଥିର ପବନ, ମନ ଚହଲେ ରଚ ସପନ
ସେଇ ସପନେ ଦଅ ହଜାଇ ଭ୍ରମ କରଣ ମନ ଭଜାଇ,
ତୁମେ ନାହିଁ ସପନରେ ଏକା ସତେ ଦେଖି ଡରେ ।
ଛୁଏ ମରମ; ଯାହା ପରଶେ, ଆସ ଭୁଲାଇ କଥ ହରଷେ,
ଭୁଲ ଲୁହେଁ ସେ ରହେ ଦୂରେଇ
ହୁଏ ମାନିନୀ ନେଲେ ମନାଇ
ଜାଣେ ସେ ଯେ ଆସି ପାଶେ,
ମାନ ଭାଙ୍ଗି ନେବ ତାରେ ।୨।



**ପଞ୍ଚସଖା ପିକ୍‌ଚର୍ସର**

# ନବଜନ୍ମ

**( ୧୯୭୫ )**

**ସଂଗଠନରେ** ✻ କାହାଣୀ ଓ ସଂଳାପ—ଭକ୍ତକିଶୋର ପଟ୍ଟନାୟକ ।
ଗୀତକାର—ସ୍ୱ କାନ୍ତକବି ଲକ୍ଷ୍ମୀକାନ୍ତ ମହାପାତ୍ର, **ନାରାୟଣପ୍ରସାଦ ସିଂ, ନରସିଂହ ମହାପାତ୍ର, ଗଜେନ୍ଦ୍ର ପଟ୍ଟନାୟକ ।**
ସଂଗୀତ—ବାଳକୃଷ୍ଣ ଦାସ ।
ଆଲୋକଚିତ୍ର—ଧୀରେନ୍ ଗୁପ୍ତ ।
ନିର୍ଦ୍ଦେଶନା—ଶଚୀନ ମୁଖାର୍ଜି ।

**ରୂପାୟନରେ** ✻ ଝରଣା, ଗୀତା, ଉର୍ବଶୀ, ଲୀଳା, ମାଧୁରୀ, ମେନକା, କୃଷ୍ଣମଣି, **ଭେଣ୍ଟୁ** ଅକ୍ଷୟ, ଶରତ, ପୀର, ନଟ୍ଟ, ଧୀର, ହିମା, ପାଣ୍ଡେ, ଶରତ **ମହାନ୍ତି,** ଟିଲୁ, କମଳ, ଦୁର୍ଗା, ବ୍ରଜ, **ନରେନ୍ଦ୍ର,** ସୁକୁମାର, ଶଚି, **ବାବାଜୀ,** ବିଶ୍ୱନାଥ, **ପ୍ରଶାନ୍ତ,** କମଲେଶ୍ୱର, ବାଲମ, ବଇଜ, **ବାଞ୍ଛାନିଧି, ପୀତାମ୍ବର,** ହରେକୃଷ୍ଣ, କୃପାସିନ୍ଧୁ, ଗଙ୍ଗାଧର ।

**କାହାଣୀ** ✻ ଇଂଜିନିୟର୍ ଶେଷ ପରୀକ୍ଷା ଦେଇ ରଜନୀ ଫେରିଛି ନିଜ ଗ୍ରାମ **ରାମଗଡ଼କୁ ।** ବାପା ଜଗମୋହନ, ମା' ରୁକ୍ମିଣୀ ଆଉ ଅଲଅଲ ଭଉଣୀ **ନନ୍ଦା ଆନନ୍ଦରେ** ଆତ୍ମହରା ହୋଇପଡ଼ିଛନ୍ତି । କୃତୀ ସନ୍ତାନର ଆଗମନ ଫଳରେ **ସାରାଗ୍ରାମ** ହୋଇଉଠିଛି ଆନନ୍ଦମୁଖର । ରଜନୀର ସ୍ୱାଗତ ସମ୍ବର୍ଦ୍ଧନା ପାଇଁ **ହୋଇଛି** ଯାହାର ଆୟୋଜନ......



['ନବଜନ୍ମ'ରେ ଝରଣା, ଗୀତା, ମେନକା]

କିନ୍ତୁ ଜଗମୋହନଙ୍କ ବାଲ୍ୟସାଥୀ ହରିହର ବସି ବର୍ଷ ଧରି ଯେଉଁ କଳ୍ପନାର ସୌଧ ରଚିଛନ୍ତି, ସେ କଳ୍ପନା ବାସ୍ତବରେ ରୂପ ନେବ ତ ? କନ୍ୟା ସରସୀର ମର୍ମତଳେ ଯେଉଁ ନିବେଦନ କଳି ରୂପରସ ଗନ୍ଧଭରା କୁସୁମରେ ରୂପାୟିତ ହେଉଛି, ସେହି କୁସୁମ ସେ କରିବ ବିଜନର ଚରଣ ତଳେ ନିବେଦନ । ସାର୍ଥକ ହେବ ତାର ଯୌବନର ପ୍ରତୀକ୍ଷା ।

ଘୋଟି ଆସେ ଦୁର୍ଯୋଗର ଘନକୃଷ୍ଣ ମେଘ । ଦୁଇଟି ପରିବାରର ସଯତ୍ନ ଲାଳିତ କଳ୍ପନାକୁ ଧୂଳିସାତ୍ କରି ସରସୀର ମଧୁ ସ୍ୱପ୍ନକୁ ବ୍ୟର୍ଥ କରି ବିଜନର ଜୀବନଆକାଶରେ



[ହିଙ୍ଗଣୀ, ଶରତ]

ଉଦିତ ହୁଏ, ଅଭିଜାତ-ତରୁଣୀ ରମା । ରଙ୍ଗମଞ୍ଚରେ ଦେଖାଦିଅନ୍ତି ଖେଜନ ରସିକ ଅଧ୍ୟାପକ ଦାଶ, ତାଙ୍କର ଶାଳକ ଗୋକୁଳଚନ୍ଦ୍ର, ଶଚିକାନ୍ତ, ଶଙ୍କର ଓ ମଳୟ । କିନ୍ତୁ ରମା ଜୀବନରେ ସ୍ୱାମୀର ଦାବୀଠାରୁ ପୃଥିବୀର ଦାବୀ ବେଶୀ ହୋଇଉଠେ···ପାର୍ଟି, ପିକ୍‌ନିକ୍, ସିନେମା, ଥିଏଟରରେ ସେ ମାତି ଉଠିଥାଏ···ସନ୍ଦେହ, ଈର୍ଷା ଓ ଘୃଣାର ଆବର୍ତ୍ତ ଭିତରେ କେତୋଟି ଜୀବନର ସୁଖଶାନ୍ତି ଯେପରି ନଷ୍ଟ ହିଁ ହୋଇଯିବ ପରି···

କିନ୍ତୁ ଏସବୁ ସମସ୍ୟାର କ'ଣ ସମାଧାନ ନାହିଁ ? ଜୀବନର ଅଗ୍ନି ପରୀକ୍ଷାରେ ରମା କଣ ଉତ୍ତୀର୍ଣ୍ଣ ହୋଇପାରିଲା ? ଅନ୍ତରର ସଙ୍କୀର୍ଣ୍ଣତା ଓ ସ୍ଥୂଳତା ଦୂର ହୋଇ ତା'ର କ'ଣ ହେଲା ନବଜନ୍ମ ? ଆଉ ସରସୀ, ନନ୍ଦା, ଶଚିକାନ୍ତ, ମଳୟ—ଏମାନଙ୍କ ଜୀବନ କ୍ରମଶଃ ସୁନିୟନ୍ତ୍ରିତ ହୋଇଛି । ଶେଷରେ ରମା ଜୀବନ ମଧ୍ୟ ଆଶାନୁରୂପ ସଫଳ ହୋଇଛି ।

❋

**ଗୀତ** •

ମଲ୍ ଉପ ଲୋ, ମା'ଲୋ ମଲ, ଅଫୁଲ୍ ଫୁଲ୍
ତାଲ ଗଛ ମୂଳେ ପାଣେଲ ଚଲ୍ଲ, ଏଇକଥାକୁ
ନାଆ ପେଲ ଦେଲ କଲକତାଇ...
ନୋଖ୍ରି ନାନୀମାନେ ନାଟ କଣଯିବେ
ତାକ୍ ଧିନା ଧିନ୍ ଧିନ
ଛେଲା ଯେତେ ସବୁ ଧାନ ମଲ ଯିବେ
ତାଥେଇ ତାଥେଇ ଥିନ,
ଏଡ଼େ ଚଁପର ଥିଲେ ଏ ଗାଁରେ, ଆମେ ତ ନଥିଲୁ ଜାଣି ।
ତାଲ ପତରରେ ସିପାଇ ସାଜବେ
ଗୋଦସ୍ତି ହୋଇବେ ରାଣୀ ।
କାଚ କାଚ ମଣି ମଣି, କାମ ବେଲେ ଜଣାଜଣି,
ବେଙ୍ଗ ନାନୀ ପାଦେ ଝୁମୁକା କଠଉ
ପଡଲ୍ଲି କମରବାଲ୍ଲି
ଟେର କୁଆ ଯେତେ ଘାଏଲ କଣବେ
ଢରଛୁ ନଜର ଟାଲ
ପାଉଡ଼ର ବୋଲ କାଳୀ ହେବେ ଗୋଷ୍ଠି
ଦେଖିବ ତାଙ୍କର ଠାଣି
ବରଖୋଜା ନାଟ ଛଟକଏ ଯାହା
କଣବେ ଆମେ ତା ଜାଣି



ତୋ' ଖୋଜଲ ଖୋଜଲ ଆଖି
କହ୍ନ ପାରଲ କ ନାହିଁ ଦେଖି
ତତେ ଘାର ଯିଏ ଲୁଚ ଲୁଚ ଆସେ
ତୋ' ମନେ ରହୁଛୁ ଲଖି
ଆଜ ଫେରଛୁ ହୋଇ ସେ ଶୋଷିଲ......
ଦେ' ଉ ଭିଜାଇ ତା' ମନ ମଜାଇ
ସେ ଶୋଷ ଯିବ ମର ଏଇ ନୀର ଚାଖି
ଆଜ ଫେରଛୁ ହୋଇ ସେ ଶୋଷିଲ...
ସେ ସଜ ଖବର ନୁହେଁଟି ସହଜ
କହନ ଶୁଣେ ତୋ ମରମ ମିଜାଜ
ବୁଝି ତୋ' ଅନ୍ତର ତତେ ମୁଁ ନରେଖି
ଆଜ ଫେରଛୁ......

କେ କହେ ପାଏନା ମନର ମଣିଷ
ଖୋଜିଲେ ପାଏ ସେ ହୃଜନ୍ମ ପରଶ
ସତ ମୁଁ ଜାଣିଚ ପରଖି ପରଖି
ଆଜ ଫେରିଛୁ......

❊

ଏ ବନ ସୁନ୍ଦର ମିଳନ ଛନ୍ଦର, ଶିହରି ତନୁମନ ପିଆସି ଏ ଲଗନ
ମରମ କରିଛୁ ଆକୁଳ...ହାସ୍ଯ ।
ଏ ରାତି ସୁନ୍ଦର ବକୁଳ ଗନ୍ଧର,
ମାସ୍ଯାବିନୀ ମନୋରମା ନାହିଁ ଯାର ଉପମା
ସ୍ୱପନେ ହୋଇଛୁ ଅଧୀର......
ଆମର ଅନୁରାଗୀ ହୋଇଛୁ ଫଗୁଣ, ଆମର ଭ୍ରୂଷା ଦେଖି କରିଛୁ ନସ୍ଯନ
ଏ ଦୁନିଆ ଯାହା କହୁ ପାଖେ ଥାଇ ତୁମେ ମୁଁ
ରଚିବା ସ୍ୱପନ ବାସର......
ସବୁଜ ନୀଡ଼ ଆମେ ନିଜନେ ରଚିବା
ମନକୁ ମନ ପାଖେ ହଜାଇ ଖୋଜିବା
ନିତି ନୂଆ ଅଭିସାରେ ଭରି ପ୍ରୀତି ନିଶାରେ
କରିବା ଜୀବନ ମଧୁର ହାସ୍ଯ...!

❊

ସବୁଥିରୁ ବଞ୍ଚିତ କରି, କେଉଁ ଯଶ ବାନା ଉଡ଼ାଇବ ହେ....
ଯାହା ଦେଇଥିଲ ସବୁ ତ ନେଲଣି ଆଉ ଏବେ କିସ ଛଡ଼ାଇବ ହେ...
ଠକ ଠକ ଥରକୁ ଥର, ବୁଝିଲିଣି ତୁମ ଗୁଡର,
ମନେ ପାଞ୍ଚିଛ କି ହାଟ ମଝିଁରେ
ଠିଆ କରି ବାଟ ହୁଡ଼ାଇବ ହେ !
ତୁମ ଫନ୍ଦା ଏଡ଼ିବ ବୋଲି, ସବୁ ଧନ୍ଦା ଦେଲିଣି ଠେଲି
ସୁଖ ବଉଡ଼ି ଯେ କାଟି ସାରଲଣି, କେଉଁ ଫାନ୍ଦେ ତାକୁ ଜଡ଼ାଇବ ହେ ।



ଛାୟାବାଣୀ ପ୍ରତିଷ୍ଠାନର

# ଅଭିନେତ୍ରୀ

(୧୯୬୫)

**ସଂଗଠନରେ ** କାହାଣୀ—କାହ୍ନୁଚରଣ ମହାନ୍ତି
ସଂଳାପ—ଗୋପାଳ ଛୋଟରାୟ
ଚିତ୍ରଗ୍ରହଣ—ଦେଓଜୀ ଭାଇ
ଗୀତରଚନା—ନାରାୟଣ ପ୍ରସାଦ ସିଂ
ସଂଗୀତ—ବାଳକୃଷ୍ଣ ଦାସ
ନୃତ୍ୟନିର୍ଦ୍ଦେଶକ—କେଳୁଚରଣ ମହାପାତ୍ର
ପରିଚାଳକ—ଅମର ଗାଙ୍ଗୁଲି ।

**ରୂପାୟନରେ ** ଝରଣା, ମଣିମାଳା, ପୂର୍ଣ୍ଣିଚନ୍ଦ, ଲକ୍ଷ୍ମୀପ୍ରିୟା, ମୀରା, ମେନା, ଗୀତା, ଲିଲି, ଜ୍ୟୋତ୍ସ୍ନା, ଦେବୀ, ବାବ, ଝମଲ, ଉମାକାନ୍ତ, ରଜନୀକାନ୍ତ, ହୃଦୟ, ନିରଞ୍ଜନ, ସାଗର, ଉଜିର, ଶ୍ୟାମଲେନ୍ଦୁ, ମୂର୍ତ୍ତି, ଗିରୀଶ, ଅମଲ, ନଟବର, କ୍ଷୀରୋଦ, ହରି, ରାଜେନ୍ଦ୍ର, ମନ୍ମଥ ବାବୁ, ମଧୁ ପଣ୍ଡାଇ ।

**କାହାଣୀ **

ସମ୍ବଲପୁର ସହରର ଆଡ଼ଭୋକେଟ୍ ଚନ୍ଦ୍ରଭୂଷଣ ବକ୍ସିଦାର ଓ ତାଙ୍କର ସ୍ତ୍ରୀ ପ୍ରୀତି ଦେବୀ । ନିଃସନ୍ତାନ ସେମାନେ । ସ୍ୱାମୀ ସ୍ତ୍ରୀ ଦୁହିଁଙ୍କର ସ୍ନେହ ଠୁଳ ହୋଇ ଥିଲା ସାନଭାଇ ଶଶିଭୂଷଣ ଉପରେ । ଏମ୍. ଏ. ଛାତ୍ର ଶଶିଭୂଷଣ ଥରେ ତା'ର ବନ୍ଧୁ ଗଗନ, ପଙ୍କଜ ଓ ଆନନ୍ଦଙ୍କ ସାଥିରେ ବୁଲିଗଲେ ସହପାଠୀ ରାଜୀବଙ୍କ ଗାଁକୁ । ରାଜୀବର ବାପା ପୋଲିସ ଇନସ୍ପେକ୍ଟର ସୋମନାଥ ବାବୁ ଛୁଟିନେଇ ଗାଁରେ ଥା'ନ୍ତି—ଆଉ ଥା'ନ୍ତି ରାଜୀବର ବୋଉ ଓ ତା'ର ଦୁଇଭଉଣୀ ମାୟା ଓ ଛାୟା । ଆଶ୍ଚର୍ଯ୍ୟ ସାମଞ୍ଜସ୍ୟ ଏ ଦୁଇ ଭଉଣୀଙ୍କ ଚେହେରାରେ । ଦେଖିଲେ ହଠାତ୍ ଚିହ୍ନି ହେବନା କିଏ ମାୟା—କିଏ ଛାୟା !



['ଅଭିନେତ୍ରୀ'ର ନାୟକ ଉମାକାନ୍ତ]

ଗାଁରେ ବିଧବା ମାୟାକୁ ଦେଖି ଭୁଲେ । କିନ୍ତୁ ମାୟା ଆକୃଷ୍ଟ ହୁଏ ଗଗନ ପ୍ରତି । ସୁପ୍ରୀୟାର ଭୁଲ ବୁଝାମଣା ଯୋଗୁଁ ମାୟାର ବିବାହ ହୁଏ ବିଧୁ ସହିତ । ମାତ୍ର ବିଧାତାର ପରିହାସ—ମଧୁଶଯ୍ୟା ରାତିର ଉଦ୍‌ଯାପନ ପୂର୍ବରୁ ମାୟା ହୁଏ ବିଧବା ।

ଦିନ ବିତିଯାଏ । ଘଟଣାଚକ୍ରେ ମାୟାର ବିବାହ ପ୍ରସ୍ତାବ ପଡ଼େ ଗଗନ ସହିତ । ମାତ୍ର ବିଧବାର ବିବାହ !!! ଏହା କ'ଣ କେବେ ସମ୍ଭବ ? ଶେଷକୁ ସୁପ୍ରୀ ସହିତ ହିଁ ଗଗନର ବିବାହ ସ୍ଥିର ହୁଏ । ବିବାହ ରାତିରେ ଅଘଟଣ ଘଟେ । ସୋମନାଥ ବାବୁଙ୍କ ବିଧବା ଝିଅ ଛାତ ଉପରୁ ଖସିପଡ଼ି ମରେ । କିନ୍ତୁ କିଏ ସେ····? ଏଣେ ବିବାହ ପରେ ଗଗନ ତା' ସ୍ତ୍ରୀ ସହିତ ନୂତନ ସଂସାର କରେ ।



## କେତୋଟି ଅମୂଲ୍ୟ ଗୀତ ☼

ଆମେ ହସିବା ଆମେ ହସାଇ ଯିବା
ଏ ଜୀବନେ ହାରିବାନି
କେବେ କାହେ ଡରିବାନି
ଆମେ ଜିତିବା
ଗୀତ ଗାଇବା, ମନ ଛୁଇଁବା, ମନ ପାଇବା ।
ଲକ୍ଷ୍ୟ ପଥରେ ଆମେରେ ତରୁଣ
ଦୁର୍ବାର ଗତି ବନ୍ଧନ ହୀନ
ଚଞ୍ଚଳ ଆମେ ନଦୀଧାରା ସମ···
ଉପୁରେ ବାରେବାରେ ମରିବାନି କେବେ ଝଡ଼ ସହିବା—
ଊର୍ମି ମୁଖର ଆମରି କବିତା
ଦେବ ସେ ନୂତନ ଯୁଗର ବାରତା
ବୁକୁରେ ଆମର ସୃଜନୀ ମମତା···
କହିବା ମଧୁଭାଷା, ମନେମନେ ଆଶାଦୀପ ଜାଳିବା...



ଆହା ରୁହନା...ରହି ଯାଅନା···
ଆହେ ମଜନୁ ତମ ଲଇଲାର ନାଁ କୁହନା···
ତାର ଗୋଲାପି ଗୋଠର ନାଲି
ତମ ଅଧରେ ହୋଇଛି ବୋଳି

ମୁହେଁ ଲାଗିଛି କଜଳ କାଳି
ଆହା—ସଂଗରେ ଯାଅନା ଚାଲି,
ଆହେ ମଜନୁ... ନିଜ ରୂପ ଦେଖି ନେଇ ଅଇନା ।
କେଉଁ ଚନ୍ଦ୍ରବଦନୀ ଗୋରି
ତମ ମନ କରିନେଲା ଚୋରି
ହେଲେ ଭାଗ୍ୟଟା ଭଲ ଭାରି
ଆଜ ମରୁଛ ତାହାରି ଝୁରି
ସଖା ମଜନୁ—ଶେଷେ ହେଲ ତମେ ହିବାନା...

❊

ଅନେକ ଦିନ ପରେ ସେଦିନ ଆସେ
ଯେ ଦିନର ନାମଶୁଣେ ମିଳନ,
ଅନେକ ବ୍ୟଥା ପରେ ଆଜ ମୁଁ ହସେ
ଯେ ହସରେ ଭରା ମଧୁସ୍ୱପନ ।
ଅନେକ ଛନ୍ଦ ଆଉ ଅନେକ ସୁର
ଆପଣା ହୋଇ ଆସେ ଥିଲେ ଯେ ଦୂର
ଏକାକୀ ମନଆଜ ପାଇଛି ହଜି
ସାଥୀ ସପନେ ହୋଇ ମଗନ ।
କନକ ଚମ୍ପା ମନେ ମମତା ଜାଗେ
କୋମଳ ଆଶାବଲ୍ଲୀ ପରଶ ମାଗେ,
ପ୍ରଥମ କରି ଆସେ ଅବୁଝା ମନ,
ସବୁଜ ହେବାର ଏଇ ଲଗନ...



ଶ୍ରୀଫିଲ୍ମ୍ସ୍‌ର

# ମଲ୍ଲୀଜହ୍ନ

## ( ୧୯୭୫ )

**ସଂଗଠନରେ** ❊ କାହାଣୀ—ଉପେନ୍ଦ୍ରକିଶୋର ଦାସ
ସଳାପ—ଗୋବିନ୍ଦଚନ୍ଦ୍ର ସେନାପତି ଓ ଖ୍ରାମ ସିଂହ ।
ଗୀତରଚନା—ଁ କବିସୂର୍ଯ୍ୟ, ଁ ବନମାଳୀ, ଶ୍ରୀ ବୈକୁଣ୍ଠନାଥ
ବ୍ରହ୍ମତ୍ରିପାଠୀ, ବିନୋଦିନୀ ଦେବୀ ।
ନୃତ୍ୟ—କେଳୁଚରଣ ମହାପାତ୍ର ।
ସଂଗୀତ—ଅକ୍ଷୟ ମହାନ୍ତି ।
ଚିତ୍ରନାଟ୍ୟ ଓ ନିର୍ଦ୍ଦେଶନା—ନିତାଇ ପାଲିତ ।

**ରୂପାୟନରେ** ❊ ଝରଣା, ଗୀତା, ମଣିମାଳା, ଲକ୍ଷ୍ମୀ, ରୁକ୍ମିଣୀ, କୃଷ୍ଣମଣି,
ବାସନ୍ତୀ, ମେନା, ବିନୋଦିନୀ, ମାମାଁ, ଅର୍ଚ୍ଚନା, ଗୀତା ମହାନ୍ତି,
ଅକ୍ଷୟ, ଶରତ, ପ୍ରେମାନନ୍ଦ, ଖ୍ରାମ ସିଂହ, ଗୀର, ପ୍ରଶାନ୍ତି ସିଂହ,
ମୋହନ, ଶୁକ୍ଳ, ଶିବୁ, ରବିଗସ୍ପ, ବାବାଜୀ, ବିଶ୍ୱନାଥ ଗୁପ୍ତ,
ବିଷ୍ଣୁ, ବାବୁଲା, ହରି ଓ ଚନ୍ଦ୍ର ।

**କାହାଣୀ** ❊

କୁଳୀନ ବ୍ରାହ୍ମଣ ଘରର ଝିଅ ସତୀ···ଶାନ୍ତ, ସରଳ ଗ୍ରାମ୍ୟ-ପରିବେଶ ଭିତରେ ପିଲାଦିନର ସାଥୀ ନାଥ ନନା ସହ ତାର ଗଢ଼ିଉଠିଥିଲା ନିବିଡ଼ ପ୍ରଣୟ···କିନ୍ତୁ ସେ ପ୍ରଣୟକୁ ପ୍ରକାଶ୍ୟରେ କେବେ ସେ ଉନ୍ମୋଚିତ କରି ନଥିଲା । ତା' ମନର ଅନ୍ଧାରିଆ ଗିରିକନ୍ଦରରେ ନାଥ ନନା ପବିତ୍ର ଦୀପାଲୋକ ଭଳି କେବଳ ଆଲୋକ ବିକୀରଣ କରୁଥିଲେ ।

ସେ କାଳର ପ୍ରଥାଅନୁସାରେ କିଶୋରୀ ବୟସରେ ସତୀର ବାପା ତାର ବିବାହ ସ୍ଥିର କଲେ । ବର ତାର ନାଥ ନନା ନୁହନ୍ତି ।—ଗୋଟିଏ ସନ୍ତାନର ଜନକ, ବିପତ୍ନୀକ ଜମିଦାର ନରହରି ମିଶ୍ର । ନାଥ ନନା ଗରିବ···ପାଠପଢ଼ା ଶେଷକରି ବୃତ୍ତିହୀନ କଳନାହାନ୍ତି । ତେଣୁ ସତୀର ବାପା ନିଜ ସ୍ତ୍ରୀ ଓ କନ୍ୟାଙ୍କ ଇଚ୍ଛାବିରୁଦ୍ଧରେ ଜମିଦାର ଜାମାତାଙ୍କୁ ହିଁ ବରଣ କରିନେଲେ । ନାଥନନା ରହିଗଲେ ସତୀ ଜୀବନର ନେପଥ୍ୟରେ...

ସଞ୍ଜାର ସ୍ୱାମୀ ନରହରି ମିଶ୍ରଙ୍କର ଧନଥିଲା, ନଥିଲା କେବଳ ମନ, ବୟସ । ଘରେ ତାଙ୍କର ରକ୍ଷିତା ସ୍ତ୍ରୀ ସଉତୁଣୀ, ଶିଶୁ ପୁଅ । ସ୍ୱାମୀଙ୍କ ବଦଳରେ ସପତ୍ନୀ ପୁଅକୁ ନେଇ ସଞ୍ଜା ବଞ୍ଚିଲା ନିଜଜୀବନର ବ୍ୟର୍ଥତାକୁ ଭୁଲିବା ପାଇଁ ।



[ଅଭିନେତ୍ରୀ ଝରଣା]

କିନ୍ତୁ ତାହାମଧ୍ୟ ହେଲାନାହିଁ । ତୀର୍ଥ ଦର୍ଶନରେ ଯାଇଥିବା ବେଳେ ପ୍ରବଳ ଝଡ଼ ଯୋଗୁଁ ନିଜ ସ୍ୱାମୀଙ୍କଠାରୁ ବିଚ୍ଛିନ୍ନ ହୋଇଗଲା ସଞ୍ଜା । ସଜଳ ଝଡ଼ବାତରେ ସ୍ୱାମୀଙ୍କ ବଦଳରେ ସେ ଭେଟିଲା ନାଥନନାଙ୍କୁ···ଯେ ସଞ୍ଜା ତୀର୍ଥସ୍ଥାନକୁ ଆସୁଥିବାର ସମ୍ବାଦ ପାଇ ସେଠାକୁ ଆସିଥିଲା ! ତା' ଆରଦିନ ନାଥନନା ସଞ୍ଜାକୁ ନେଇ ନରହରି ମିଶ୍ରଙ୍କ ଘରକୁ ଗଲା···କିନ୍ତୁ ନିଜ ସ୍ତ୍ରୀର ଚରିତ୍ରକୁ ସନ୍ଦେହକରି ମିଶ୍ରେ ତାକୁ ଘରେ ସ୍ଥାନ ଦେଲେ ନାହିଁ ।

ବିଡ଼ମ୍ବିତ ଭାଗ୍ୟନେଇ ଘଟଣାକ୍ରମେ ସଞ୍ଜୁ ତାର ନାଥନନାଙ୍କ ସହ ଆଶ୍ରୟ ପାଇଁ ଗାଁକୁ ଫେରିଆସିଲା । କିନ୍ତୁ ଗ୍ରାମରେ ତା'ର ସ୍ଥାନ କାହିଁ ? ରକ୍ଷଣଶୀଳ ଶାସନ ବ୍ରାହ୍ମଣକୁଳ ସଞ୍ଜୁଲାଗି ନାଥକୁକଲେ ନିଆଁ, ପାଣି ଅଟକ । ସଞ୍ଜୁକୁ ତ୍ୟାଗ ନକଲେ ସମାଜରେ ତାର ସ୍ଥାନ କାହିଁ ?

ନାଥନନାଙ୍କ କର୍ତ୍ତବ୍ୟନିଷ୍ଠା, ନିଃସ୍ୱାର୍ଥପର, ପବିତ୍ର ପ୍ରଣୟର ଋଣଶୋଧ ପାଇଁ ସଞ୍ଜୁ ନେଲା ଏକ ନିଷ୍ଠୁର ନିଷ୍ପତ୍ତି··· ଆଗରେ ଉତ୍କୂଳ ନଦୀର ଜଳ···ଖଣ୍ଡବଣରେ ନାଥର ବାଟ ହଜିଗଲା···କିନ୍ତୁ ସେ ମରି-ପାରିନ । ନାଥନନା ସହ ପୁଣି ତାର ସାକ୍ଷାତ ହୋଇଛି ।

❊

## କୋଚୋଟି ଗୀତ ❊

ଭୁଛାକୁ ମହୁ, ଗୁଡ଼ ପଡ଼ିଲେ କି ରହିବ ଆଉ
ସରୁ ଓଢଣାରେ କଣେଇ ଚାହାଣୀ ସୁନ୍ଦର ମାନବ ସାଜିଲେ ବୋହୂ···
ଝୁଣ୍ଟିଆକୁ ଚୂଡ଼ୀ ଝୁମର ଝୁମର
ଉଚ୍ଛୁଳପଡ଼ିବ ଘର
ମନ ମାନସିକ ପାଇଲୁ ଏଥର
ଚନ୍ଦ୍ରଉଦିଆ ବର...
କଥା ଶୁଣୁଶୁଣୁ ନାଲି ପଡ଼ିଲୁଣି ଗୁମ୍ଫଚଳେ ସତେ ଲାଗିଲା ଗୁଳି । ୧ ।
ଭାତ ଫୁଟୁଥିବ ଠକର ଠକର ପିଞ୍ଚ ପଡ଼ୁଥିବ ଢେଇଁ
ଜାନୁଜାନୁ ଚୂଲି ଭୁଲି ତୁ ଜାଳିବୁ କାନ ଆନମନା ହୋଇ
ନୂଆ ଘରଣୀ ତ ମନଉଛାଟିଆ ଅଳପ ଅଳପ ଉଚ୍ଛୁର ହଉ । ୨ ।
ମନାସୁଥିଲୁ ଯା' ପାଇଲୁ ସତେ କି ଗୁହିଁଥିଲୁ ଯା'ର ବାଟ
ପାସୋରିବୁ ନାହିଁ ମନରୁ ମତେ ତୁ ପିନ୍ଧିଲେ ବଉଳ ପାଟ
ଆ ସାଜବଏଁ ମଥାରେ ସିନ୍ଦୂର ଗୃନ୍ଦକଳା ଶିଖି ସେବକ ଥାଉ । ୩ ।

★

ମୋ' ନାଁ ଟି ମୋ ନାଁ ଟି
ଜନମ କାଳେ ଏକୁଡ଼ ଶାଳେ
ମାଆ ଦେଇଥିଲେ କୁଆଁ ଖ ଶଣୀ
ଅଳଅଳ ଜେମା ସୁନା ପ୍ରତିମା ଆଉ
ପାହାନ୍ତ ପହର କୁଆଁ ତାରଟି । ୧ ।

ମୋ' ନାଁ ଟି ମୋ' ନାଁ ଟି
ଆଦର କର ସେନେହ ଭର
ବାପା ଦେଲେ ସୀତା ଗୀତା ଗାୟତ୍ରୀ
ସତୀ ସାବିତ୍ରୀ ସୁଗୁଣବତୀ ଆଉ
ଯୋଜନଗନ୍ଧା କନକଗାତ୍ରୀ ।୨।

ମୋ' ନାଁ ଟି ମୋ' ନାଁ ଟି
ଝିଅ ହସରେ ପରିହାସରେ
ଜେଜେ ଦେଇଥିଲେ ବୁଲି ବାଉଣ୍ଡି
କୁନ୍ଦ ମରୁଆ ମୋ ଗୁଞ୍ଜି ଫରୁଆ ଆଉ
ଯୁବା ମନଭୁଲା ରସିକା ଟୋକୀ ।୩।



ଗଳ୍ପଣି ତ ଗଳ୍ପ କଥାରେ ସଙ୍ଗାତ
ଗୁପତେ ସିନା ମୁଁ ତୋତେ ପଚାରିଲି ବଳପଡ଼ିବାରୁ ବ୍ୟଥା...
ଗଂଗାରୁ ବିଷଦ ଗମ୍ଭୀର ତୋ ହୃଦ
ଗଣ୍ଠିଧନ ତୋ'ର ସ୍ନେହ
ଗୋଡ଼ ଖସି ଖେଦ ହେବାର ଦରଦ ସିବାର ଉପାୟ କହ ।
ଗଗନ କୁସୁମ ପରି ଏଥି ଶ୍ରମ
ଫଳ ହୋଇବ କି କାଳେ
ଗୋଳିଆ ନ ରଖି କହ ଚନ୍ଦ୍ରମୁଖୀ ଗହଳ ନ ଥିବାବେଳେ ।



## ପାର୍ବତୀ ଘୋଷ ପ୍ରଯୋଜିତ ⁂

# କା

## ( ୧୯୭୬ )

**ସଙ୍ଗଠନରେ** ⁂ କାହାଣୀ—କାହ୍ନୁଚରଣ ମହାନ୍ତି ।
ଆଲୋକଚିତ୍ର—ଦେଓଜୀ ଭାଇ, ବିଜୟ ଦେ ।
ସଙ୍ଗୀତ ରଚନା—ସାରଦାପ୍ରସନ୍ନ ନାୟକ, ଦେବଦାସ, ନରସିଂହ ।
ନୃତ୍ୟ ନିର୍ଦ୍ଦେଶକ—ମାୟାଧର ରାଉତ
ସଙ୍ଗୀତ—ଶ୍ରୀକୁମାର
ଚିତ୍ରନାଟ୍ୟ, ସଂଳାପ ଓ ନିର୍ଦ୍ଦେଶନା—ସିଦ୍ଧାର୍ଥ ।

**ରୂପାୟନରେ** ⁂ ଗୌର, ଚନ୍ଦନା, ଗୀତା, ମଣିମାଳା, କୁମୁଦ, ପୂର୍ଣ୍ଣଚନ୍ଦ୍ର, ସରୋଜିନୀ, ମେନା, ରୁକ୍ମଣୀ, କୃଷ୍ଣା, ପାଟ୍ଟଲ, ପୂର୍ଣ୍ଣିମା, ଶରତ, ବ୍ୟୋମକେଶ, ପାଣ୍ଡେ, କୁଞ୍ଜ, ସୁଧାଂଶୁ, ସୁବାସ, ସ୍ୱରୂପ, ଦାସ, ନୂର ମହମ୍ମଦ, ରାଜୁ, ବାବାଜୀ, ଦିଗମ୍ବର, ନିରଞ୍ଜନ, ଗୋକୁଳ, ହିମାଂଶୁ, ସାରଙ୍ଗ, ନୃସିଂହ, ରଘୁ, ସୁରେନ୍, ଶ୍ରୀବତ୍ସ, ଅଶୋକ, ମାୟାଧର ।
ଶିଶୁଶିଳ୍ପୀ—ରମି ଓ ଲଲିତା ।

**କାହାଣୀ** ⁂

ସାତବର୍ଷ ବିତିଗଲା; କିନ୍ତୁ ନନ୍ଦିନୀର କୋଳ ସେମିତି ଶୂନ୍ୟ ରହିଲା । ଶାଶୁ ଅଭୟା, ସ୍ୱାମୀ ସୁନନ୍ଦ, ଲେଖାରେ ନଣନ୍ଦ କିନ, କାହାରି ସ୍ନେହର ଅଭାବ ନାହିଁ । ଅଭାବ କେବଳ ସନ୍ତାନଟିଏ···ଦିନେ ଅଭୟା ଏ ପ୍ରସଙ୍ଗରେ ପଦେ ବାହାରୁ ଶୁଣିଲେ । ଆଖିରୁ ଅଶ୍ରୁ ଝରାଇ ଭାବିଲେ—ତା'ହେଲେ ଏ ବଂଶ କ'ଣ ନିର୍ବଂଶ ହୋଇଯିବ ? ଏ ଦୁଃଖ, ଏ ଲଜ୍ଜା ନନ୍ଦିନୀ ଦେଖିଲା···ଯନ୍ତ୍ରଣାରେ ତା' ପ୍ରାଣ ଭିତରଟା କ'ଣ ହୋଇଗଲା । ସ୍ୱାମୀ ସୁନନ୍ଦ ଆଗରେ ସେ ମିନତି କଲା ଆଉଗୋଟିଏ ବିବାହ କରିବାକୁ । ଅସମ୍ଭବ—ସୁନନ୍ଦର ଉତ୍ତର ଥିଲା । ସୁନନ୍ଦ ନନ୍ଦିନୀକୁ ନେଇଗଲା ସହରକୁ ଡାକ୍ତର ଦେଖାଇବାକୁ । ଡାକ୍ତର ଦେଖିଲେ । ଚୁପ୍‌କରି ସୁନନ୍ଦକୁ କହିଲେ—ଆଶା ନାହିଁ···

ସୁନନ୍ଦ ଏ କଥା ଲୁଗୁଇବାକୁ ଚେଷ୍ଟାକରି ମଧ୍ୟ ପାରିଲେ ନାହିଁ । କଥାଟା ପ୍ରଘଟ ହୋଇଗଲା । ଅଭୟା ଜାଣିଲେ । ନନ୍ଦକା ଜାଣିଲା । ଅଭୟାଙ୍କ ଆଗରେ ସେ ପ୍ରସ୍ତାବ ବାଢ଼ିଲା—ଆଉ ଗୋଟିଏ ବୋହୂ ସେ କରନ୍ତୁ । ଅଭୟା କିଛି ଆପତ୍ତି ନକରି ସେ ପ୍ରସ୍ତାବରେ ହଁ ଭରିଲେ । ନନ୍ଦକା ଆଶ୍ଚର୍ଯ୍ୟ ହୋଇଗଲା । ମନକୁ ତାର ବାଧିଲା···ଭାବିଲା—ସଂସାରଟା ତା' ହେଲେ ଏଇଆ, ଏମିତି ସ୍ୱାର୍ଥପର—

ଭାବପ୍ରବଣତାର ସେଇ ଉଚ୍ଛ୍ୱାସରେ ସୁନନ୍ଦକୁ ସେ ରାଜି କରାଇ ଦେଲା । ବିଭାଘର ହୋଇଗଲା । ଦ୍ୱିତୀୟ ସ୍ତ୍ରୀ ଲଳିତାକୁ ଅତି ଆଦରରେ ଚଳେଇ ନେଲା ନନ୍ଦକା । ଅଭୟା ଅନୁତାପ କଲେ । ସେଥିପାଇଁ ମୂଳରୁ ଲଳିତାକୁ ସେ ବିଶେଷ ଭଲ ପାଇପାରିଲେ ନାହିଁ । ନନ୍ଦକାର ତ୍ୟାଗଦେଖି



( 'କା' ଚରିତ୍ରରେ ଗୀତା )

ସାଇପଡ଼ଶା ଗାଁ ଗଣ୍ଡାର ଲୋକମାନେ ବିସ୍ମିତ ହେଲେ । ମୁଖରେ ଦନ-ଗୁଡ଼ିକ ବିତିଲା । ନନ୍ଦକା ହେଲା ଲଳିତାର ସା'; ଆଉ ଲଳିତା ହେଲା ନନ୍ଦକାର କା'··· ହଠାତ୍ ଏକ ଅଘଟଣ ଘଟିଲା ।

ଜଣାପଡ଼ିଲା ନନ୍ଦକାର ପିଲାପିଲି ହେବ··· ଅଭୟା, ସୁନନ୍ଦ, କନ ଆନନ୍ଦରେ କୁରୁକି ଉଠିଲେ । ଲଳିତା ବି ଖୁସି ହେଲା, କିନ୍ତୁ ତା' ମନରେ କେଉଁଠି ଟିକିଏ କୁଣ୍ଠା ରହିଗଲା । ଏଣିକି ଅଭୟା ତାକୁ ପ୍ରାୟ ହତାଦର କଲାପରି ବ୍ୟବହାର କଲେ । ଲଳିତା ସହିପାରିଲା ନାହିଁ । ସେ ପ୍ରତିବାଦ କଲା । ପ୍ରତିବାଦ ଫଳରେ କଳିକଜିଆ ଓ ଅଶାନ୍ତି

ଉପୁଜିଲା । ଏଇ ଅଶାନ୍ତକୁ ନିର୍ବାପିତ କରିବାପାଇଁ ନନ୍ଦିକା ଲଳିତାକୁ ପଠେଇଦେଲେ କିଛିଦିନ ପାଇଁ ସହରକୁ ସୁନନ୍ଦ ସାଙ୍ଗରେ । ସହରକୁ ଆସି ଲଳିତା ପ୍ରତିହିଂସା ପରାୟଣା ହୋଇଉଠିଲା ।

ଏଣେ ସୁନନ୍ଦର ବ୍ୟବସାୟରେ ଏକ ଅପୂରଣୀୟ କ୍ଷତି ଘଟିଲା । ଏ ସୁଯୋଗରେ ସୁନନ୍ଦର ଜଣେ ବନ୍ଧୁ ଅତନୁ, ଲଳିତା ସଙ୍ଗରେ ଖୁବ ବନ୍ଧୁତ୍ୱ ସ୍ଥାପନକଲେ ଏବଂ ସେମାନଙ୍କ ମିଳାମିଶା ଚାଲିଲା ଅବାଧଗତିରେ । ସୁନନ୍ଦର ଅନୁପସ୍ଥିତିରେ ଲଳିତା ବେଶୀ ଉଚ୍ଛୃଙ୍ଖଳ ହୋଇପଡ଼ିଲା ଏବଂ ଶେଷରେ ସେ ଜୀବନରେ ମସ୍ତବଡ଼ ଧକ୍‌କା ଖାଇ ଅନୁତାପ କଲା ।

ସୁନନ୍ଦର ଅନୁପସ୍ଥିତିରେ ନନ୍ଦିକାର ପୁଅଟିଏ ହେଲା । ସମସ୍ତେ ଆନନ୍ଦରେ ଅଧୀର ହେଲେ । ନନ୍ଦିକା ଲଳିତା ହାତରେ ପୁଅଟିକୁ ଟେକି ଦେଲା ।

**କେତୋଟି ମନ ଭୁଲାଣିଆ ଗୀତ** ※

ତୁମେ ଜାଣନା ଜାଣନା ମୁଁ ଜାଣେନା
କେମିତି ଏତେ ସପନ
ତୁମ ଆଖିରେ ଆଖିରେ ମୋ' ଆଖିରେ
ଥିଲା ଗୋ ହୋଇ ମଗନ ।
ଏ ସାରା ଜୀବନେ ପନ୍ଥ ମିଳେ ତୁମ ପାଇଁ
ମୋ' ଲାଗି ସରଗ ହେବ ଏଇ ବନଭୂଇଁ
ତୁମ ପୀରତିର ସତେ ନାହିଁ ଗୋ ତୁଳନା···
ତୁମେ ଜାଣନା ଜାଣନା ମୁଁ ଜାଣେନା
କେମିତି ଏଇ ପବନ
ତୁମ ଗୀତରେ ଗୀତରେ ମୋ' ଗୀତରେ
ଜଗାଏ ନୂଆ ଜୀବନ । ୧ ।
ସରମ ସରମ ତୁମ ଆଖି କଥା କହେ
ନରମ ନରମ ହସେ ଫୁଲ ଫୁଟିଯାଏ
ମୁଁ ହେବ ତୁମଲାଗି ନିଶୀଥ ଜୋଛନା···
ତୁମେ ଜାଣନା ଜାଣନା ମୁଁ ଜାଣେନା
କେମିତି ଏଇ ଲଗନ
ଆଜ କୁହନା କୁହନା ତୁମେ କୁହନା
ମଧୁର ଆମ ମିଳନ···



ଲିଭ ଲିଭ ଯାଏ ଆଖି ଲୁହ ଧାର
କାନ୍ଦ କାନ୍ଦ ମରେ ସାହା ନାହିଁ ମୋର···
ମୋ' ଜୀବନେ ମୋ' ସପନେ ଆସିଛି ଅନ୍ଧାର
ମୋ' କରମେ ମୋ' ମରମେ କେତେ ହାହାକାର
(କୁହ) ସାହା କିଏ ମୋର ?··· ।୧।
ଲିଭ ଲିଭ···

ହେ ଆକାଶ ହେ ବତାସ
ଶୁଣ ମୋର କଥା
ହେ ଦେବତା ହେ ପାଷାଣ
ବୁଝିଲନ ବ୍ୟଥା
(କୁହ) ସାହା ନାହିଁ ମୋର ?··· ।୨।
ଲିଭ ଲିଭ ଯାଏ···

❋

ମଉନାବତୀ ମଉନ କିଆଁ ଲଗାଇ ଦେଲ ମନରେ ନିଆଁ
ଆଜ ଜନାନା ଜଳଗଲା, ମୁଁ ସରଗ ପରୀ ।
ହେଲିଣି ଏତେ ସତ, ସୁନ୍ଦରୀ, ମୁଁ ଝୁରିଝୁରି ।
ଘୁଙ୍ଗୁରଆଡ଼େ ପଡ଼େ ଦୂର, ତୁମେ ଗଜଗାମିନୀ
ତୁମ ସରୁ ସରୁ ପାଦେ କମ୍ପି ଉଠେ ମେଦିନୀ ।
ହସି ହସି ଗଦଗଦ କରିଦେଲ ମୋତେ ଗଧ
ଚନ୍ଦ୍ରପାଗଳ ଗୋ, ସରୁ ଚକୁଳି ଗୋ ।
ଖେଳାଅ ମୋତେ ଚକା ଭଉଁରୀ···ହାୟ···
ହେଲିଣି ଏତେ···

ଜୀବନରେ ଦିଅ ମୋର ସେନେହ ପୀରତି ଭରି
ଉଦ୍ଧାର କର ହେ ମୋତେ ଶ୍ରୀହରି ହେ
ହେଲଣି ଏତେ···

ଆକାଶର କଇଁଆ ଚନ୍ଦ୍ରକାର ମାଛ ପରି
ଉବୁଟୁବୁ ହୁଏ ମୁହିଁ ତୁମ ପ୍ରେମ ବନ୍ୟାରେ
ଯିବ କି ତୁମକୁ ମୁଁ ପାଶୋରି···ହାୟ···



ମଧୁର ସ୍ୱପ୍ନ ସ୍ମୃତ ହସେ ତାରା ଗଗନେ
ଉଚ୍ଛୁଳେ ଯମୁନା ସ୍ମୃତି ମିଳନର ଲଗନେ
ଯାଅନା···କାହ୍ନୁ, ଯାଅନା···

ବେଣୁ ତାନେ ମାତି ଝୁରି
ମାର ଆଡ଼ ନୟନ
ଲୁଚ ଖେଳ ଲୁଚୁକାଳି
ଜାଳଦେଲ ପରାଣ
ଅଭିମାନ ମାନିନୀ ମୁଁ
ପୀରତିରେ ମଗନ ମୁଁ
ଯାଅନା··· କାହ୍ନୁ ଯାଅନା—

ଅଙ୍ଗେ ଅଙ୍ଗେ ଉଜାଗର
ମଧୁବନ ଜୁଆର
ନଅ ତୋଳ ନଅ ପାଶେ
ଆତୁରେ ମୁଁ କାତର
ବଢିଯାଏ ହୃଦଗତି
କୋଳେ ତୋଳ ନଅନା···
ଯାଅନା···କାହ୍ନୁ ଯାଅନା···।



## ଭାଇ ଭାଉଜ

( ୧୯୬୭ )

**ସଂଗଠନରେ** * କାହାଣୀ ଓ ସଂଳାପ—ରାମଚନ୍ଦ୍ର ମିଶ୍ର ।
ସଂଗୀତ—ବାଳକୃଷ୍ଣ ଦାଶ ।
ଗୀତ ରଚନା—ନାରାୟଣପ୍ରସାଦ ସିଂ ।
ଆବହ ସଂଗୀତ ଓ ଅର୍କେଷ୍ଟ୍ରା—ଭି· ବାଲ୍‌ସାରା ।
ଚିତ୍ରଗ୍ରହଣ—ଦେଓଜୀ ଭାଇ ।
ଚିତ୍ରନାଟ୍ୟ ଓ ପରିଚାଳନା—ସାରଥି ।

**ରୂପାୟନରେ** * ମଣିମାଳା, ପ୍ରଶାନ୍ତ, ମେନା, ବିନୋଦିନୀ, କୃଷ୍ଣା, ମୀରା, ବୀଣା, ବିନ୍ଦୁ, ସୁନ୍ଦରମଣି, ବାବି, ବ୍ୟୋମକେଶ, ପ୍ରଭଦାସ, ପୂର୍ଣ୍ଣି, ଶରତ, ପାଣ୍ଡେ, ବାବାଜୀ, ଉଦୟ, ଷିବେଦ, ପ୍ରଭାକର, ବଳରାମ ।
କିଶୋରଶିଳ୍ପୀ—ପ୍ରମିଳା, ଜୟଦେବ ଓ ରତ୍ନା ।
ରାଜକିଶୋର ରାୟ (ଅତିଥି ଶିଳ୍ପୀ)

**କାହାଣୀ** *

ଦୁଃଖୀ···ସେ କ'ଣ ଜନମ ଦୁଃଖିନୀ ? ନା···ଗୋଟିଏ ଗୃହଳରେ ଗଢ଼ା ତାର ରୂପ । ସେଇ ଅଟୋଳ ଯୌବନ ହେଲା ତାର କାଳ ।



( 'ଭାଇ ଭାଉଜ'ରେ ରାଜକିଶୋର ରାୟ, ଶରତ ପୂଜାରୀ )

କୁଚକ୍ରୀ ଧନା ସାଉକାରର ପୋଷାପୁଅ ଯୋଗୀର ଲୋଭିଲା ଆଖି ପଡ଼ିଲା ଦୁଃଖୀ ଉପରେ । ଗାଁର ଭଣ୍ଡାରି ଅଇଁଠାର ପରାମର୍ଶରେ ଯୋଗୀ ଦିନେ ଆକ୍ରମଣ କଲା ଦୁଃଖୀକୁ । ମାତ୍ର ଯୋଗୀର ପ୍ରତିବନ୍ଧକ ହୋଇ ଛିଡ଼ାହେଲେ ନର୍ତ୍ତକ ଦୁଇ ଭାଇ—ମନ୍ତ୍ରୀ ଓ ଭାଇଗ । ଯୋଗୀ ଅପମାନିତ, ଲାଞ୍ଛିତ ହୋଇ ମନେ ମନେ ଜଳିବାକୁ ଲାଗିଲା ।



( 'ଭାଇ ଭାଉଜରେ' ବ୍ୟୋମକେଶ, ପୂର୍ଣ୍ଣି, ବାବ )

ମନ୍ତ୍ରୀ ଓ ଭାଇଗ ଧନା ସାଉକାର ପାଖରେ ଟିପ ମଡ଼େଇ ଟଙ୍କା କରଜ କଲେ । ମନ୍ତ୍ରୀ ଦୁଃଖୀକୁ ବୋହୂକରି ଘରକୁ ନେଲା । ଯୋଗୀର ଜ୍ୱାଳା ବଢ଼ି ଉଠିଲା । ଭାଇଗ ଭାଇ-ଭାଉଜଙ୍କୁ ଦେଖି ଆନନ୍ଦରେ କୁରୁଳି ଉଠିଲା ।

ପୋଷାପୁଅ ଯୋଗୀର ଅପମାନର ପ୍ରତିଶୋଧ ନେବା ଛଳରେ ଦିନେ ଧନା ସାଉକାର ମନ୍ତ୍ରୀର ଜମି ଖଣ୍ଡିକ ଦଖଲ ନେବାକୁ ଆସିଲା ବିଲ ଉପରକୁ । ଚଷା ପୁଅ ତାର ମାଟିକୁ ମା'ଠୁ ବଳି ଭଲପାଏ । ମନ୍ତ୍ରୀ ଏକୁଟିଆ ଠେଙ୍ଗା ଧରି ଛିଡ଼ାହେଲା ବିଲଉପରେ । ହଠାତ୍ ଧନା ସାଉକାର ମୁଣ୍ଡରେ ପଡ଼ିଲା ନିର୍ଘାତ ଠେଙ୍ଗା ପାହାର । ସେ ଢଳିପଡ଼ିଲା । କିନ୍ତୁ···ହତ୍ୟାକାରୀ କିଏ ?

ମନ୍ତ୍ରୀ ପଧାନ ନରହତ୍ୟା ଅପରାଧରେ ଦଶବର୍ଷ ଜେଲ ଗଲା । ଯୋଗୀ ସାଉକାର ଏତେଦିନେ ପାଇଲା ସୁଯୋଗ । ସେତେବେଳକୁ ଦୁଃଖୀ ଗାଁରେ ଏକୁଟିଆ—ଅନ୍ତଃସତ୍ତ୍ୱା । ଯୋଗୀ ଅନେକ ଉଦ୍ୟମ କରିଛି ତାର ସତୀତ୍ୱ ନଷ୍ଟ କରିବା ପାଇଁ । କିନ୍ତୁ ଭାଇଗ ଯୋଗୁଁ ସେ ପାରିନି । ମନ୍ତ୍ରୀ ପୁଣି ଫେରିଛି ଦଶବର୍ଷ ପରେ । ଦୁଃଖୀ ଆନନ୍ଦରେ ବିଭୋର ହୋଇପଡ଼ିଛି ।

ଗୀତ ※

ଜଳଯାଏ—
ଦହନ ଘିପାଳି ଜଳଯାଏ ।
ସାହାସ୍ତିନ ଏ ମରମ ବଞ୍ଚ ମରେ ହାୟରେ
ଆଖିର ବରଷା ଝରିଯାଏ ।
ଜୀବନର ଜଜଘରେ ଯାତନା ସୀମାହ୍ଲୀନ
ସପନ୍ ସବୁଜ ବନ ହେଲାଣି ଶିଖାହୀନ
ଯାଏ ଆଶା, ଆସେ ଆଶା,
ମରମ ଜଳାଏ ରେ
ଆଖିର ବରଷା ଝରିଯାଏ···
ବିଳାପର ବ୍ୟଥା ବକ୍ଷ ହୃଦୟରେ ବନ୍ଧୁବନ
ଜାଗେରେ ଅଶାନ୍ତ ମନେ ଆଣେ ଆଶା ଗୁଞ୍ଜନ
ଦିନ ଯାଏ ରାତି ଆସେ
ରାତି ପାହିଯାଏ ରେ
ଦହନ ଦୀପାଳି ଜଳଯାଏ ।

※

ସ୍ୱପ୍ନଭରା ଶ୍ୟାମ ଶସ୍ୟ କେଦାରେ
ସ୍ନେହଶିକ୍ତ ମାଟି ମାଆ ବୁକୁରେ······
ବନ ଛାୟାରେ, ମେଘ ମାୟାରେ
ନବୀନର କାୟା ଯିବା ଦେଖିରେ
ନିର୍ଝରର ନୀଳଜଳ ମୁକୁରେ
ଅଙ୍ଗେ ଅଙ୍ଗେ ଏତେ ରୂପ ସପନ ।
ସ୍ୱାସ୍ଥ୍ୟ ଶିଖ ସମ୍ପଦରେ ଶିହର
କୁସୁମିତ ହେବ ପଥ ଆମର
ଆମ କର୍ମରେ, ଆମ ଶ୍ରମରେ,
ସତ୍ୟ ଥିବ ସ୍ୱପ୍ନ ଥିବ କାବ୍ୟରେ
ନିର୍ମଳତା ଅନ୍ତରେ ବାହାରେ
ଛନ୍ଦେ ଛନ୍ଦେ ବଢିଯିବ ଲଗନ······



ଛାୟାବାଣୀ ପ୍ରତିଷ୍ଠାନର

# ମାଟିର ମଣିଷ

( ୧୯୬୭ )

**ସଂଗଠନରେ** ❊ କାହାଣୀ—କାଳନ୍ଦୀଚରଣ ପାଣିଗ୍ରାହୀ.
ସଂଳାପ—ଗୋପାଳ ଛୋଟରାୟ
ଗୀତ ରଚନା – କବିଚନ୍ଦ୍ର କାଳୀଚରଣ ପଟ୍ଟନାୟକ
ଶବ୍ଦ ଗ୍ରହଣ – ଶୈଳଜା ଚଟ୍ଟୋପାଧ୍ୟାୟ
ସଙ୍ଗୀତ—ଶ୍ରୀକୁମାର
ଚିତ୍ରନାଟ୍ୟ ଓ ପରିଚାଳନା—ମୃଣାଳ ସେନ୍
ପ୍ରଯୋଜକ —ବାବୁଲାଲ ଦୋଷୀ

**ରୂପାୟନରେ** ❊ ମାଷ୍ଟର ମାଣିଆ, ଶରତ, ପ୍ରଶାନ୍ତ, ଦୁଃଖୀରାମ, ଖ୍ରାମ, କାର୍ତ୍ତିକ ଘୋଷ, ନଟବର, ଧୀରେନ୍ଦ୍ର, ଭାନୁମତୀ, ସୁଜାତା, ମାନଦା, ପାରୁଲବାଲା, ସ୍ନେହଲତା, ମୀରା ।

**କାହାଣୀ** ❊

ବିରୂପା ନଈ କୂଳରେ ପଧାନପଡ଼ା ଗାଁଟି । ତିରିଶ ବର୍ଷ ତଳର ଏ କଥା । ଗାଁର ପୁରୁଖା ଲୋକ ଶ୍ୟାମ ପଧାନ । ସେ କହନ୍ତି—ମାଣେ ଜମି ଦ'ମାଣ ହୁଏନାହିଁ । ମଙ୍ଗଳା ଠାକୁରାଣୀ, ବିରୂପା ନଈ ବଦଳେ ନାହିଁ । ଦୁଆର ମଝିରେ ପାଚିରି ଉଠେଇ, ଜଲ ମଝିରେ ହିଡ଼ ପକେଇ ମଣିଷ କହେ—'ଯୁଗ ବଦଳୁଛି' । ଶାମ ପଧାନ ନ୍ୟାୟବନ୍ତ । ଗାଁରେ ତାଙ୍କୁ ସମସ୍ତେ ମାନନ୍ତି ।

ଶାମ ପଧାନଙ୍କ ସ୍ତ୍ରୀ ଇହଲୀଳା ସାଙ୍ଗ କଲେ । ସାନପୁଅ ଛକଡ଼ି ଶେଷ ବେଳରେ ବୋଉକୁ ତାର ଦେଖି ପାରିଲାନ । ବଡ଼ପୁଅ ବରଜୁ । ମାଟି ସହିତ ତାର ସମ୍ପର୍କ । ଘରେ ତା'ର ସ୍ତ୍ରୀ । ଦୁଇଟି ଝିଅ—ସୁନା ଓ ମୋତି । ଗୋଟିଏ ପୁଅ ଦାମ ।

ଛକଡ଼ି ଚଗଲ୍‌ଟାଏ । କୋଡ଼ିଏବର୍ଷର ଢେଣ୍ଡା । ଗୃହବାସରେ ମନ ନାହିଁ । ଝିଅଙ୍କ ପୁତୁଳିଙ୍କୁ ନେଇ ଖେଳିବା ତାର କାମ । ଗାଁରୁ ସେ ଦୂରକୁ ଚାଲିଯିବାକୁ ଚାହେଁ । ଉଡ଼ନ୍ତା ପକ୍ଷୀପରି—ଡେଣା ମେଲେଇ ।

ବୁଢ଼ୀ ମଲା ପରେ ଶାମ ପଧାନ ନିଜ ଯିବାଦିନ ଗଣି ବସନ୍ତି । ଚିନ୍ତା ଖାଲି ଛକଡ଼ି ପାଇଁ । ତାକୁ ବାଟକୁ ଆଣିବାକୁ ହେବ । ଛକଡ଼ିର ବାହାଘର ହୁଏ ।



( 'ମାଟିର ମଣିଷ'ରେ ଭାନୁମତୀ, ଅଲୋକ, କୁନା )

ଘରକୁ ଆସେ ନେତମଣି—ଛକଡ଼ିର ସ୍ତ୍ରୀ । ଛକଡ଼ିର ବୁଲାମନ ବସା ବାନ୍ଧେ ନେତମଣିର ଚପଳ ଛନ୍ଦରେ । ଶାମ ପ୍ରଧାନ ମରିଗଲେ । ଗାଁର ସେ ମୁରବି ଥିଲେ । ଯୁଗ ବଦଳିଲା ।



( ନାୟିକା ସୁଜାତା )

ଶହରୀ ସୁଆଗିଆ ଛକଡ଼ି କଲିକତା, କାଳିମାଟିର ସ୍ୱପ୍ନ ଦେଖିଲା । ନେତମଣି ତା କାନରେ ମନ୍ତ୍ର ଫୁଙ୍କିଲା । ହରି ମିଶ୍ର ଗାଁ ପଞ୍ଚାୟତ ପ୍ରେସିଡେଣ୍ଟ । ଗାଁର ନୂଆ ମୁରବି । ଲୋକଙ୍କ ଆଖିରେ କିନ୍ତୁ ସେ 'ନୂଆଁ ଗିଲା ବଗୁ' । ନଶାଢ଼ ଗୃହିଙ୍କ ଉପରେ ତାଙ୍କର ମୁରବି ପଣିଆ । ବରଜୁ ପରିବାର ଉପରେ ତାଙ୍କର ଆଖି ପଡ଼ିଲା ।

ତେଣେ ଯୁଦ୍ଧ ଲାଗିଲା । ଧାନ ଦର ହୁ ହୁ ହୋଇ ବଢ଼ିଲା । ମିଶ୍ରଙ୍କ

ମନ୍ତ୍ରଣା—ଛକଡ଼ି ତା' ଭାଗର ଧାନ ବିକି ମୁଠା ମୁଠା ଟଙ୍କା ପାଇବ । ଟଙ୍କା ଆଣି ସେ କଲିକତା, କାଳିମାଟି ଯିବ !

ଛକଡ଼ି ମନେ ଅଡ଼ିବସିଲା, ସେ ଭିନ୍ନ ହେବ । ବଇଜୁର ଗୋଟିଏ କଥା—ନା' । ମଲା ବାପ କହିଯାଇଛି—ପ୍ରଧାନ ଘର ଦୁଆରେ ପାଚିରି ଉଠିବନି କି ବାଲି ମଝିରେ ହିଡ଼ ପଡ଼ିବନି । ଛକଡ଼ି କିନ୍ତୁ ଅବୁଝା ।

ବାପକଥା କୌଣସିମତେ ରହିବ । ବଇଜୁ ବରଂ ଏ ଘରଦ୍ୱାର ଛାଡ଼ି ଚାଲିଯିବ, ହେଲେ ଏ ଘରେ ପାଚେରି ଉଠିବ ନାହିଁ କି ବାଲିରେ ହିଡ଼ ପଡ଼ିବ ନାହିଁ । ସେଇଆ ହେଲା । ବଇଜୁ ସବୁକିଛି ଛାଡ଼ି ଦେଇ ତା' ପିଲା ଓ ସ୍ତ୍ରୀକୁ ନେଇ ଚାଲିଗଲା ।

ଛକଡ଼ି ଶେଷରେ ହୃଦୟଙ୍ଗମ କରିଛି । ରକ୍ତର ଆକର୍ଷଣ ଓ ଭାଇ ଭାଇର ଅମୃତ ସ୍ନେହ ସହାନୁଭୂତି ତାକୁ ପୁଣି ଟାଣିନେଇଛି ବଇଜୁ ପାଖକୁ ।

## ଏହାର କେତୋଟି ଗୀତ ❋

ଉଡ଼ିଗଲେ ଗେଣ୍ଡାଳିଆ ଝାଡ଼ିଦେଲେ ପର,
ଝାଡ଼ିଦେଲେ ପରରେ ଝାଡ଼ିଦେଲେ ପର,
ରଜା ଝିଅ ବାହୁନୁଛି ଦେଖି ବୁଢ଼ାବର ଆହା ଦେଖି ବୁଢ଼ାବର ।
ଉଠେଇଲା କଳାମେଘ ହୋଦେଇ ଉଠାଣ,
କାଳିଗାଣ୍ଡି ଚରିଗଲା କଆଁରିକ ଧାନ ।
ବସିବା ସଙ୍ଗାତ ଚାଲ, ତୋହର ମୋହର ।
ଉଡ଼ି ଉଡ଼ି ଯିବା ଆମେ ମେଘ ରଜା ଘର ।
ଆହା ମେଘରଜା ଘର । ୧ ।

ଉଡ଼ିଗଲେ ଗେଣ୍ଡାଳିଆ ଝାଡ଼ିଦେଲେ ପର···
ମେଘ ରାଇଜର ପରୀ ଭାରି ସୁନ୍ଦରିଆ ।
ଗେଲ କରି ଆଣିବି ମୁଁ ବଡ଼ ହୁନ୍ଦରିଆ ।
ରହ ରହ ଗେଣ୍ଡାଳିଆ ଯିବା ବହୁ ଦୂର
ରହିବା ମଉଜ କରି ନୋହି ସାତପର ।
ଆହା ନୋହି ସାତପର । ୨ ।

ଉଡ଼ିଗଲେ ଗେଣ୍ଡାଳିଆ ଝାଡ଼ିଦେଲେ ପର······



'କନକପ୍ରଭା ପ୍ରଡ଼କସନ୍‌ର

# ଅରୁନ୍ଧତୀ

(୧୯୬୭)

**ସଂଗଠନରେ** ❊ କାହାଣୀ—ଗୁରୁକୃଷ୍ଣ ଗୋସ୍ୱାମୀ
ସଂଳାପ—ଆନନ୍ଦଶଙ୍କର ଦାସ, ଗୀତ ରଚନା—ଜୀବନାନନ୍ଦ ପାଣି, ନରସିଂହ ମହାପାତ୍ର, ଗୁରୁକୃଷ୍ଣ ଗୋସ୍ୱାମୀ । କଣ୍ଠଶିଳ୍ପୀ—ଲତା ମଙ୍ଗେସକର, ମହମ୍ମଦରଫି, ଆଶା ଭୋନ୍‌ସଲେ, ଉଷା ମଙ୍ଗେସକର, ବାଳକୃଷ୍ଣ ଦାଶ, ରଘୁନାଥ ପାଣିଗ୍ରାହୀ ଇତ୍ୟାଦି ।
ସଂଗୀତ—ଶାନ୍ତନୁ ମହାପାତ୍ର । ଚିତ୍ର ଗ୍ରହଣ—ବିଶୁ ଚକ୍ରବର୍ତ୍ତୀ ।
ଚିତ୍ରନାଟ୍ୟ ଓ ପରିଚାଳନା—ପ୍ରଫୁଲ୍ଲ ସେନ୍‌ଗୁପ୍ତ ।

**ରୂପାୟନରେ** ❊ ମିନତି, ଶରତ, ବ୍ରଜଗିରି, ପ୍ରତିହାରୀ, ଭବାନୀ, ସୁଜାତା, ଲକ୍ଷ୍ମୀ, ଧୀର, ଶର, ନିର୍ମଳ, ଦାମ, ହିମାଂଶୁ, ପ୍ରମୋଦ, ଅଖିଳ, ତ୍ରିଭୁବନ, ଜାନକୀ, ଶିଶୁଶିଳ୍ପୀ—ମଧୁ ଲତା ଆଦି···

**କାହାଣୀ** ❊

ବନ୍ଧ ଭାଙ୍ଗିଗଲେ ସୁଅ ଛୁଟେ । ଏ ସୁଅ ଅତି ପ୍ରଖର । ଗତିରୋଧ କରିବା କଷ୍ଟକର ।

ମନୋଜ ଓ ଅରୁନ୍ଧତୀର ଜୀବନ୍‌ରେ ତାହାହିଁ ଘଟିଛି । ଦୁହେଁ ଥିଲେ କଳାମନ୍ଦିରର ଗୁରୁଜୀଙ୍କ ପରମ ଶିଷ୍ୟ ଓ ଶିଷ୍ୟା । ମନୋଜ ସୁଗାୟକ, ଅରୁନ୍ଧତୀ ନୃତ୍ୟଶୀଳା । ଦୁହେଁ ଦୁହିଁଙ୍କୁ ଭଲ ପାଉଥିଲେ । ହଠାତ୍ ଧୂମକେତୁ ପରି ଏଇ ଦୁଇଟି ଜୀବନ ମଝିରେ ଆସି ଠିଆହୁଏ ବିଶ୍ୱଜିତ । କଲିକତାର ଏକ ରଙ୍ଗମଞ୍ଚ ଉପରେ ନୃତ୍ୟରତା ଅରୁନ୍ଧତୀଙ୍କୁ ଦେଖି ବିଶ୍ୱଜିତ ପାଟିକରି ଉଠେ—ତୁମେ ହିଁ ମୋର ସ୍ତ୍ରୀ ମଧୁମତୀ···



(ନାୟିକା ମିନତି)

ତୁମେ ଫେରିଆସ । ତୁମେ ହିଁ ମୋର ମଧୁମତୀ । ଅବିକଳ ସେଇ ମୁହଁ, ସେଇ ଆଖି, ସେଇ ହସ···ତୁମେ ମରିନାହଁ, ତୁମେ ବଞ୍ଚିଛ ।

ସୃଷ୍ଟି ହୋଇଛି ଏକ ପ୍ରହେଳିକା । ମନୋଜ ହୋଇଛି ଅନ୍ତର୍ଦ୍ଧାନ । ଫେରିଯାଇଛି ବନ୍ଧୁ

ଦୁରକୁ । ଫକୀର ହିଁ ହୋଇଛନ୍ତି ତା' ଜୀବନର ସମ୍ପୂର୍ଣ୍ଣ ଅରୁନ୍ଧତୀ ପ୍ରକୃତରେ ମଧୁମତୀ ନୁହେଁ । ମନୋଜ ଫେରିଛି ଘରେ । ବିଶ୍ୱଜିତର ଅଭିଯାନ ସଫଳ ହୋଇପାରିନି । ଅରୁନ୍ଧତୀର ପ୍ରତ୍ୟାଖ୍ୟାନ ଓ ଅବଜ୍ଞା ସତ୍ତ୍ୱେ ବିଶ୍ୱଜିତ ଲାଗି-



ପାର୍ଶ୍ୱ ଅଭିନେତ୍ରୀ

ସୁଜାତା

ରହିଛି ତା' ପଛେ ପଛେ । ଅରୁନ୍ଧତୀ ଜୀବନରେ ସୃଷ୍ଟିହୋଇଛି ଏକ ଜଟିଳ ସମସ୍ୟା । କିନ୍ତୁ ବିଶ୍ୱଜିତ ହାରିଯାଇଛି ଶେଷରେ—ମନୋଜ ଫେରି ଅରୁନ୍ଧତୀ ନିକଟକୁ ଚାଲିଆସିଛି ।

## ଅଭୁଲା ଗୀତ *

ମୟୂରୀ ଗୋ ତୁମ ଆକାଶେ ମୁଁ
ଦିନେ ମଲ୍ହାରେ ମେଘ ସାଜିଲି···
ଚନ୍ଦ୍ରିକା ଚୋଳି ନାଚିଲ ତୁମେ
ଇନ୍ଦ୍ରଧନୁ ମୁଁ ଆଙ୍କିଲି···
ତୁମ ଛନ୍ଦରେ ଯେବେ ମୋ ସୁର
ହଜାଇଦେବ ବୋଲି ଭାବିଲି
ଏତେ ବର୍ଷାରେ ମାଟି ଗନ୍ଧରେ
ଯେବେ ତୁମକୁ ମୁଁ ଭଲପାଇଲି
କେଉଁ ସବୁଜ ବନର ମାୟାରେ
ତୁମେ ଲୁଚିଗଲ କେତେ ଖୋଜିଲି ।

ଇନ୍ଦ୍ରଧନୁକୁ ଦେଇ ମୁଁ କଳି ଚନ୍ଦ୍ରିକା ତବ ରଙ୍ଗୀନ—
ନିଃସ୍ୱ ମୁଁ ଲୁହ ଝରାଇ ଆଜ ମାଟିର ଦେହେ ବିଲୀନ
ଭିଜା ମାଟି ମୁଁ ଏବେ ତ ଜାଗୃତ
କମ୍ପା ତୁମକୁ ଗୋ ଭଲ ପାଇଲି···ମୟୂଖ ଗୋ···

*

ତୁମକୁ ପାରୁନି ତ ଭୁଲି
ମୁହଁରେ ହସ ଏ ଛାତିରେ ଦରଜ
ରଖି ମୁଁ ପାରୁଛି ଏଠ ତୁଳି
ବରଷା ନହେଲେ ସୁଖେ ସିନା ପାଣି
ଉଭେଇ ଯାଏନା ନଈ
ସୁଖ ନ ମିଳିଲେ ଦୁଃଖରେ ମଣିଷ
ରହୁଛି ତ ପୁଣି ଖାଲି
କୁହ କି ଲାଭ ହାଏ ହାଏ କରି ? ।୧।
ମହକ ନଥିବା ଫୁଲ ଯଦି ଫୁଟେ
ଏ ଦୁନିଆ ବଗିଚାରେ,
ସାଥୀ ନ ମିଳିଲେ ଦୁଃଖ କାନ୍ଦିଁକି
ଏକା ହୋଇ ଗୁଲବାରେ
କୁହ, କି ଲାଭ ହାଏ ହାଏ କରି ?

*

ଆଜ ମୁଁ ଶ୍ରାବଣୀ ଲୁହର ହରଣୀ
ଯେଉଁ ରଜନୀ କେବେ ପାହୁନି
ଆଜ ମୁଁ ସେଇ ରଜନୀ···
ଏତେ ମେଘ ମୋ' ଆକାଶେ
ଚନ୍ଦ୍ର କମ୍ପାଇଁ ମିଛେ ଆସେ ଉଇଁ
ମୋ' ଛାତିରେ ଖୋଜ ତା'ର ହଜିଥିବା କଇଁ
ମୁଁ ଯେ ହଣି ପଦ୍ମିନୀ, ଲୁହବାରୁଣୀ ।
ତୁରେ ଆଜ ସୂର୍ଯ୍ୟକୁ ମୋ' ଆକାଶେ ଖାଲି
ଲୁହ ଢାଳ ଢାଳ
ଛଳ ଛଳ ଅନ୍ଧାରେ ବାହୁନେ ମୋ' ଝିଲ୍ଲୀ
ମରୁ ପଥେ ହଜିଛୁ ମୁଁ ଲୁହ ଝଟିଣୀ ।



**ପଞ୍ଚସଖା ପିକ୍‌ଚର୍ସର**

# କିଏ କାହାର

## ( ୧୯୬୮ )

**ସଂଗଠନରେ** * ସଙ୍ଗୀତ—ଗୋପାଳ ଶ୍ରେଷ୍ଠଗୁପ୍ତ, ଶ୍ୟାମ ସିଂହ
ନୃତ୍ୟ ନିର୍ଦ୍ଦେଶନା—କୃଷ୍ଣକୁମାର ( ମାନ୍ଦ୍ରାଜ )
ଚିତ୍ରଗ୍ରହଣ—ଦୀନେନ୍ ଗୁପ୍ତ
ସଙ୍ଗୀତ—ଅକ୍ଷୟ ମହାନ୍ତି
ଚିତ୍ରନାଟ୍ୟ, କାହାଣୀ ଓ ନିର୍ଦ୍ଦେଶନା—ନିତାଇ ପାଲିତ୍

**ରୂପାୟନରେ** * ଶରତ, ସୌଦାମିନୀ, ବାବି, ଲୀଳା, ଧୀରେ, ଭାନୁ, ସାଗର, ଓ଼ଲି, ପ୍ରଭାବତୀ, ଗୀତା, କମଳ ଚୌଧୁରୀ, ରଜନୀ, ସରସ୍ୱତୀ, ଦୀରେ, ଶ୍ୟାମ ସିଂ, ଶ୍ୟାମଳେନ୍ଦୁ, ନନ୍ଦୀ, ଶରତ ମହାନ୍ତି ଆଦି ।

**କାହାଣୀ** * ଏକଦା ଚଟକଳର କୁଲି ଗୁରୁବାରିଆ ପାତ୍ରର ପୁଅ ଆଜି ନବୀନ ମହାପାତ୍ର ବଡ଼ କଣ୍ଟ୍ରାକ୍ଟର । ଖୁବ୍ ପଇସାପତ୍ର ଥିଲାବାଲା ।


(ନାୟକ ଶରତ ପୂଜାରୀ)

ରାଜେନ୍ଦ୍ର ଜମିଦାର । ଜମିଦାରୀ ଯିବା ଗଲାଣି, କିନ୍ତୁ ଖାନ୍‌ଦାନୀ ଯାଇନି । ଜମିଦାର ଜଣେ ଶାନ୍ତ ସରଳ ଲୋକ । କିନ୍ତୁ ତାଙ୍କ ସ୍ତ୍ରୀ ସୁଭଦ୍ରା ଖାନ୍‌ଦାନୀ ଛାଡ଼ିପାରୁ ନାହାନ୍ତି, ଅଥଚ ହାତରେ ପଇସା ନାହିଁ ।

ତାଙ୍କ ଘରେ ରହନ୍ତି ଜଣେ ଅନାମଧେୟ ଇଂଜିନିୟର ଯୁବକ ପ୍ରକାଶ । ପ୍ରକାଶ ସହିତ ବଡ଼ଝିଅ ମମତାର ଘନିଷ୍ଠ ସମ୍ପର୍କ । ପରସ୍ପରକୁ ଭଲ ପାଆନ୍ତି ସେମାନେ ।

ସୁଭଦ୍ରାଙ୍କ ଜିଦ୍ ସେ କଣ୍ଟ୍ରାକ୍ଟରର ପୁଅ ସହିତ ବିବାହ ଦେବେ ମମତାର । ଏଥିପାଇଁ ସେ ସ୍ୱାମୀଙ୍କ ଅଜାଣତରେ ଟଙ୍କା ଧାରିକରି ଆଣିଛନ୍ତି । କଣ୍ଟ୍ରାକ୍ଟର ଠାରୁ ଜମିଦାର କୌଣସି କଥାରେ ହସ୍ତକ୍ଷେପ

କଣ୍ଠନାଦାନ୍ତ ଶେଷପର୍ଯ୍ୟନ୍ତ । କିନ୍ତୁ ଝିଅର ବିବାହ ପ୍ରସ୍ତାବରେ ସେ ତୀବ୍ର ପ୍ରତିବାଦ କରିଛନ୍ତି । ନା, ନିଜ ଝିଅକୁ ସେ ଗୋଟାଏ ମାଙ୍କଡ଼ ହାତରେ ଟେକି ଦେଇ ପାରିବେନି । କାରଣ ତାଙ୍କ ମତରେ କେବଳ ପଇସା ହେଲେ ଲୋକ ଭଦ୍ରଲୋକ ହୁଏନା ।



( 'କଏ କାହାର'ରେ ସୌଦାମିନୀ, ସରସ୍ୱତୀ, ଲୀଳା )



[ ଶରତ ପୂଝାରୀ, କମଳ ଚୌଧୁରୀ ]

ଏହା ଫଳରେ ପ୍ରସ୍ତାବ ଭାଙ୍ଗିଯାଇଛି । ସୃଷ୍ଟି ହୋଇଛି ବିଭ୍ରାଟ । କଣ୍ଟ୍ରାକ୍ଟରଙ୍କ କୂଟ ଚକ୍ରାନ୍ତରେ ଜମିଦାରଙ୍କ ପରିବାର ଟଳଟଳାନ୍ତ । ଏତିକିବେଳେ ପ୍ରକାଶ ଆସିଛି ସେମାନଙ୍କୁ ଦୁର୍ଦ୍ଦଶାରୁ ରକ୍ଷା କରିବା ଲାଗି । ଏଣୁ ପ୍ରକାଶର ପରିଚୟ ଲାଗି ସମସ୍ତେ ବ୍ୟାକୁଳ ।



[ 'କଏ କାହାର'ରେ ଓଡ଼ିଶାର ଦୁଇ ଲୋକପ୍ରିୟ ଅଭିନେତା ବାବ ଓ ପୀର ]

ସୁଭଦ୍ରା ପଚାରନ୍ତି ସ୍ୱାମୀଙ୍କୁ ପ୍ରକାଶ ପ୍ରକୃତରେ କିଏ ? ପ୍ରକାଶ ମଧ୍ୟ ପଚାରନ୍ତି ମୋର ପରିଚୟ ? ଦର୍ଶକ ମନରେ ମଧ୍ୟ ସେଇ ଗୋଟିଏ ପ୍ରଶ୍ନ— ପ୍ରକାଶ କିଏ ?

ପ୍ରକାଶର ବାପା ଏକ ଅପ୍ରୀତିକର ପରିସ୍ଥିତିରେ ଘର ଛାଡ଼ିଥିଲେ । ପତ୍ନୀ ତାଙ୍କର ମୃତ୍ୟୁମୁଖରେ ପଡ଼ିବା ପୂର୍ବରୁ ମମତାର ବାପାଙ୍କ ହାତରେ ପୁଅକୁ ଛାଡ଼ି ଯାଇଥିଲେ । ପିତାର ବଦଗୁଣ ପୁଅକୁ ପ୍ରଭାବିତ ନକରୁ ସେଥିପାଇଁ ସେ ତାହା ଗୋପନ ରଖିଥିଲେ । ଶେଷରେ ପ୍ରକାଶ ବାପା ଫେରିଆସିଛନ୍ତି ଏକ ଭଲମଣିଷ ହୋଇ । ସେ ହିଁ ରକ୍ଷାକରିଛନ୍ତି ଜମିଦାର ମାନସମ୍ମାନ ସବୁକିଛି ।

## ଅଭୁଲା ଗୀତ କେତୋଟି ❊

ହେମହରିଣୀ ମଥାରମଣୀ କରନା ଗର୍ଭିଣୀ ନାହିଁ ନାହିଁ ନାହିଁ ନାହିଁରେ
ଉପରେ ହସ ଭିତରେ ବିଷ ଚତୁର କେ ଜାଣି ନାହିଁ ନାହିଁ ନାହିଁ ନାହିଁରେ
ଆଖିର ଛୁରୀ ମାରି ନାଗରୀ
ମରମ ଘାରି ଦେଇଛୁ ସାରି
ତୋରେ ସୁମରି ଆରେ ଚତୁରୀ ବସିଛୁ ବାଟ ଚାହିଁ ଚାହିଁ ଚାହିଁ ଚାହିଁରେ
ଆଖିରୁ ଦୂର ହେଲେ ନାଗର
ଦେଇ ପାଶୋରି ମନରୁ ତୋର
ଚତୁର ଅନାଇ ଚାହିଁବା ପାଇଁ ଆଉତ ବାକି ନାହିଁ ନାହିଁ ନାହିଁ ନାହିଁରେ —

❊

ଉଡ଼ ଉଡ଼ ଉଡ଼ ଉଡ଼ —ଯା'ରେ ଉଡ଼ —ଏ ମୋର ଗୁଡ଼ି
ଖାନା ଖାନା ଭୁ କାଟ
ଏ ମୋର ଲଚ୍‌କମାଣୀ ଲଚ୍‌କମାଣୀ ।
କଲକତି ଲଟେଇ ମୋର ନମ୍ବରି ସୂତାରେ ମାଂଜା
ପଟାଦାର୍ ବନ ଯା ଗୁଣୀ ମୋ ଠିକରି ହେବ ତୋ ରଜା
ଟିକିଏ ସୁରକ ଦେଲେ ନେଇ ଯା ଯା ଲେଟଣୀ
ଏ ମୋର ଲଚ୍‌କମାଣୀ—ଲଚ୍‌କମାଣୀ । ୧ ।
ଆହାଲେ ଗଙ୍ଗା ଯମୁନା ମୋ ଠିକରି ତୋର ବାବା
ଆକାଶେ ବୁରୁନ୍ଦ ହୋଇ ଚତୁରେ କରିବ କାବା
ପଡ଼ିବ ପେଞ୍ଚ୍ ତୋ ସାଥେ
ସାରି ଦେବ ତୋ ରଂ ଜବାନୀ
ଏ ମୋର ଲଚ୍‌କମାଣୀ—ଲଚ୍‌କମାଣୀ ।



ଉଦାସୀ ଆଖି ଝୁରିରହେ, ପିଆସୀ ମନ ଝରିଯାଏ ଯାଏରେ…
ଝୁରିଝୁରି ଝରିଯାଏ ।
ଜୀବନ ସ୍ୱପ୍ନ ଧାରେ ଧାରେ, ଆଶାର ଦୀପ ନଭେ ଜଳେ
ପୀରତି ନିରମମ, ଜଳାଏ ତନୁମନ
ମାଧବୀ ରାତି ବିତି ଯାଏ ରେ ।୧।
ଫଗୁଣ ହଜେ ବେଦନାରେ, ଶ୍ରାବଣ ଘନ ବରଷାରେ
ଅବୁଝାମନ ମୋର ଅଭୁଲା ଅତୀତର
ସେନେହ ଭୁଲି ନାହିଁ ହାଏରେ… ।୨।

❊

ପୁ—ଫୁଲେଇରାଣୀ ସଜଫୁଲ ଗୁଲୁଗୁଲିଆ
ତୋ'ଲାଗି ବେହୋସ ଏ ସାରା ଦୁନିଆ
ବଜଲ ପେନ୍ଟି, ନାଇଚ୍ ଗୁନ୍ଥି ।
ବସିଚୁ ଗୁହିଁ ଆହା ଆସିବ କିଏ ପୁଣି ଫୁଲରସିଆ ।
ନା—ମିଠା କଥା କହୁ ତୁହି ବଡ଼ ମିଛୁଆ
ତୋ' କଥାରେ ବାଇସ ନାହିଁ ବଡ଼ ବେହିଆ
ଲାଲ ଚୂଡ଼ି, ଛପା ଶାଢ଼ୀ
ଆଣିଲୁ ନାହିଁ ସାହା ଜଣାଗଲା ତୋର ଦାତାପଣିଆ ।
ପୁ—ହାଏରେ ହାଏ ଲଂକଟଣା ବଟଲିଇ ଆଖି
ନୂଆ ନୂଆ ଶିକାର ଖୋଜ୍ ମଜା ଦେଖି
ଚଢ଼ାଇ ଦର ପୀରତି ହାଟେ ତୁ ଡାକ ହାକ
ଡାଳକୁ ଡାଳ ଉଡ଼ି ବୁଲୁ ମୋ ଉଡ଼ାପକ୍ଷୀ
ସେଇ ତୋ ଜାତି, ସେଇ ତୋ ଖ୍ୟାତି
ଜବାବ ନାହିଁ ଆହା, ଭିତର କଳା ଉପର ଛନ ଛନିଆ ।୧।
ଫେସନବାଲି ଯାଁ' ରହି ଯା ଶୁଣ ଅକଲ
ଖୁବ ଭଲ କିଏ ନକଲି କିଏ ଅସଲ
ମନକୁ ଦେହ ସବୁ ତୋର ପୁରା ଭେଜାଲ
ତୋର ଗୁଣ କହିବା ପାଇଁ ନାହିଁ ମସାଲ
ଆଜକା ଛୋକା, ଅଚଳ ଠଙ୍କା
ଜବାବ ନାହିଁ ଆହା ଭିତର ଫମ୍ପା ଉପର ଚକଚକିଆ ।୨।

★

ପରଦେଶୀ ବନ୍ଧୁ ତୁମେ ଯିବ ଉଡ଼ିଉଡ଼ି କି
କପାଇଁ ବାନ୍ଧିଲ ମନ ମିଛେ ତୁମ କଣ୍ଠରେ
ଘୁଣ୍ଟମୋ ହୁଏ ଖାଲି କରନ୍ତ
ତୁମକଥା କେମିନ୍ତ କେମିନ୍ତ
କେଉଁଠି ସହର ତୁମ କେଉଠି ରହଣୀ
ଗୋଟିଏ ପଲକେ ନେଲ ଚୋରାଇ ଗୃହାଣୀ
ସରମରେ କର ମୋର ସପନ ଘୁଉଣୀ
ଏତେ ଗୋ ଆପଣ କଲ କାହିଁକି କେଜାଣି
ପରଦେଶୀ ବନ୍ଧୁ ତୁମେ ଯିବ ଉଡ଼ିଉଡ଼ି କି
କପାଇଁ ବାନ୍ଧିଲ ମିଛେ ମନ ତୁମ କଣ୍ଠରେ
ଜାଣିଛୁ ଶଠ ତୁମ ପୀରତି
ତୁମ କଥା କେମିନ୍ତ କେମିନ୍ତ । ୧ ।
କଥାକେ ସତର ବାଙ୍କ ଯାହାକୁ ଗୋ ଜଣା
ତା' ଲାଗି ମରମ ମୋର ମରି ହେଲା ଝୁଣା
ଯା' ଲାଗି ଅଂଜନ କଲି ଗଢ଼ନ ଗଂଜଣା
ସେନେହ ବଅର୍ଥ ତା'ର ସୋହାଗ ଅଲଣା
ପରଦେଶୀ ବନ୍ଧୁ ତୁମେ······



# ସ୍ତ୍ରୀ

( ୧୯୬୮ )

ସଂଗଠନରେ * କାହାଣୀ—ଶ୍ରାବଣୀ ।
ସଙ୍ଗୀତ—ଶ୍ରୀକୁମାର ।
ଚିତ୍ରନାଟ୍ୟ ଓ ସଂଳାପ—ସାରଦାପ୍ରସନ୍ନ ନାୟକ ।
ଚିତ୍ରଗ୍ରହଣ—ଶାନ୍ତି ଦେବ ।
ନିର୍ଦ୍ଦେଶକ—ସିଦ୍ଧାର୍ଥ ।

ରୂପାୟନରେ * ଗୌର, ଚନ୍ଦନା, ଯଦୁନାଥ, ସାରଦାପ୍ରସନ୍ନ, ସୁଧାଂଶୁ, ସ୍ୱରୂପ, ଶେଖର, ଅଲେଖ, କୁଞ୍ଜ, ହିମା, ଶରତ, ଲୀଳା, ଅନିମା, ମେନା, ସୁନନ୍ଦା, ସୁଜାତା, ଶ୍ୟାମଳେନ୍ଦୁ, ଅଶୋକ, ପ୍ରମୋଦ, ସାତ୍ତ୍ୱିକାର, ବିଜୟ, ବଲର୍ଓ୍ୱାର, ଶରତ, ନୂର ମହମ୍ମଦ । ଅତିଥିଶିଳ୍ପୀ—ରୁମାଗୁହ ଠାକୁରତା ।

କାହାଣୀ * ସୁନ୍ଦର ଡାକ୍ତର ପ୍ରସନ୍ନକୁମାରଙ୍କ ଅଲ୍‌ଅଳ ଭଉଣୀ ଅନୁରାଧା—ରୂପ ଯେମିତି, ଗୁଣ ବି ଯେମିତି । ଅପରବେଳା ସମୁଦ୍ର କୂଳରେ ଭ୍ରମଣ କରିବା ତାଙ୍କ ଦୁ' ଜଣଙ୍କର ଯେମିତି ଗୋଟାଏ ଅଭ୍ୟାସ—ପ୍ରତିଦିନ ଯାଆନ୍ତି ! ଆଉ ସେଦିନ ମଧ୍ୟ ଯାଇଥିଲେ ।



['ସ୍ତ୍ରୀ' ଚିତ୍ରର ନାୟିକା ଚନ୍ଦନା]

ଅନୁରାଧା ଚାହିଁଲି ଫେନପୁଞ୍ଜ ସମୁଦ୍ର ବକ୍ଷକୁ । ହଠାତ୍ ଦେଖିଲି—ଗୋଟାଏ ଲୋକକୁ ସମୁଦ୍ର ଢେଉମାନେ ଟାଣି ଟାଣି ଭିତରକୁ ନେଇଯାଉଛନ୍ତି ।। ଭାଇକୁ ଡାକ ଦଉଡ଼ିଗଲି ସେ । ଦୁହେଁ ମିଶି ଲୋକଟାକୁ ଉଦ୍ଧାର କଲେ ।

କିନ୍ତୁ, ଲୋକଟା କ'ଣ ଆତ୍ମହତ୍ୟା କରୁଥିଲା ? କାହିଁକି ? ନିଜ ଘରକୁ ନେଇଯାଇ ଚିକିତ୍ସା କଲେ । ଭଲ ହୋଇଗଲା ଦେହଟା । କିନ୍ତୁ ଭଲ ହୋଇନଥିଲା ତାର ଆଉ ଅନୁରାଧାର ଭିତରେ ବଢ଼ିଚାଲିଥିବା ଅନ୍ୟ ଗୋଟାଏ ରୋଗ ।

ଡାକ୍ତର ପ୍ରସନ୍ନ ଏ ରୋଗଟାକୁ ବି ଧରିପାରିଲେ । ଦୁଇଜଣଙ୍କୁ ବିବାହ ଦେଇ ସେ ବାନ୍ଧିଯାଇଥିଲେ ଆମେରିକା ।

ବିବାହ କଣ ଦେବବ୍ରତ ଫେରିଛନ୍ତି ତାଙ୍କ ଘରକୁ ଖବର ପାଇ ସାର 'ଖୁସିହୋଇ।
ଲ ମା' ସ୍ନେହମୟୀ; କିନ୍ତୁ ଖୁସି ହୋଇ ପାରିନଥିଲେ ତାଙ୍କର ଝିଅ ବାଲ୍ୟ ବିଧବା ଦେବକି ସାନଭଉଣୀ ସିନ୍ଧୁ, ଆଉ ତାର ପ୍ରେମିକ ଶଙ୍କର।

ଅନୁରାଧାକୁ ସଙ୍ଗରେ ନେଇ ଦେବବ୍ରତ ଘରେ ପହଞ୍ଚିଲେ। ପୁଅ ବୋହୂକୁ ପାଛୋଟି ନେଇ ଯାଉଥିଲେ ସମସ୍ତେ—'ବୋଉ' ଡାକରେ ହଠାତ୍ ଚମକି ପଡ଼ିଲା ଅନୁରାଧା!

* * *

**ଗୀତ କେତୋଟି ***

ମୋ' ଅଝିର କେତେ କଥା ମୋ' ମନର ନୀରବତା
କହିବାକୁ ଚାହେଁ ଯାହା କହିପାରେ ନା
ନ କହି ମୁଁ ନୀରବରେ ରହିପାରେ ନା।
ଏଇ ନଈ ଯାଏ ବହି, ସାଗରେ ମିଶିବାପାଇଁ
କାନେ କାନେ ଧୀରେ ଧୀରେ
ମନକଥା ଯାଏ କହି
ଢେଉ ବିନା କୂଆଁର ତ ରହିପାରେ ନା
ଏଇ ମୋର ଶ୍ରେଷ୍ଠ କଥା ବୁଝିପାରନା।
ସରସୀରେ ପଦ୍ମ କଇଁ ସୂର୍ଯ୍ୟ ଚନ୍ଦ୍ରମାରେ ଚାହିଁ
କେତେ ଉଷା ଗୋଧୂଳିରେ ଆନନ୍ଦେ ମଗନ ହୋଇ
ଫୁଲ ବିନା ମହୁମାଛି ରହିପାରେନା
ଏଇ ମୋର ଶ୍ରେଷ୍ଠ କଥା ବୁଝିପାରନା—



ସଜ ସକାଳେ ତୁମ ଛବି ଖୋଜେ ନୀରଭିଜା ନୟନରେ, ହାସ୍ୟ
ଜଗତର ନାଥ ଆହେ ଜଗନ୍ନାଥ ଆକୁଳ ଅନ୍ତରେ ଝୁରେ, ମୁଁ ସଜ ସକାଳେ···
ମାଗୁନାହିଁ ଧନ ମାନ ସନମାନ ମାଗୁନାହିଁ ମୁଁ ଯେ ସ୍ୱର୍ଗ ନୀଳା ମୋତ
ମାଗିଥିଲେ ଯାହା ଧ୍ରୁବ ପ୍ରହ୍ଲାଦ ମାଗୁ ଛି ତାହିଁରୁ ଦିଅ ମୋତେ କିଛି।
କରୁଣାସାଗର ନକର ହେ ପର ମନର ମଗ୍ନଳ ଝୁରମରେ।୧।
ଗିରି ନଦୀ ବନ ବସନ୍ତ ପବନ ଗଗନ ଜୋଛନା ତାରକା ତପନ
ସୁନୀଳ ସାଗର ଭରି ଉଦବେନ ଝରଣାର ଅଙ୍ଗେ କଅଁଳ କମ୍ପନ
ହସାଉଛନ୍ତି ସବୁ କନ୍ଦାଉଛି ମୋତେ ତୁଭୂନେ ଚାହିଁକି ଲୁହ ବାରେ।୨।
ଏତେ ପାଖେ ଥାଇ, ଥାଅ ଏତେ ଦୂରେ ପିତା ମାତା ବୋଲି ଡାକଇ ଆତୁରେ
ଡାକଇ ଆତୁରେ ଆରତ କଣ୍ଠରେ ଆରତ କଣ୍ଠରେ ଆକୁଳ ମନରେ
ନିଅ ତୋଳି କୋଳେ କୋଳେ ନିଅ ତୋଳି ମିନତି ମୋହର ନୀରିବରେ।

❋

ଝୁମି ଝୁମି ଆସେ ଆଖି
ସପନ ଭରା ଜୀବନେ ମୋର
ରାତି ଆଉ କେତେ ବାକି,
ଅନେକ ତାରା ଆକାଶ ସାରା କିଏ ବା କାହାର ସାଥୀ
ବନର ବୁକେ ସବୁ ତ ହଜେ ସଖିଲୋ ରାତିର ଗୀତି
ପାଏନା ଖୋଜ ସକାଳେ କାରେ ହାରେ ମୁଁ ଡାକି ଡାକି
ଆଖି ଯାଏ ମୋର ଥକି । ୧ ।
ଅନେକ ନଳି ଅନେକ ଖେଳି, ପାଇଛୁ ଖୋଜି ଖୋଜି
ଜୀବନ ମୋର କରଜ ସିନା ହେବନି କେବେ ପୂର୍ତ୍ତି
ସେଇଥିପାଇଁ ସପନ ହାତେ ଦେଇଛୁ ମତେ ଝଙ୍କି
ଜହ୍ନ ଏକା ମୋର ସାକ୍ଷୀ । ୨ ।



**ରଜରାଣୀ ଫିଲିମ୍ସର**

## ବନ୍ଧନ

( ୧୯୭୯ )

ପ୍ରଯୋଜକା—ସ୍ୱର୍ଣ୍ଣ ପଟ୍ଟନାୟକ
ନିର୍ଦ୍ଦେଶକ—କାହାଣୀ—ନିତାଇ ପାଲିତ
ସଙ୍ଗୀତ ନିର୍ଦ୍ଦେଶକ – ଶ୍ରୀକୁମାର
ଭୂମିକାରେ – ଗୋବିନ୍ଦ ତେଜ, ଧୀର ବିଶ୍ୱାଳ, ବାବି, ପ୍ରଶାନ୍ତ, ଶ୍ୟାମ ସିଂହ, ସାଗର, ଲୀଳା, ଗୀତାଞ୍ଜଳି, ଉର୍ବଶୀ, ପରୀକ୍ଷିତ, ନିରଞ୍ଜନ

**କାହାଣୀ** ❋

ଲକ୍ଷପତି ଦୀନବନ୍ଧୁ ରାୟଙ୍କର ବିବାହିତ ଜୀବନରେ ଉଠିଛି ସଂଘର୍ଷ । ସନ୍ତାନହୀନ ଦମ୍ପତିଙ୍କର କୋଳ ପୂର୍ଣ୍ଣ କରିଛି ତାଙ୍କର ଅନ୍ତରେ ପ୍ରତିପାଳିତ ରକ୍ଷକର ରକ୍ଷକରାଣୀ ମାଳା ଓ ରାଧାଙ୍କର ପୁତ୍ର ପ୍ରଦୀପ । ରାଧାର ମୃତ୍ୟୁ ପୂର୍ବରୁ ପ୍ରଦୀପକୁ ସାଆନ୍ତାଣୀଙ୍କୁ ଦେବାକୁ ଅନୁରୋଧ କରିଛି ।



[ ନାୟିକା ଗୀତାଞ୍ଜଳି ଓ ନାୟକ ପ୍ରଶାନ୍ତ ]

ପ୍ରାଚୁର୍ଯ୍ୟ ଓ ଐଶ୍ୱର୍ଯ୍ୟର ପୂର୍ଣ୍ଣତା ମଧ୍ୟରେ ପ୍ରଭାତ ବଢ଼ିଛି । ସାବଲୀଳ ସୁଖର ସଂସାର ମଧ୍ୟରେ ଦେଖାଦେଇଛି ଅଘଟନ ଝଡ଼ । ଦୀନବନ୍ଧୁ ଗୁପ୍ତ ସନ୍ତାନର ପିତା ହୋଇଛନ୍ତି । ସାଆନ୍ତାଣୀଙ୍କର ସ୍ନେହ ମମତାର ରଜ୍ଜୁ ଶିଥିଳ ହୋଇ-ଯାଇଛି । ମାଳା ପ୍ରଭାତକୁ ନେଇ ଫେରିଯାଇଛି ନିଜ ଗାଁକୁ ।

ସବୁ ଝଡ଼ବତାସକୁ ସହି ମାଳା ମାଟି ସହିତ ସଂଗ୍ରାମ କରି ପ୍ରଭାତକୁ କରିଛି ଡାକ୍ତର । ଗୋଟିଏ ପିକ୍‌ନିକ୍ ପାର୍ଟିରେ ଡାକ୍ତର ପ୍ରଭାତର ମେଡ଼ିକାଲ୍ କଲେଜର ଛାତ୍ରୀ ଗୀତା ସହିତ ପରିଚୟ ହୁଏ ।



[ 'ବନ୍ଧନ'ରେ ଗୋବିନ୍ଦ ତେଜ, ଅଭୟ, ଗୀତାଞ୍ଜଳି, ଲୀଳା, ଗୀତା ]

ପରିଚୟର ବନ୍ଧନ ଦୃଢ଼ ହୋଇଛି । ପ୍ରଭାତର ପରିଚୟ ହୋଇଛି ଗୀତାର ବଡ଼ଭାଇ ସହିତ ଏକ ଅପ୍ରୀତିକର ପରିବେଶରେ । ଦୀନବନ୍ଧୁ ଗୁପ୍ତଙ୍କର ଭଣେଇ ଅନାଦିର ଚକ୍ରବ୍ୟୂହ ମଧ୍ୟରେ ଅଜାଣତରେ ପ୍ରଭାତ ଓ ଗୀତାର ବଡ଼ଭାଇ ପଡ଼ିଯାଇଛନ୍ତି । ବନ୍ଧୁଙ୍କୁ ରକ୍ଷା କରିବାପାଇଁ ଯାଇ ପ୍ରଭାତ ଥାନାରେ ଥିବା ଖବର ପାଇ ବ୍ୟସ୍ତବିବ୍ରତ ପିତା ମାଳା, ଦୀନବନ୍ଧୁ ଗୁପ୍ତଙ୍କ ଘରେ ପହଞ୍ଚିଛି । ଅତୀତକୁ ଫେରିଯାଇଛନ୍ତି ଦୀନବନ୍ଧୁ ଗୁପ୍ତ । ତାଙ୍କ ଚାକର ମାଳାର ପୁଅ ଡାକ୍ତର ପ୍ରଭାତକୁ ଅଜାଣତରେ ତାଙ୍କରି ଝିଅ ଗୀତା ଭଲପାଇ ବସିଛି । ଅପମାନ ପାଇ ମାଳା ଓ ପ୍ରଭାତ ଘରକୁ ଫେରିଯାଇଛନ୍ତି । ତା ପଛେ ପଛେ ଗୀତା, ବାପା ମାଆଙ୍କର ମମତାର ବନ୍ଧନ ଛାଡ଼ି ପ୍ରଭାତ ପାଖକୁ ଚାଲି ଯାଇଛି । ପରିଶେଷରେ ଦୀନବନ୍ଧୁ ଗୁପ୍ତଙ୍କର ବଡ଼ଲୋକର ଅହଙ୍କାର ଖୋଲି ଖସିପଡ଼ିଛି ।

●

## ଗୀତ ॐ

ଯାବ, ଯାବ ତୁ ତ ମୋର ନାଲପାନ ବଦ୍ଵ……
ତୋଶଲଗି ପଚ୍ଛେ ମୁହିଁ ଥାନାକୁ ଯିବ
ହେଲେ ମୁଁ ତ ତତେ ବନେ ତୋ ସାନ୍ଵରୁ ଉଡ଼େଇ ନେବ ॥
ତୁ ତ ମୋର ଗୋଲ୍ପ ତୋଡ଼ା, ତୋ ବନେ ମୋ ଘର ଉଜୁଡ଼ା
ତୋ ବାପ ମୋ ଶଶୁର ବୁଢ଼ା, ସେ ନମ୍ବର ବଉଁଶ ବୁଢ଼ା,
ତତେ ସେ ଶିଖେଇ ନେଲା ମୋ'ଠାରୁ ଛଡ଼େଇ
ହେଲେ ମୁଁ ତ ତାକୁ ଦିନେ ପାଟେ ମଜା ଚଖେଇ ଦେବ ॥
ମୁଁ ଗେରସ୍ତ ତୁ ମୋ ଘରଣୀ, ମୁ ବାଇପ୍ଲା ତୁ ମୋ ବାପ୍ଲାଣୀ ॥
ମୁଁ ବାଇଲେ ପ୍ରେମ ଖଞ୍ଜଣୀ, ତୁ ଘୁଙ୍ଗୁରୁ ପ୍ରେମ ରଗିଣୀ
ଶୁଣ ମୋ ଭଉଜା, ଆଲେ, ମୋ କଥା ମାନଯା
ତା ନ ହେଲେ ସତ କହୁଚି ତୋ ପାଇଁ ମୁଁ ଦଉଡ଼ି ଦେବ ॥



ଛାୟାବାଣୀର

## ଅଦିନ ମେଘ

(୧୯୭୯)

**ସଂଗଠନରେ** ✻ କାହାଣୀ—କୁନ୍ତଳା କୁମାରୀ ଆଚାର୍ଯ୍ୟ
ସଳାପ—ଗୋପାଳ ଘୋଷଦସ୍ତିଦାର
ଚିତ୍ରଗ୍ରହଣ—ଶୈଳଜା ଚାଟାର୍ଜୀ
ସଙ୍ଗୀତ—ବାଳକୃଷ୍ଣ ଦାସ
ଗୀତରଚନା—କାଳଚରଣ ପଟ୍ଟନାୟକ, ନାରାୟଣ ପ୍ରସାଦ ସିଂ, ବୈକୁଣ୍ଠନାଥ ମହାନ୍ତି ।
ପରିଚାଳନା—ଅମିତ ମୈତ୍ର ।

**ରୂପାୟନରେ** ✻ ସନ୍ଧ୍ୟା, ଗୀତା, ଝରଣା, ଭାନୁମତି, ପଦ୍ମା, ରମା, ବାବି, ପ୍ରଶାନ୍ତ, ନିରଞ୍ଜନ, ଦୁଃଖୀରାମ, ଅଜୟ, ସାଗର, ବୁଲ୍‌ବୁଲ୍, ଶ୍ୟାମଳେନ୍ଦୁ, ତାପସ, କାଳନ୍ଦୀ, କଲ୍ୟାଣ, ଭବାନୀ, ଜାନକୀ, ବିଜୟ, ପ୍ରଭାସ, ବୃନ୍ଦାବନ, ହିମାଂଶୁ, ଅଲେଖ, ଚନ୍ଦ୍ରକାନ୍ତ ।

**କାହାଣୀ** ✻

ବସ୍ତିର୍ଣ୍ଣ କଲେଜ ପ୍ରାଙ୍ଗଣରେ ଦୁଇଟି ଅପରିଚିତ ତରୁଣ ତରୁଣୀ



('ଅଦିନ ମେଘ'ରେ ଗୀତା, ସନ୍ଧ୍ୟା)

ସୁରେଶ ଓ ଚମ୍ପକ । ଗୋଟିଏ ପୁଷ୍ପଗୁଚ୍ଛର ମାଧ୍ୟମରେ ଦୁହିଁଙ୍କ ମଧ୍ୟରେ ଜାତହୁଏ ପରିଚୟ । ଏଇ ପରିଚୟ କ୍ରମେ ସୁରଭିତ ହୁଏ ନବଡ଼ ଅନୁରାଗରେ ।



('ଅଦିନ ମେଘ'ରେ ସନ୍ଧ୍ୟା, ଶ୍ୟାମଳେନ୍ଦୁ)

ଏକ ପରିଚିତା ଗ୍ରାମ୍ୟବାଳିକା ଅଳକା ସହିତ ସୁରେଶର ବିବାହ ପ୍ରସ୍ତାବ ଆସେ । କିନ୍ତୁ ସୁରେଶ ଏ ବିବାହକୁ ପ୍ରତ୍ୟାଖ୍ୟାନ କରେ । ଅଳକାର ବିବାହ ହୁଏ ଜୟନ୍ତକାନ୍ତ ସହିତ । ଆଉ ଏକ ସୁନ୍ଦରୀ ତରୁଣୀ ବୀଣା...... ବିବାହ ବେଦୀରୁ ତାର ବର ଉଠିଯାଏ । ଏଇ ସାମାଜିକ କଳୁଷରୁ ବୀଣାକୁ ଉଦ୍ଧାର କରିବାପାଇଁ ଘଟଣାଚକ୍ରରେ ପଡ଼ି ସୁରେଶ ନିଜର ଅନିଚ୍ଛାସତ୍ତ୍ୱେ ତାକୁ ବିବାହ କରେ ।

ସୁରେଶ ଓ ବୀଣା—ସ୍ୱାମୀ, ସ୍ତ୍ରୀ, ସୁରେଶ ଓ ଚମ୍ପକ—ପ୍ରେମିକ ପ୍ରେମିକା, ସୁରେଶ ଓ ଅଳକା—ବିଗତ ଦିନର ଦୁଇଟି ସ୍ମୃତି । ଉଠି ଆସିଲା ଅଦିନ ମେଘ । ଅଳକା ବିଧବା ହେଲା । ବୀଣା ମୃତ୍ୟୁ ମୁଖରେ ପଡ଼ିଲା । ଚମ୍ପକ ହେଲା ଗୃହତ୍ୟାଗିନୀ । ବିଗତସୂତ୍ରର ଅବଲମ୍ବନରେ ପୁଣି ଆସିଲା ସୁରେଶ ସହିତ ଅଳକାର ବିବାହ ପ୍ରସ୍ତାବ ।

❊



[ 'ଅଦଳ ମେନ୍ଦ'ରେ ଝରଣା ]



**କେତୋଟି ଅଭୁଲା ଗୀତ ❊**

ବୋଉ ଲୋ କ କହିବ ନୂଆଭାଉଜଙ୍କ କଥା
ତୋ' ଆଗେ କହିଦେବି କହିଲି ବୋଲି ଆଜ
କହିଲେ ଯା ଯାରେ ଯାରେ ଦଅରହୋକା ।
ସକାଳୁ ଉଠି ଦାନ୍ତ ନ ଘଷି
ଚୁ' ପିଅନ୍ତି ପଲଙ୍କେ ବସି
ମୁଁ ଟିକେ ମାଗିବାରୁ ହୋଇଲେ ଗାରୁ ଗାରୁ
କହିଲେ ଯା' ଯାରେ ଯା'ରେ ଦଅରହୋକା ।
ଗାଧୋଇ ଗଲୁ ତୁଂ ଯେତେବେଳେ
ଚପଲ ପିନ୍ଧି ଘାଟ ଗଲେ

କହୁଲେ ବୋଉ ଆଗେ କହୁବନ ଟି କେବେ
କହୁଲେ କାନ ମୋଡ଼ି ଛିଣ୍ଡାଇ ଦେବଟି ଏକା ।
ଘର ଭିତରକୁ କାନ୍ଦିକି ଗଲେ
ତେଲ, ବୋତଲଟା ଝୁଣ୍ଟି ପଡ଼ିଲେ
ଅଧିକଲେ ତେଲଥିଲା ସବୁତକ ପଡ଼ିଗଲା
ପାଣି ମଜାଇ ଖରକ ଦେଲେ ସେତିକି ଜାଗାଟା ।
କହିଲା ଦେଖିଣି ସ୍କୁଲ ବେଳ
ଖାଇବାକୁ ଦିଅ ପିଠା ଚଞ୍ଚଳ
ଗାଲକୁ ମୋଶିଚି ଦେଲେ ମନଇଚ୍ଛା ବକି ଗଲେ
କହିଲେ, ଗନ୍ଧଦବ ଆଣୁନ ମାଇପ ଟୋକା ।

❊

ଜୋଛନା—ଦମନା ଦୂର ନୀଳ ଗଗନେ
ଏ ମନ ମାନେନା ମନ ମନ ଲଗନେ
ସମୀରେ ସୁରଭି ଭରା ଆକାଶେ ବିଳାସୀ ତାରା
ଚାହିଁ ଚାହିଁ ଆନମନା ଆଖି ହୁଏ ନିଦହରା
ଗୀତ ସୁରେ ମନ ଝୁରେ, ହଜିଯାଏ ସପନେ ।
ବକୁଳ ଆକୁଳେ ଝୁରେ, ସକାଳେ ଅକାଳେ ଝରେ,
ଝାଉଁଳ ବାସର ଗନ୍ଧସାର ନିଶି ଅଭିସାରେ ।
ମାଳକଇଁ ରହେ ଚାହିଁ ନିତି ନିତି ମଉନେ ।

❊

ଜୀବନେ ସପନ ଯେତେ ସବୁ ସତ ହୁଏନା
ହେଲେ ସେଇ କଥାଟିକ ମନ କାହିଁ ମାନେନା
ମାନିବାକୁ ଚାହେଁନା ।
ମନ ମରୁଭୂମୀ ବନେ, ମଳୟ ଅଭିମାନେ
ରଖିଦେଇ ଯାଏ ଫେରି, ଅନ୍ତରର ବେଦନା
ଅସହାୟ ମୋ' ଆକାଶେ, ମଳିନ ଜହ୍ନ ଚାହିଁ ହସେ
ନିଜକୁ ମୁଁ ସେଇ ହସେ ପାଇ ପୁଣି ପାଏନା··· ।



# ସଂସାର

( ୧୯୭୧ )

ପ୍ରଯୋଜକ—ଗୌର ଘୋଷ, ପାର୍ବତୀ ଘୋଷ
କାହାଣୀ, ସଂଳାପ, ଚିତ୍ରନାଟ୍ୟ—ଶାରଦାପ୍ରସନ୍ନ ନାୟକ
ନିର୍ଦ୍ଦେଶନା— ଗୌର, ପାର୍ବତୀ
ସଂଗୀତ—ଅକ୍ଷୟ ମହାନ୍ତି
କଣ୍ଠସଂଗୀତ—ଅକ୍ଷୟ, ଗୀତା, ତୃପ୍ତି
ଭୂମିକାରେ— ଗୌର, ଚନ୍ଦନା, ଧୀର, ଗୀତା, ଶ୍ୟାମଳେନ୍ଦୁ, ସ୍ୱରୂପ ପ୍ରଭୃତି ।

**କାହାଣୀ** ※

ଓଡ଼ିଶାର ସାଧାରଣ ଗୋଟିଏ ଗାଁ । ଦରିଦ୍ରଗ୍ରସ୍ତ ଧନବଂଧୁର ପାଞ୍ଚଟିପିଲ । ଖାଇବାକୁ ଘରେ ସମ୍ବଳ ନାହିଁ, ବାକ୍ ଶକ୍ତିହୀନ, ସ୍ତ୍ରୀ, ବିବାହଯୋଗ୍ୟା କନ୍ୟା ଦୁର୍ଗା । ସେମାନଙ୍କୁ ନେଇ ଧନବଂଧୁ ଦୈନନ୍ଦିନ ଜୀବନଯାପନ ପ୍ରଣାଳୀ ସ୍ୱଚ୍ଛଳ ହୋଇ ପାରେନାହିଁ । ମଣିଷ ସବୁ ସହିପାରେ ମାତ୍ର କ୍ଷୁଧାଠାରୁ ତା'ର ନିସ୍କୃତି ନାହିଁ । 'ବାରମ୍ବାର ମରୁଡ଼ି, କନ୍ୟା ଧନବଂଧୁର ଅବସ୍ଥା ଆହୁରି ଦୟନୀୟ କରେ । ଫଳରେ ସେ ବାରମ୍ବାର ଗାଁ ସାହୁକାରର ହାରସ୍ଥ ହୁଏ । ଏହିପରି ଏକ ଦୁର୍ଦ୍ଦିନରେ ସରକାରଙ୍କ ତରଫରୁ ଜଳସେଚନର ବ୍ୟବସ୍ଥା ପାଇଁ ଇଞ୍ଜିନିଅର ସୂର୍ଯ୍ୟକାନ୍ତ ସର୍ଭେ କରିବାପାଇଁ କ୍ୟାମ୍ପ ପକାନ୍ତି । ଇଞ୍ଜିନିଅରଙ୍କୁ ଗାଁର ସମସ୍ତ ଲୋକ ହାର୍ଦ୍ଦିକ ଶ୍ରଦ୍ଧା ଓ ସମ୍ମାନ କରନ୍ତି ମାତ୍ର ଏକମାତ୍ର ପ୍ରତାପଶାଳୀ ସରପଞ୍ଚ ମାନଗୋବିନ୍ଦ ରୁଷ୍ଟ ହୁଅନ୍ତି । କାରଣ କେନାଲପଥ ତାଙ୍କ ଜମି ଦେଇ ଗତି କରୁନାହିଁ । ଇଞ୍ଜିନିଅରଙ୍କୁ ଗତିପଥ ପରିବର୍ତ୍ତନ କରି ତାଙ୍କ ଜମି ଦେଇ ନେବାପାଇଁ ପ୍ରଲୋଭିତ କରନ୍ତି । ମାତ୍ର ସମସ୍ତ ଉଦ୍ୟମ ବିଫଳ ହୁଏ । ତା ପରେ ନିଜ କନ୍ୟାର ବିବାହ କଥା ମଧ୍ୟ ସମ୍ଭବପର ହୁଏନାହିଁ । ମାନଗୋବିନ୍ଦଙ୍କ ମନରେ ପ୍ରତିହିଂସା । ସରପଞ୍ଚ ନିର୍ବାଚନରେ ମଧ୍ୟ ସେ ହାରିଯାଆନ୍ତି ।'

ହଠାତ୍ ଧନବଂଧୁର ମୃତ୍ୟୁ ହୁଏ, ଘରେ ଏକମାତ୍ର ସାବାଳିକା କନ୍ୟା ଦୁର୍ଗା । ଦୁର୍ଗା ସାକ୍ଷାତ୍‌ରେ ଦୁର୍ଗା । ସେ କାହାରି ସାହାଯ୍ୟ ନିଏନାହିଁ ।



( 'ସଂସାର'ର ନାୟିକା ଚନ୍ଦନା )

ସୂର୍ଯ୍ୟକାନ୍ତ ତଥା ସ୍କୁଲ ଶିକ୍ଷକ ବିବେକାନନ୍ଦର ସାହାଯ୍ୟ ପ୍ରତ୍ୟାଖ୍ୟାନ କରେ । ନିଜ ଗୋଡ଼ରେ ନିଜେ ଠିଆ ହେବାର ସଙ୍କଳ୍ପ ନିଏ । ମାନଗୋବିନ୍ଦଙ୍କ କନ୍ୟା ଉମା ଦୁର୍ଗାର ପ୍ରାଣର ସଙ୍ଗାତ । ଉମା ସୂର୍ଯ୍ୟକାନ୍ତକୁ ଭଲପାଏ । ଦୁର୍ଗା ମଧ୍ୟ ଭଲପାଏ କିନ୍ତୁ ନିଜେ ଉମା ସେମାନଙ୍କର ଅଲକ୍ଷ୍ୟରେ ଶୁଣିଛି ସୂର୍ଯ୍ୟକାନ୍ତ ଓ ଦୁର୍ଗାର ଅନ୍ତରର କଥା ।

ସୂର୍ଯ୍ୟକାନ୍ତ ଓ ଦୁର୍ଗାର ବିବାହ ସ୍ଥିର । ଗୃହଅଗଣାରେ ଆନନ୍ଦ କଳରବ । ମାନଗୋବିନ୍ଦ ମନରେ ପ୍ରତିହିଂସାରଅଗ୍ନି । ଗୁଣ୍ଡାଲଗାଇ ଦୁର୍ଗାକୁ ବନ୍ଦୀ କରେ । ଅନ୍ୟବାଟରେ ସୂର୍ଯ୍ୟକାନ୍ତକୁ ନିହତ କରିବାପାଇଁ କେନାଲ କାଟିବା ପାଇଁ ଲାଗିଯାଏ । ମାନଗୋବିନ୍ଦଙ୍କ କନ୍ୟା ଉମା ଠିକ୍ ସମୟରେ ବିବାହ ମଣ୍ଡପରେ ସୂର୍ଯ୍ୟକାନ୍ତଙ୍କୁ ଖବର ଦିଏ । କେନାଲ କାଟିବା ସ୍ଥାନରେ ଉତ୍ତ୍ୟକ୍ତ ମାନଗୋବିନ୍ଦ ପାଖରେ ଲକ୍ଷ୍ମୀର କନ୍ୟା ହେଉଛି, ସାକ୍ଷାତ୍ ଜୀବନ୍ତ ଦୁର୍ଗା । ମାନଗୋବିନ୍ଦ ନିଜର ଭୁଲ ବୁଝିପାରି ଅନୁତାପ କରନ୍ତି । ସୂର୍ଯ୍ୟକାନ୍ତ ଓ ଦୁର୍ଗାର ବିବାହ ହୋଇଯାଇଛି ।



* *
*

ଜୀବନରଙ୍ଗ
ପତ୍ରିକାର
ଓଡ଼ିଆ
ଚଳଚ୍ଚିତ୍ର
ବିଶେଷାଙ୍କ
ପ୍ରକାଶନ
ଉପଲକ୍ଷେ
ଆମର
ହାର୍ଦ୍ଦିକ
ଅଭିନନ୍ଦନ



ରାଜରାଣୀ ଫିଲିମ୍ସ

କଟକ

# ସିନେମା କାହିଁକି ?

## ଶରତ ପୂଜାରୀ



ଚଳଚ୍ଚିତ୍ର ବା ସିନେମା ବିଷୟରେ ଆଜିର ପ୍ରତ୍ୟେକ ଶିକ୍ଷିତ ଲୋକ କିଛି ନା କିଛି ଜାଣନ୍ତି । ଖୁବ୍ ନିକଟରେ ନିହାତି ଅଶିକ୍ଷିତ ଲୋକେ ମଧ୍ୟ ଏ ବିଷୟରେ ଜାଣିବାକୁ ଆଗ୍ରହୀ ହେଲେଣି ।

ବିଦେଶୀ ଚଳଚ୍ଚିତ୍ର ଦେଖିବା ଲୋକେ ଭାଷା ନ ଜାଣିଥିଲେ ମଧ୍ୟ ନୃତ୍ୟ-ଚିତ୍ର୍ୟ, ନଗ୍ନତା ଓ କୁତୂହଳ ବଶତଃ ସିନେମା ଦେଖିବାକୁ ଯାଆନ୍ତି । ଯେଉଁ ଚଳଚ୍ଚିତ୍ରରେ ଏହି ସବୁର ଅଭାବ ଥାଏ ତାହା ଆଦୃତ ହୁଏନାହିଁ ।

ଭାରତରେ ଚଳଚ୍ଚିତ୍ର ପ୍ରଦର୍ଶନ ଆରମ୍ଭ ହେବାଠାରୁ ଆଜିପର୍ଯ୍ୟନ୍ତ ପ୍ରାୟ ୫୫ ବର୍ଷ ଧରିରେ ବିଭିନ୍ନ ଯୁଗରେ, ବିଭିନ୍ନ ପରିପ୍ରେକ୍ଷୀରେ ଚଳଚ୍ଚିତ୍ର ପ୍ରସ୍ତୁତ ହୋଇଛି । ସାଧାରଣତଃ କୌତୁହଳ, ଆମୋଦପ୍ରମୋଦ ଓ ଆଶ୍ଚର୍ଯ୍ୟାଭିଭୂତ କରିବାପାଇଁ ପ୍ରତ୍ୟେକ ସମୟରେ ଚଳଚ୍ଚିତ୍ର ତିଆରି ହୋଇଛି । କିନ୍ତୁ ସେଇ ସମୟରେ ବୌଦ୍ଧିକ ଚେତନା, କଳାତ୍ମକ ଅଭିବ୍ୟକ୍ତି, ସମସାମୟିକ ସମସ୍ୟା ଓ ସଂସ୍କୃତିକୁ ନେଇ କେତେଜଣ ପ୍ରଯୋଜକ ଓ ନିର୍ଦ୍ଦେଶକ ଭାରତର ବିଭିନ୍ନ ଭାଷାରେ ଚଳଚ୍ଚିତ୍ର ପ୍ରସ୍ତୁତ କରିବାପାଇଁ ଚେଷ୍ଟା କରିଥାନ୍ତି । ସେଥିରେ ସଫଳତା ହାସଲ କରିବା ସେମାନଙ୍କ ସକାଶେ କଷ୍ଟକର ହୋଇ ପଡ଼ୁଛି, କାରଣ ଅଧିକାଂଶ ଦର୍ଶକ ଅଶିକ୍ଷିତ ଓ ଅଧିକାଂଶ ଶିକ୍ଷିତ ସମାଜ ଚଳଚ୍ଚିତ୍ରର କଳାତ୍ମକ, ବୈଜ୍ଞାନିକ ଓ ବୌଦ୍ଧିକ ଅଭିବ୍ୟକ୍ତିକୁ ଗ୍ରହଣ କରିବାକୁ ପ୍ରସ୍ତୁତ ନୁହନ୍ତି ।

ଓଡ଼ିଆରେ ଯେଉଁ ବଚନଟିଏ ଅଛି—"ଅତି ବେଶ୍ୟା ନାଚ ଯାଆନ୍ତି," ତାରି ଉପରେ ଦୃଷ୍ଟି ଆକର୍ଷଣ କରାଯାଉ । ଏହାର ଅର୍ଥ ଯାହାହେଉନା କାହିଁକି ପ୍ରାୟ ପ୍ରତ୍ୟେକ ଶିକ୍ଷିତ ଲୋକ ଅଭିନୟ, ନୃତ୍ୟ, ସଙ୍ଗୀତ, ଯାତ୍ରା, ଥିଏଟର ଓ ସିନେମା ପ୍ରତି ଏହାକୁ ପ୍ରୟୋଗ କରନ୍ତି । ଏହାକୁ ପ୍ରଶଂସା କରିବା କୁହାଯିବ ନାହିଁ । ବରଂ ଘୃଣା, ତାଚ୍ଛଲ୍ୟ ଓ ଆକ୍ଷେପ କରି ଏହାକୁ ବ୍ୟବହାର କରାଯାଏ । ତେଣୁ ଶିକ୍ଷିତ ଲୋକେ ଏହି ପରିସରକୁ ଆସିବାପାଇଁ ଘୃଣାନ୍ତି

ନାହିଁ । ଆସିଲେ ମଧ୍ଯ ବ୍ୟବସାୟ କମ୍ବା ପେଷାଗ୍ଭବରେ ଏହାକୁ ଗ୍ରହଣ କରନ୍ତି ନାହିଁ । ଅନ୍ୟପକ୍ଷରେ ଜୀବନ ସଂଘାତ, ବଞ୍ଚରହିବାର ପେଟପାଟଣାର ଆକର୍ଷଣ ଓ ସମସ୍ୟା ସେମାନଙ୍କୁ ବୌଦ୍ଧିକ ଚେତନା, କଳାତ୍ମକ ଅଭିବ୍ୟକ୍ତି-ଠାରୁ ଧୀରେ ଧୀରେ ଦୂରକୁ ନେଇଯାଏ । ସେମାନେ ବ୍ୟବସାୟୀ ଓ ସଫଳ ହେବା ପାଇଁ ବୃଥା ବ୍ରକଚକ୍ୟ, ନଗ୍ନତା ଓ ଯୌନଉତ୍ତେଜକ ଅବାସ୍ତବ, ଅତିରଞ୍ଜିତ ଯାତ୍ରା, ଥିଏଟର, ନାଚଗୀତ ଓ ଚଳଚିତ୍ର କୋଳକୁ ଆଉଜି ପଡ଼ନ୍ତି । ଏତିକି ହେଲା ବର୍ତ୍ତମାନର କଳାତ୍ମକ ଅଭିବ୍ୟକ୍ତିର କାହାଣୀ । ଗୋଟିଏ ଦୃଷ୍ଟିରେ ତାଙ୍କମାନଙ୍କ ପକ୍ଷରେ ଏହା 'ସଫଳ' ହେବାର ଏକ ସହଜ ପନ୍ଥା ହୋଇଯାଏ । ବର୍ତ୍ତମାନ ଭାରତୀୟ ଚଳଚିତ୍ରର ( ବିଶେଷରେ ହିନ୍ଦି ଚଳଚିତ୍ରର ) ଅବସ୍ଥା ହିଁ ସେଇଆ ।

କିନ୍ତୁ ଏହାର ଦୃଷ୍ଟାନ୍ତ ଆଜିର ସମାଜର ଯେ କୌଣସି ପେଷା, ବୃତ୍ତି ଓ ବ୍ୟବସାୟରେ ମଧ୍ୟ ଦେଖାଯାଏ । ତେଣୁ ଏହାଯେ କେବଳ ଯାତ୍ରା, ଥିଏଟର ଓ ସିନେମାରେ ହେଉଛି ତାହା ନୁହେଁ । ରାଜନୈତିକ ନେତା, ଶିକ୍ଷକ, ଡାକ୍ତର, ଇଞ୍ଜିନିୟର, କଣ୍ଟ୍ରାକ୍ଟର, ବ୍ୟବସାୟୀ, କିରାଣୀ ଓ ଅଫିସର ସମସ୍ତେ ସଫଳ ହେବାକୁ ଯେଉଁସବୁ ସହଜ ପନ୍ଥା ଅବଲମ୍ବନ କରନ୍ତି ତାହାହିଁ ଏହି କଳାକାର-ମାନଙ୍କୁ ଧରିବାକୁ ପଡ଼େ । ଏଠି ମନେରଖିବାକୁ ହେବ ଯେ କଳାକାର ପ୍ରଥମରୁ କିନ୍ତୁ ପଇସା ଓ ସଫଳତାର ସ୍ୱପ୍ନ ଦେଖି ନଥାଏ । ସେ ସଂଘର୍ଷ କରିବାକୁ ହିଁ ଆସିଥାଏ । ସାମାଜିକ ଓ ମାନସିକ ସଂଘର୍ଷ ସମ୍ପର୍କରେ ନଆସିଲେ ସେ କେବେ-ହେଲେ କଳାକାର ହୁଏନାହିଁ ଏବଂ ଏହି ସମାଜ ଓ ମନର ସ୍ଥିତି ତା'ର କଳାର ସୃଜନୀରେ ପ୍ରକାଶ କରିବାକୁ ସେ ବ୍ୟସ୍ତ ହୋଇପଡ଼େ ବୋଲି ସେ କଳାକାରର ସଂଜ୍ଞା ବହନ କରେ । କଳାର ପ୍ରଭାବ ସମାଜ ଉପରେ ପ୍ରଥମେ ପଡ଼େନାହିଁ – ସମାଜର ସ୍ଥିତି ଓ ବିଭିନ୍ନ ଦୃଷ୍ଟିକୋଣ ହିଁ କଳା ଓ ଏହା ପ୍ରଥମେ ସୃଷ୍ଟି ହୁଏ । ପରେ ଏହାର ପ୍ରଭାବ ସମାଜ ଉପରେ ପଡ଼େ ।

ଆଜିକାର ସମସ୍ୟାବହୁଳ ସମାଜରେ ଶ୍ରମିକ, ଅଧସ୍ତନ କର୍ମଚାରୀ ଓ ଛାତ୍ରମାନଙ୍କୁ ଉତ୍ତେଜନା, ଆନ୍ଦୋଳନ ଓ ବିଶୃଙ୍ଖଳା ପାଇଁ ଦାୟୀ କରାଯାଏ । ଏ ସବୁର ଆଲୋଚନାବେଳେ ସିନେମା ଥିଏଟରର କୁପ୍ରଭାବ ବିଷୟରେ ସାଧାରଣତଃ ଅତି ହୀନମନ୍ତବ୍ୟ ପ୍ରକାଶ କରାଯାଏ । ସତେ ଯେପରି ଏଇ ୫୦ ବର୍ଷର ସିନେମା ଇତିହାସ ଭିତରେ ଆମର ଶ୍ରମିକ, ଅଧସ୍ତନ କର୍ମଚାରୀ ଓ ଛାତ୍ର-ମାନେ ହିଁ କେବଳ ପ୍ରଭାବିତ ହେଲେ ଓ ଅନ୍ୟମାନେ ପ୍ରଭାବିତ ହୋଇନାହାଁନ୍ତି । ଆଉ ଟିକିଏ ଦୂରଦୃଷ୍ଟି ଦେଲେ ଦେଖାଯିବ ଯେ ଯାନ୍ତ୍ରିକ ସଭ୍ୟତା ଓ ଶିଳ୍ପ

ବିପ୍ଳବର ବିକାଶ ପରେ ହିଁ ଆମ ସମାଜରେ ଶ୍ରମିକ, ଅଧସ୍ତନ କର୍ମଚାରୀ ଓ ଛାତ୍ରମାନଙ୍କର ସଂଖ୍ୟା ବେଶୀ ହୋଇଛି । ଠିକ୍ ଏହିସମୟରେ ହିଁ ଚଳଚ୍ଚିତ୍ର ଶିଳ୍ପର ବିକାଶ ହୋଇଛି ଓ ଧୀରେ ଧୀରେ ସାମାଜିକ ବିଶୃଙ୍ଖଳା ସହିତ ତାଳଦେଇ ଚଳଚ୍ଚିତ୍ର ଶିଳ୍ପ ଗୃହଆଡ଼େ ବିସ୍ତୃତି ଲାଭ କରୁଛି । ଆଶ୍ଚର୍ଯ୍ୟର କଥା, କୌଣସି ଦେଶରେ କିନ୍ତୁ ଚଳଚ୍ଚିତ୍ର ଶିଳ୍ପ ଶ୍ରମିକ, ଅଧସ୍ତନ କର୍ମଚାରୀ ବା ଛାତ୍ରମାନଙ୍କ ଦ୍ୱାରା ନିୟନ୍ତ୍ରିତ ହେଉନାହିଁ—ହେଉଛି ଧନୀକ, ବୟସ୍କ ଓ ପ୍ରଭାବଶାଳୀ ବ୍ୟକ୍ତିଙ୍କ ଦ୍ୱାରା । ତେଣୁ ଆଜିର ସିନେମା ସମାଜର ଛାୟା ନୁହେଁ—ଏକ ପଳାୟନ-ପନ୍ଥୀର ସ୍ଳୋଗାନ ।

ଶ୍ରମ ଓ ଶ୍ରମିକ ଯେପରି ଅବିଚ୍ଛେଦ୍ୟ, ଶିକ୍ଷା ଓ ଛାତ୍ର ସେପରି ଅବିଚ୍ଛେଦ୍ୟ । କଳା ଓ କଳାକାର ମଧ୍ୟ ସେହିପରି ଅବିଚ୍ଛେଦ୍ୟ । ଉପଯୁକ୍ତ ଶ୍ରମର ଅଭାବରେ ବିଶୃଙ୍ଖଳା ଯେପରି ଦେଖାଯାଏ, ଉପଯୁକ୍ତ ଶିକ୍ଷାର ଅଭାବରେ ହିଁ ଛାତ୍ର ବିଶୃଙ୍ଖଳା ଓ କଳାର ଅଭାବରେ ହିଁ କଳାକାରର ସମସ୍ୟା ଦେଖାଯାଏ । ଏହି ସମସ୍ୟା ହିଁ ସମାଜରେ କଳାତ୍ମକ ମୂଲ୍ୟବୋଧର ଅଭାବ । ପ୍ରତ୍ୟେକ ବ୍ୟକ୍ତିବିଶେଷ ମନରେ କଳାତ୍ମକ ମୂଲ୍ୟବୋଧର ପରିପ୍ରକାଶ ସୁପ୍ତ ଅବସ୍ଥାରେ ଥାଏ । ଏହାକୁ ଜାଗ୍ରତ ଓ ସଚେତନ କରିବାର ଯେଉଁ କ୍ରିୟା ବା ପ୍ରକ୍ରିୟା ଦରକାର ସେ ବିଷୟରେ ସାମାଜିକ ସ୍ଥାଣୁଭାବ ହିଁ ବିଶୃଙ୍ଖଳାର ମୂଳ ଉତ୍ସ । ଏଠି ମନେରଖିବାକୁ ହେବ ଯେ ଶିକ୍ଷାର ମୂଳଲକ୍ଷ୍ୟ ଯେପରି ବୌଦ୍ଧିକ ଚେତନାକୁ ଉଦ୍‌ବୁଦ୍ଧ କରିବା—ସେହିପରି କଳାତ୍ମକ ସୃଜନଶକ୍ତିକୁ ମଧ୍ୟ ସଚେତନ କରିବା । ଦୁର୍ଭାଗ୍ୟର କଥା, ଆମ ଦେଶରେ ଏହା ଶିକ୍ଷାର କୌଣସି ପର୍ଯ୍ୟାୟଭୁକ୍ତ ହୋଇନାହିଁ ।

ତେଣୁ ଅଭିନୟ, ଗୀତ, ନାଚ, ଯାତ୍ରା, ଥିଏଟର ଓ ସିନେମା ଯେଉଁ ସାମାଜିକ ସ୍ତରରେ ଆଜିପର୍ଯ୍ୟନ୍ତ ରହିଆସିଛି ତାକୁ ଆମକୁ ଭିନ୍ନ ଦୃଷ୍ଟି-କୋଣରେ ଦେଖିବାକୁ ପଡ଼ିବ; ନଚେତ୍ ଏହା ଆମକୁ ଏକ ବିରାଟ ବିଶୃଙ୍ଖଳତା ଭିତରକୁ ଟାଣିନେବ; ଏଥିରେ ସନ୍ଦେହ ନାହିଁ । ଯେକୌଣସି କାରଣରୁ ସିନେମା ଆଧୁନିକ ଜୀବନପ୍ରବାହରେ ପାଣି ଓ ପବନପରି ମିଶି ରହିଛି । ଏହାକୁ ଦୂରକରିବା ଓ ଜୀବନଠାରୁ ବିଚ୍ଛେଦ କରିବା ସମ୍ଭବ ନୁହେଁ । ଏହା ସମସ୍ତେ ଅନୁଭବ କରିବାକୁ ବାଧ୍ୟ । କିନ୍ତୁ 'ଦାୟିତ୍ୱହୀନତା'—ଯାହା ଆମସମାଜର ଏକ ଅତ୍ୟାଧୁନିକ "ସଂକ୍ରାମକ" ରୋଗ, ତାହାଦ୍ୱାରା ଆମେ ସମସ୍ତେ ସଂକ୍ରମିତ । ଏହା ଯାନ୍ତ୍ରିକଯୁଗରେ ଆମକୁ ସଫଳତାଆଡ଼କୁ ଆଗେଇ ନେଉଛି ବୋଲି ଆମର ଧାରଣା । ସହଜରେ ବିନା ପରିଶ୍ରମରେ 'ଦୁଇପଇସା' ଲାଭ, ଆୟାସ,

ଆମ, ବୈଜ୍ଞାନିକ ସଭ୍ୟତା ପ୍ରଭାବରେ ଆଧ୍ୟାତ୍ମିକ ଭାବରୁ ଦୂରେଇଯିବା ଆମକୁ ଅମଣିଜଠାରୁ ଓ ପ୍ରକୃତିଠାରୁ ଦୂରେଇନେଇ ଚାଲିଛି । ତେଣୁ ସବୁ ଦୋଷ "ମାର୍, ମର୍ ଭଣ୍ଡାରିଆକୁ ମାର୍" ଉପଖ୍ୟାନ ପରି ଆମେ ଦୋଷ ଦେଉ ଶ୍ରମିକ, ଅଧ୍ୟାପକ କର୍ମଚାରୀ ଓ ଛାତ୍ରମାନଙ୍କ ଉପରେ । ଭଲକରି ନିଜ ଭିତରକୁ ଦେଖିବାକୁ ଚେଷ୍ଟାକଲେ ମନେହୁଏ ପିତା ହୋଇ, ପତ୍ନୀ, ପୁତ୍ର, ଭ୍ରାତା, ବନ୍ଧୁ ହୋଇ ଆମର କର୍ତ୍ତବ୍ୟ କ'ଣ ଆମେ ପାରିବାରିକ ଜୀବନରେ ସବୁବେଳେ କରି-ଚାଲିଛୁ ? ପାରିବାରିକ ଜୀବନ ଭିତରେ ବନ୍ଧନ ଛିନ୍ନ ହୋଇ ସାରିଲାଣି । ଆମେ ଗୋଟିଏ ଗୋଟିଏ ବଦ୍ଧ ସ୍ୱାର୍ଥାନ୍ଧ ଜୀବ—ଅଚ୍ଛା; ଭାବଲେ ଏହି ବୌଦ୍ଧିକ ଚେତନାକୁ ଆମର କଳାତ୍ମକ ପରିପ୍ରକାଶ (ଚଳଚ୍ଚିତ୍ର) ମଧ୍ୟରେ ସଞ୍ଜିବିତ କଲେ ଶିକ୍ଷିତ ସମାଜ କ'ଣ ଗ୍ରହଣ କରିବେ ? ତେଣୁ ସିନେମାରେ ଆମୋଦ ଓ ପଳାୟନପନ୍ଥୀ ପରିପ୍ରକାଶ ବେଶୀ ଦେଖିବାକୁ ମିଳୁଛି । ଏଥିପାଇଁ ସିନେମା ଶିଳ୍ପର ପ୍ରଯୋଜକ, ନିର୍ଦ୍ଦେଶକ ଓ କଳାକାରର ଯେତେ ଦୋଷ ନୁହେଁ ଏହା ଆମର ଦୋଷ । —ଯେଉଁମାନଙ୍କର ଏହି ଶିଳ୍ପ ସହିତ କୌଣସି ସମ୍ପର୍କ ନାହିଁ, କାରଣ ଆମେ କେବଳ ଆମୋଦିତ ଓ ପ୍ରମୋଦିତ ହେବାକୁ ଚାହୁଁଛୁ—ଓ ଚାହୁଁଛୁ ତା'ର କୌଣସି ସୀମା ଓ ରୁଚି ନରହୁ । ଆମେ ସୀମା ଟପିଯିବାକୁ ଚାହୁଁ । ଆମେ ପ୍ରତ୍ୟେକ ମୁହୂର୍ତ୍ତରେ ରୁଚି ବଦଳାଇବାକୁ ଚାହୁଁ । ଏହାହିଁ ଆମକୁ ବୈଜ୍ଞାନିକ ଯାନ୍ତ୍ରିକ ସଭ୍ୟତା ଶିକ୍ଷା ଦେଇଛି ।

ତେବେ କ'ଣ ଆମେ ବୈଜ୍ଞାନିକ ଅଭିବୃଦ୍ଧିରୁ ଦୂରେଇ ଯିବା ? ଯାନ୍ତ୍ରିକ ସଭ୍ୟତାକୁ ଅସ୍ୱୀକାର କରିବା ? ଏହିଠାରେହିଁ ବୌଦ୍ଧିକ ଚେତନା ଓ କଳାତ୍ମକ ସୃଜନୀର ପ୍ରଶ୍ନ ଆମ ମନକୁ ଆସେ । ଜଣେ ଭାରତୀୟ ଦାର୍ଶନିକ କୃଷ୍ଣମୂର୍ତ୍ତିଙ୍କ ମତରେ ବୁଝାମଣା (understanding), ଜ୍ଞାନ ( knowledge ) ଠାରୁ ବେଶୀ ତାତ୍ପର୍ଯ୍ୟପୂର୍ଣ୍ଣ ।

ଯେକୌଣସି ମତରେ ହେଉ ଏହା ନିଶ୍ଚୟ ସ୍ୱୀକାର୍ଯ୍ୟ ଯେ, ସିନେମା ଆମୋଦପ୍ରମୋଦ ପର୍ଯ୍ୟାୟଭୁକ୍ତ । ସିନେମା ଦେଖିବା କହିଲେ ଏକ ଅନ୍ୟାୟ କାର୍ଯ୍ୟ, ଦାୟିତ୍ୱହୀନତା, ଆମୋଦପ୍ରମୋଦ ଓ ଉଚ୍ଛୃଙ୍ଖଳତାର ଅର୍ଥ ସୂଚନା ଦିଏ । ଯେମିତି—'ମଦ ପିଇବା, ବେଶ୍ୟାସକ୍ତ ହେବା' ଇତ୍ୟାଦି । ଏଠାରେ ମନେ-ରଖିବା ଉଚିତ ଯେ, ଅନେକ ଶିକ୍ଷିତ ବ୍ୟକ୍ତି, ବୟସ୍କ ପ୍ରତିଷ୍ଠିତ ଲୋକ ସିନେମାକୁ ଏହି ପର୍ଯ୍ୟାୟଭୁକ୍ତ କରନ୍ତି । ଏପରିକି ସିନେମାର କଳାକାର ଓ କଳାକୁଶଳୀ-ମାନଙ୍କୁ ଅତି ହେୟ ମନେକରନ୍ତି । ଭାରତରେ ଏହାର ଦୃଷ୍ଟାନ୍ତ ଯେତେ ନାହିଁ, ଓଡ଼ିଶାରେ ଏହାର ଦୃଷ୍ଟାନ୍ତ ଅତିମାତ୍ରାରେ ଦେଖାଯାଏ । ଶତକଡ଼ା କେତେଜଣ

ଦର୍ଶକ ସିନେମାକୁ ଏ ଦୃଷ୍ଟିରେ ନ ଦେଖନ୍ତୁ—ସେମାନେ ଗ୍ରନ୍ଥରେ ହାତଦେଇ କହିପାରିବେ କି ? ଏପରିକି କେତେକ ଖୁବ୍ ଅତ୍ୟାଧୁନିକ ଶିକ୍ଷିତ ଯୁବକଯୁବତୀ-ଙ୍କର ମଧ୍ୟ ଏହି ଧାରଣା । କିନ୍ତୁ ଏତେକିଛି ହେବା ସତ୍ତ୍ୱେ ଗତ ୫୫ ବର୍ଷ ମଧ୍ୟରେ ସିନେମା ଆମ ସାମାଜିକ ଜୀବନରେ ଯେପରି ଓତପ୍ରୋତ ଭାବରେ ଗୁଡ଼େଇ ହୋଇଗଲାଣି, ବର୍ତ୍ତମାନ ସେହି ବୟସ୍କଲୋକେ ସାମାଜିକ ଓ ପାରିବାରିକ ପରିସରରେ ଏହାକୁ ଅପରିହାର୍ଯ୍ୟ ମନେକଲେଣି । ତେବେ ଯେଉଁ ସିନେମା ଆମେ ସାଧାରଣରେ ଦେଖୁ, ଯାହାବିଷୟରେ ପ୍ରକାଶ୍ୟଭାବରେ ଆଲୋଚନା କରୁ ତାହା କେବେହେଲେ ଆମ ସାମାଜିକ ଓ ବୌଦ୍ଧିକ ଚେତନାକୁ ଉଦ୍‌ବୁଦ୍ଧ କରୁନାହିଁ । ଏହା ଆମେସମସ୍ତେ ସ୍ୱୀକାର କରିବା । ତଥାପି ଏହା ସେହି ଆମୋଦପ୍ରମୋଦ ପର୍ଯ୍ୟାୟରେ ରହିଛି । ମୂଳରୁ କହିଛି ଅଶିକ୍ଷିତ ଓ ଅର୍ଦ୍ଧଶିକ୍ଷିତ ଦର୍ଶକମାନଙ୍କପାଇଁ ଏହା ହୋଇଛି ଓ ହୋଇ ଆସିଛି । ବର୍ତ୍ତମାନ ଯେତେବେଳେ ସାମାଜିକ ଚେତନା ଭିତରେ ଗାଁ ଗାଁରେ ସ୍କୁଲ ଓ ପ୍ରତ୍ୟେକ ସହରରେ କଲେଜର ମୂଳଦୁଆ ପଡ଼ିଲାଣି, ସେତେବେଳେ ପ୍ରତ୍ୟେକ, ରାଜ୍ୟସ୍ତରୀୟ ଭାଷା ଓ ସଂସ୍କୃତିର ମୂଳଦୁଆ ସୁଦୃଢ଼ କରିବାପାଇଁ ଆହ୍ୱାନ ଶୁଣି-ବାକୁ ମିଳୁଛି, ଠିକ୍ ସେହି ସମୟରେ ସାମାଜିକ ବିଶୃଙ୍ଖଳା ଓ ଗୃହ ବିଶୃଙ୍ଖଳାର କାରଣ ଯଦି ଖାଲି ସିନେମା ହୁଏ ତେବେ ଏହାକୁ ନିଶ୍ଚୟ ମୂଳୋତ୍ପାଟନ କରିବା ଉଚିତ । ତେବେ— ଏହା କ'ଣ ସତ ? ଏହା କ'ଣ ସମ୍ଭବ ??

ସମ୍ଭବ କେବେ ନୁହେଁ । ତାହା ପ୍ରମାଣିତ କରିଛି ଚଳଚ୍ଚିତ୍ରର ୭୦ । ୮୦ ବର୍ଷର ଇତିହାସ । ଆଜିକୁ ଅନେକ ବର୍ଷ ପୂର୍ବେ ଯାନ୍ତ୍ରିକଯୁଗର ସଫଳତା ପୃଥିବୀପୃଷ୍ଠରେ ନିର୍ଦ୍ଦେଶିତ ହେବାପରେ ଚଳଚ୍ଚିତ୍ର ଏକ ସମୟରେ ପାଞ୍ଚୋଟି ଦେଶରେ ଉଦ୍‌ଭାବିତ ହେଲା । ସେହି ଦିନଠାରୁ ସାହିତ୍ୟ ଓ କଳାର ଜୀବନ ସହିତ ସମବିବର୍ତ୍ତନଧାରା ରଖିବାପରି ସିନେମା ମଧ୍ୟ ସମସାମୟିକ ଜୀବନ ସାହିତ୍ୟ ଓ କଳାପ୍ରଭାବରେ ପ୍ରଭାବିତ ହୋଇଆସିଛି । ଫ୍ରାନ୍ସ, ଜର୍ମାନୀ, ବ୍ରିଟେନ୍, ଆମେରିକା, ଇଟାଲୀ, ଚେକୋସ୍ଲୋଭାକିଆ, ହଙ୍ଗେରୀ, ରୁଷିଆ, ପୋଲାଣ୍ଡ, ଜାପାନ ପ୍ରଭୃତି ଦେଶରେ ଏହି ବିବର୍ତ୍ତନ ବେଶ୍ ସୁସ୍ପଷ୍ଟଭାବରେ ଜଣାପଡ଼େ । ବିଭିନ୍ନ ସମୟରେ ଯେତେ କିଛି କଳାର ଭାବ, ଭଙ୍ଗୀ ଓ ବାଦ୍ (ism) ପୃଥିବୀରେ ଦେଖାଦେଇଛି ତାହାର ପ୍ରଭାବ ଚଳଚ୍ଚିତ୍ର ଉପରେ ପଡ଼ିଛି । Existencialism, Neorealism, Realism, Dadaism, Romanticism, Surrealism, Impressionism, Classism, Pop ଓ op art,

modernism, rock & roll, twist, Beatle Cult, Hippy Cult ପ୍ରଭୃତି ଚଳଚିତ୍ର ଉପରେ ପ୍ରଭାବ ପକାଇଛି ।

ସାହିତ୍ୟ ଓ ସୂକ୍ଷ୍ମକଳା (ଚିତ୍ର-Painting) ପରି ଚଳଚିତ୍ର ଏକ କଳାର ମାଧ୍ୟମ । କିନ୍ତୁ ଏହାର ବିଶେଷତ୍ୱ ଏତିକି ଯେ ଏହା "ସମଷ୍ଟିଗତ କଳା ।" ଚଳଚିତ୍ର ପ୍ରାୟ ସମସ୍ତ ସୂକ୍ଷ୍ମକଳା ଓ କଳାର ବିଭାଗକୁ ନେଇ ଆତ୍ମପ୍ରକାଶକରେ । ଉଦାହରଣସ୍ୱରୂପ ଦେଖନ୍ତୁ—ସାହିତ୍ୟ, ଉପନ୍ୟାସ, କବିତା, କ୍ଷୁଦ୍ରଗଳ୍ପ ଓ ନାଟକକୁ ଆଶ୍ରୟକରି ଚଳଚିତ୍ରର କଳ୍ପନା କରାଯାଏ । ସାହିତ୍ୟକର କୃତିଉପରେ ଭିତ୍ତିକରି ନିର୍ଦ୍ଦେଶକ ବା ପ୍ରଯୋଜକ (Director ବା Producer) ଚଳଚିତ୍ରର କଳ୍ପନା କରନ୍ତି; ଏହାର କଳ୍ପନା ଲିଖିତ ଆକାରରେ Screenplay (ଚିତ୍ରନାଟ୍ୟ) ହେବାପରେ ଜଣେ ଚିତ୍ରକରର (ସାଧାରଣତଃ ଜଣେ Commercial Aartist) ସାହଚର୍ଯ୍ୟ ପାଏ, ଯେଉଁଠାରେ Art Directorର ସାହାଯ୍ୟ ଦରକାର ପଡ଼େ । ଚଳଚିତ୍ରରେ ନାଚଗୀତର ସ୍ଥାନ ନଥିଲେ ମଧ୍ୟ ବିଶେଷରେ ଭାରତୀୟ (ହିନ୍ଦି ଓ ଦକ୍ଷିଣଭାରତୀୟ ଚଳଚିତ୍ର) ଚଳଚିତ୍ରରେ (Chereography) ନର୍ତ୍ତକୀ, ଗାୟିକା ବା ସଙ୍ଗୀତଜ୍ଞଙ୍କ ଆଶ୍ରୟ ନେବାକୁପଡ଼େ । ସାଧାରଣତଃ ସଙ୍ଗୀତଜ୍ଞଙ୍କ ଆଶ୍ରୟ ସିନେମାରେ ସବୁଦେଶରେ ଦେଖାଯାଏ । ଏହି ନିର୍ଦ୍ଦେଶକ, ପୃଷ୍ଠପଟ୍ଟ ଗାୟକଗାୟିକା ଓ ଅର୍କେଷ୍ଟ୍ରା କମ୍ପୋଜର ସାଧାରଣତଃ ପୃଷ୍ଠପଟ୍ଟ ସଙ୍ଗୀତ ଓ ଗୀତ ସଂଯୋଗ କରିଥାଆନ୍ତି । ଏହି କଳାକାର ଗୋଷ୍ଠୀଙ୍କ ଛଡ଼ା ଅଭିନେତା ଅଭିନେତ୍ରୀ ଏକ ବିଶେଷ ରୂପରେ ନିଜ ନିଜ କଳାର ସମ୍ପୂର୍ଣ୍ଣପ୍ରକାଶ ଚଳଚ୍ଚିତ୍ରରେ ସଂଯୋଗ କରିଥାଆନ୍ତି । ଏହାପରେ ବିଶେଷଭାବରେ ତିନୋଟି ବୈଷୟିକ ବିଭାଗ ଚଳଚିତ୍ରକୁ ସାହାଯ୍ୟ କରନ୍ତି । ଏମାନେ ସମସ୍ତେ ବୈଜ୍ଞାନିକ, କିନ୍ତୁ ସୂକ୍ଷ୍ମଭାବରେ କହିବାକୁଗଲେ ଏମାନେ ମଧ୍ୟ ଜଣେ ଜଣେ କଳାକାର । କାରଣ ଚିତ୍ରଗ୍ରାହକ (Photographer, Cameraman, Cinematographer), ଶବ୍ଦ ଯନ୍ତ୍ରୀ (Sound Engineer ଓ Recordist) ଏବଂ ସମ୍ପାଦକ (Film Editor) ଜଣେ ଜଣେ ବ୍ୟକ୍ତି ଓ ଏମାନେ Camera, Recording machine, କଇଁଚି, Gum (ଗମ୍) ସଂପାଦନା ଯନ୍ତ୍ର (Moviola) ସାହାଯ୍ୟରେ ଚଳଚିତ୍ରକୁ ବିଶେଷଭାବରେ ବୈଜ୍ଞାନିକ ଉପାୟରେ ରୂପଦିଅନ୍ତି । ଏମାନେ ସମସ୍ତେ ବୈଷୟିକ ଶିକ୍ଷା ପାଇଥାଆନ୍ତି, କିନ୍ତୁ ଏମାନଙ୍କର ବୈଜ୍ଞାନିକ ଜ୍ଞାନ କେବଳ ଏମାନଙ୍କୁ ବୈଷୟିକ ଶିଳ୍ପୀ ଭାବରେ ପରିଚୟ ନଦେଇ ଜଣେ ଜଣେ ଦକ୍ଷ କଳାକାର ରୂପେ ପରିଚୟ ଦିଏ ।

ଏତେଜଣ କଳାକାରଙ୍କର ସମଷ୍ଟି ଏବଂ ଏମାନଙ୍କର କଳାତ୍ମକ ବ୍ୟକ୍ତିତ୍ୱ ପ୍ରକାଶକୁ ଗୋଟିଏ ଛନ୍ଦ ଓ ତାଳରେ ବାନ୍ଧି ରଖିବା ଓ ନିଜସ୍ୱ ପ୍ରତିଭାର ପରିଚୟ ଦେବା—ଜଣେ ନିର୍ଦ୍ଦେଶକ ଭାଗ୍ୟରେ ଜୁଟେ । ତେଣୁ ଚଳଚ୍ଚିତ୍ର ନିର୍ଦ୍ଦେଶକ ହିଁ ସବୁ ଭାବରେ ଓ ସ୍ୱଭାବରେ ଏକ ସୃଷ୍ଟିକର୍ତ୍ତା ଓ ଚଳଚ୍ଚିତ୍ରର କଳାତ୍ମକ ସଫଳତା ପାଇଁ ଦାୟୀ । ବର୍ତ୍ତମାନ ଭାବିଦେଖିଲେ ଚଳଚ୍ଚିତ୍ର ଏହି ଆଧୁନିକ ଯୁଗରେ କିପରି ଏକ 'ସମଷ୍ଟିଗତ କଳା' ଓ କେତେ ସୁଦୂରପ୍ରସାରି କଳାର ଅଭିବ୍ୟଞ୍ଜକ । ବହୁ କଳାକାରଙ୍କୁ, ବହୁ କଳା, ସଂସ୍କୃତି ଓ ଚିନ୍ତାଧାରାକୁ ଯେଉଁ ଚଳଚ୍ଚିତ୍ର ବାନ୍ଧିରଖେ ତାକୁ ଭାରତବର୍ଷରେ ଏକ ଆମୋଦପ୍ରମୋଦ ପର୍ଯ୍ୟାୟରେ ରଖିବା କେଣେ ଉଚିତ୍ ହେଉଛି । ଓଡ଼ିଆ ଚଳଚ୍ଚିତ୍ର ଶିଳ୍ପର ସ୍ଥିତି ଏ ବିଷୟରେ ନିଜକୁ ବାନ୍ଧି ଭଲ ।

ବର୍ତ୍ତମାନ ଦେଖାଯାଉ ସିନେମାର ପ୍ରଭାବ । ସିନେମା ଏମିତି ଏକ କଳା ଯାହା ଦୃଶ୍ୟ ଓ ଶ୍ରାବ୍ୟଯୁକ୍ତ । ରାଜନୈତିକ ନେତାଙ୍କ ଭାଷାସମସ୍ୟା ଯେତେବେଳେ ପ୍ରଦେଶ ପ୍ରଦେଶ ଭିତରେ ହାଣକାଟ ସୃଷ୍ଟି କରୁଛି—ସେତେବେଳେ ଘରେଘରେ ୫।୭ ବର୍ଷର ପିଲାଙ୍କର Twist ନାଚ; ଭାରତର ରାସ୍ତାଘାଟରେ, ଗାଁର ଗଳିକନ୍ଦିରେ "ଝୁମୁକା ଗିରେରେ" ସଙ୍ଗୀତର ମଧୁର ମୂର୍ଚ୍ଛନା ଶୁଣାଯାଉଛି । କେହି କେବେହେଲେ ଭାଷା ଓ ସଂସ୍କୃତି ବିଷୟରେ ଏଇ ପ୍ରଭାବକୁ ଚିନ୍ତା କରନ୍ତି ନାହିଁ । ଅଲକ୍ଷ୍ୟରେ ସିନେମାର ଏହି ପ୍ରଭାବକୁ କେହି ଅସ୍ୱୀକାର କରିପାରିବେ ନାହିଁ । କିନ୍ତୁ ଏହାସବୁ ଆମୋଦପ୍ରମୋଦ ପର୍ଯ୍ୟ-ବସିତ ଓ ସଂସ୍କୃତିବିହୀନ ପ୍ରଭାବ । ପାଶ୍ଚାତ୍ୟ ଦେଶରେ ଖୁବ୍‌ବେଶୀ ଅପ୍ରାପ୍ତବୟସ୍କ ବାଳକ ବାଳିକାଙ୍କର ମଦ୍ୟପାନ ଓ ଅସାମାଜିକ କାର୍ଯ୍ୟରେ ଲିପ୍ତରହିବା ମୂଳରେ ତାଙ୍କ ଦେଶର Suspense thirller ଓ ଅବାଧ ଆମୋଦପ୍ରମୋଦ-ଦାୟକ ସମାଜିକ କେନ୍ଦ୍ରଗୁଡ଼ିକ ହିଁ ବେଶୀ ଦାୟୀ । କିନ୍ତୁ କେବଳ ସିନେମା ଯେ ଦାୟୀ ଏହା କୌଣସି ସମାଜବିତ୍ ବା ମନସ୍ତାତ୍ତ୍ୱିକ ବିଶାରଦ କହି ନାହାନ୍ତି । ଆମ ଦେଶର ନେତାଏ ସିନେମାକୁ ଏଥିପାଇଁ ଦୋଷଦେବା ମାନେ, ସେମାନେ ନିଜର ସାମାଜିକ ଓ ଦୈନନ୍ଦିନ ବ୍ୟବହାର ଉପରେ ଅନ୍ୟଲୋକଙ୍କ ଲକ୍ଷ୍ୟ ନ ପକାଇବାର ଚେଷ୍ଟା । ସେମାନେ ସମସ୍ତେ ଜଣେ ଜଣେ ଆତ୍ମପ୍ରବଞ୍ଚକ ।

ଭାରତରେ ସିନେମା ଯେଉଁ ସ୍ତରରେ ଅଛି ଓ ଏହାର ଆଲୋଚନା ସାଧାରଣ ଭାବରେ ଯେପରି ହୁଏ ତାହା କେବଳ ବ୍ୟବସାୟଭିତ୍ତିକ । କିଏ କେତେ ଲାଭ ପାଇଲା—କେତେ ଟଙ୍କା ଖର୍ଚ୍ଚହେଲା ଓ କାହାର କେତୋଟି

ମଟର ଗାଡ଼ି, କୋଠା ଓ ଅଳଙ୍କାର ବିଷୟରେ ଲୋକ, ପରିବାର, ବ୍ୟବସାୟୀ ସମସ୍ତେ ଚିନ୍ତିତ । ଯେ କ୍ଷତି ସହେ ସେ ଦାଣ୍ଡର ଭିଖାରି ହୁଏ । ଅଳ୍ପବୟସରେ ରକ୍ତଚାପ ରୋଗରେ ମୃତ୍ୟୁ ବରଣ କରେ ବା ମଦ୍ୟପ ହୋଇଯାଏ । ଅବଶ୍ୟ ବ୍ୟବସାୟୀଗୋଷ୍ଠୀଙ୍କ ହାତରେ ଏ ଶିଳ୍ପକୁ ଛାଡ଼ିଦେଲେ ସେମାନେ Share marketରେ ରୁଲ୍ ଡାଲି ବେପାର କିମ୍ବା Export Import Business ପରି ଅନ୍ୟ କୌଣସି ଉପାୟରେ ଏହାକୁ ବ୍ୟବହାର କରିପାରିବେ ନାହିଁ । ଏମାନଙ୍କର ମୂଳ ଉଦ୍ଦେଶ୍ୟ 'ପଇସା' ଓ 'ଲାଭ' । ଭାରତରେ ବର୍ତ୍ତମାନ ତାହାହିଁ ଚଳଚିତ୍ର ଶିଳ୍ପର ସମସ୍ୟା । ହିନ୍ଦି ଚଳଚ୍ଚିତ୍ରରେ ଅବାସ୍ତବତା ଚାକଚକ୍ୟ, ନଗ୍ନତା ଯାହା ଓଡ଼ିଶାର ସମାଲୋଚକ ଓ ସାଧାରଣ ଦର୍ଶକଙ୍କପାଇଁ ଦରକାରି—କାରଣ ସେମାନେ ସମସ୍ତେ ସବୁବେଳେ ବ୍ୟାବସାୟିକ ଦୃଷ୍ଟିରେ ଚଳଚିତ୍ରକୁ ଦେଖନ୍ତି ।

ଏମାନେ କୋଟି କୋଟି ଟଙ୍କା ଉପାର୍ଜନ କରନ୍ତି—ଟିକସ ଫାଙ୍କନ୍ତି—। କଳା-ଟଙ୍କାର ବ୍ୟବସାୟୀଙ୍କର ଲକ୍ଷଲକ୍ଷ ଟଙ୍କା ବିଳାସବ୍ୟସନରେ ଖର୍ଚ୍ଚ ହୁଏ । ଭାରତର କୋଟି କୋଟି ଜନତା ଆମୋଦପ୍ରମୋଦ ପାଇଁ ଏହାକୁ ଦେଖନ୍ତି । କେତେକ ଅପ୍ରାପ୍ତବୟସ୍କ ବାଳକବାଳିକା ବିପଥଗାମୀ ହୁଅନ୍ତି ଓ କେତେକ ପ୍ରାପ୍ତ ବୟସ୍କ ଏହାପଛରେ ସର୍ବସ୍ୱାନ୍ତ ହୁଅନ୍ତି । ସାଧାରଣ ଜୀବନ, ଜୀବନ-ସଂଗ୍ରାମର ସମସ୍ୟା ଓ ବୌଦ୍ଧିକ ଚେତନା ନେଇ ଚଳଚିତ୍ର ତିଆରି କରିବାର ପ୍ରୟାସ ଖୁବ୍ କମ୍ । କାରଣ ଏହାର ପୃଷ୍ଠପୋଷକତା କରିବାର ଲୋକ ଭାରତରେ ନାହାନ୍ତି । ଯଦିବା ଅଛନ୍ତି ସେମାନଙ୍କର ସଂଖ୍ୟା ଅତି ନଗଣ୍ୟ ।

ସୁଖର କଥା ଭାରତରୁ ଗତ ୧୫।୨୦ ବର୍ଷ ହେବ କେତେଜଣ ପ୍ରଯୋଜକ ଓ ନିର୍ଦ୍ଦେଶକଙ୍କ ଅକ୍ଳାନ୍ତ ପରିଶ୍ରମରେ, Film Societyର ଆନୁକୂଲ୍ୟରେ କେତେଗୁଡ଼ିଏ କଳାତ୍ମକ ଓ ବୌଦ୍ଧିକ ଚେତନା ସମ୍ବଳିତ ଚଳଚିତ୍ର ନିର୍ମିତ ହୋଇଛି ଓ ଏହାର ଆନ୍ଦୋଳନ ଯୋଗୁଁ ନିକଟରେ ଭାରତ ସରକାରଙ୍କର ଚଳଚିତ୍ର ବିଭାଗ ଓ ଚଳଚିତ୍ର ଅର୍ଥ ସାହାଯ୍ୟକାରି ଅନୁଷ୍ଠାନ କେବଳ offbeat ବା କଳାତ୍ମକ ଚଳଚିତ୍ରକୁ ସାହାଯ୍ୟ କରିବାପାଇଁ ଯୋଜନା କରିଛନ୍ତି ।

ଏତ ଗଲା ବ୍ୟାବସାୟିକ କାହାଣୀ ଚଳଚିତ୍ର (Featare film) ର କଥା । ଏହାପରେ ଆଜ ଅନେକପ୍ରକାରର ଚଳଚିତ୍ର ତିଆରିହୁଏ, ଯଥା :— ପ୍ରାମାଣିକଚିତ୍ର (Documentary film), ଶିଶୁଚଳଚିତ୍ର (Children film) ପ୍ରଚାରମୂଳକ ଚିତ୍ର (Publicity film), ଶିକ୍ଷଣୀୟ ଚିତ୍ର (Educational

film ), ବୈଜ୍ଞାନିକ ତଥ୍ୟସମ୍ବଳିତ ଚିତ୍ର (Scientific film),ବ୍ୟଙ୍ଗ ଚିତ୍ର (Cartoon) ବା Anemated film) ଓ ଟେଲିଭିଜନ୍ ଚିତ୍ର । ଏମାନଙ୍କର ପ୍ରଭାବ ଆଜିର ପାଶ୍ଚାତ୍ୟ ସାମାଜିକ ଜୀବନରେ ବହୁଦୂରପ୍ରସାରୀ । କାହାଣୀ ଚିତ୍ରଠାରୁ ଏହି ଉପରଲିଖିତ ଚଳଚିତ୍ର ବ୍ୟାବସାୟିକ ଦୃଷ୍ଟିକୋଣରୁ ବହୁ-ଗୁଣରେ ସଫଳତା ଲାଭ କରିପାରୁଛନ୍ତି । ସାଧାରଣ ପ୍ରେକ୍ଷାଳୟ ଛଡ଼ା ଏମାନଙ୍କ-ପାଇଁ ପ୍ରତ୍ୟେକ ସହରରେ ପ୍ରତ୍ୟେକ ସରକାର ସ୍ୱତନ୍ତ୍ର ପ୍ରେକ୍ଷାଳୟମାନ ତିଆରି କରିଛନ୍ତି । ଲୋକେ କେବଳ କଳାତ୍ମକ ଚଳଚିତ୍ର ଦେଖିବାକୁ ଏହି ପ୍ରେକ୍ଷାଳୟରେ ଭିଡ଼ କରନ୍ତି । ଭାରତ ସରକାର ମଧ୍ୟ ଏ ବିଷୟରେ ଖୁବ୍ ଅଳ୍ପ ପଦକ୍ଷେପ ନେଇଛନ୍ତି । ତଥାପି ବ୍ୟାବସାୟିକ ହିନ୍ଦି ଚଳଚିତ୍ରର ଗ୍ରାହକତା କୌଣସି ହିସାବରେ କମ୍ ହେଉନାହିଁ । ଆଫ୍ରିକା, ମଧ୍ୟପ୍ରାଚ୍ୟ ଓ ଦକ୍ଷିଣଏସିଆ ରାଜ୍ୟ-ମାନଙ୍କରେ ଏହି ହିନ୍ଦି ଚଳଚିତ୍ରର ଗ୍ରାହକତା ଏତେ ବେଶୀ ଯେ, ବେଳେବେଳେ ଏମାନଙ୍କର ବୈଦେଶିକ ମୁଦ୍ରା ଉପାର୍ଜନ ଭାରତ ସରକାରଙ୍କର ମୁହଁ ବନ୍ଦ କରିଦିଏ । ଭାରତର ଏହି ଆମୋଦଦାୟକ ଚଳଚିତ୍ର ଦେଖି ସେହି ଦେଶର ଲୋକେ ଭାରତକୁ ଏକ ସ୍ୱର୍ଗପୁରୀ ବୋଲି ଧାରଣା କରନ୍ତି—ଯେଉଁଠାରେ ରାସ୍ତାଘାଟରେ ସୁନ୍ଦରୀ ସ୍ତ୍ରୀମାନେ ନାଚଗାଇ ଦଳଦଳ ହୋଇ ବୁଲନ୍ତି, ପ୍ରେମ କମ୍ବା ଯୌନକ୍ଷୁଧା ମେଣ୍ଟାଇବାପାଇଁ । ଏଠାରେ ସ୍କୁଲ, କଲେଜ, ରାସ୍ତା, ଘାଟ, ପାହାଡ଼, ପର୍ବତ, ନଦୀ, ଉପତ୍ୟକା—ସବୁସ୍ଥାନରେ ଏମାନଙ୍କର ଅବାଧ ଗମନାଗମନ । କିନ୍ତୁ ପ୍ରକୃତ ଭାରତର ଚିତ୍ର କ'ଣ ଏଇୟା ? ତେଣୁ ଯେଉଁମାନେ ପ୍ରକୃତ ଭାରତ ଦେଖନ୍ତି ସେମାନେ ଆମକୁ ଆଖ୍ୟା ଦିଅନ୍ତି "A nation of hypocrates."

ଭାରତ ପରି ଏକ ବିରାଟ ଦେଶରେ ଶିକ୍ଷାର ପ୍ରସାର ଓ ପ୍ରଚାର—ବହି, ଖବରକାଗଜ, ରେଡିଓ, ନାଟକ ଓ ସ୍କୁଲ, କଲେଜଦ୍ୱାରା ଯେତେ ସମ୍ଭବ ନୁହେଁ ସିନେମା ବା ଟେଲିଭିଜନ୍ ଦ୍ୱାରା ତାହାଠାରୁ ବେଶୀ ସମ୍ଭବ ହୋଇପାରିବ । ସିନେମା ପଛକୁ ଟେଲିଭିଜନ୍ ଆସି ଭାରତରେ ପହଞ୍ଚିଗଲାଣି । ସିନେମାର ଆର୍ଥିକ ସମସ୍ୟା ଟେଲିଭିଜନ୍ ଠାରୁ ଅନେକ କମ୍, ତଥାପି ଦୁଇଟି ମାଧ୍ୟମ ପରସ୍ପର ଅନୁପୂରକ । ଯେତେବେଶୀ short film (କମ୍ ସମୟ ଚାଲୁଥିବ ଛବି ) ଭାରତରେ ତିଆରି ହେବ ସେତେବେଶୀ ଟେଲିଭିଜନ୍ ତାହାର ସଦ୍‌ବ୍ୟବହାର କରିପାରିବ ଓ ଏହା ଦେଶବିଦେଶରେ ଆଦୃତ ହେବ; ତେବେ ପ୍ରଦର୍ଶନ ଗୃହ ଓ ଗ୍ରାହକତାର ସମସ୍ୟା ସେତେ କୋହଳ ହୋଇଯିବ । ଏହି ଦୃଷ୍ଟିରୁ ପ୍ରଯୋଜକମାନେ ଲାଭବାନ୍ ହେବାର ମଧ୍ୟ ସମ୍ଭାବନା ଅଛି ।

ଏହି ପରିପ୍ରେକ୍ଷୀରେ ବର୍ତ୍ତମାନ ଓଡ଼ିଆ ଚଳଚ୍ଚିତ୍ରପ୍ରତି ଦୃଷ୍ଟିଦେଲେ ଦେଖାଯିବ ଯେ ଆମର ଚଳଚ୍ଚିତ୍ର ଶିଳ୍ପ ବୋଲି କିଛି ନାହିଁ । ଯେତିକି ଚଳଚ୍ଚିତ୍ର ହୋଇଛି ସେ ସବୁର ଆଗରେ ଅସଂଖ୍ୟ ସମସ୍ୟା । ତାହାର ସମାଧାନପାଇଁ ବ୍ୟକ୍ତିବିଶେଷ ଓ ଅନୁଷ୍ଠାନ ଚେଷ୍ଟା କରି ଆସୁଛନ୍ତି । ତେବେ କଥାରେ ଅଛି "ବିନାଶ୍ରୟେ ନ ବର୍ତ୍ତନ୍ତେ କବିତା-ବନିତା-ଲତା ।" କବିତା, ବନିତା, ଲତା ନହେଲେ ମଧ୍ୟ ଚଳଚ୍ଚିତ୍ର ଶିଳ୍ପ ଏକ "କଳା", ଯାହା ଭାଷା ଓ ସଂସ୍କୃତି ସହିତ ଜଡ଼ିତ । ଏହାର ପୃଷ୍ଠପୋଷକତା ବ୍ୟାବସାୟିକଗୋଷ୍ଠୀ, ଜମିଦାର, ରାଜା, ମହାରାଜା ଓ ଧନୀକଶ୍ରେଣୀ ଆଜପର୍ଯ୍ୟନ୍ତ କରିଆସୁଥିଲେ । ବର୍ତ୍ତମାନ ସାଂସ୍କୃତିକ ବାର୍ତ୍ତାବହ ଭାବରେ ଚଳଚ୍ଚିତ୍ର ସମସାମୟିକ ଗଣତାନ୍ତ୍ରିକ ସରକାରଙ୍କର ଏକ ମାଧ୍ୟମ ହୋଇ ରହିବା ଉଚିତ । ଯେପରି ଲେନିନ୍ ରୁଷ୍ ବିପ୍ଳବ ପରେପରେ ଚଳଚ୍ଚିତ୍ରକୁ ପ୍ରଧାନ ପ୍ରଚାର ମାଧ୍ୟମଭାବରେ ବ୍ୟବହାର କରିଥିଲେ । ଅବଶ୍ୟ କଳାତ୍ମକ ସୃଜନୀଶକ୍ତିର ପରିପ୍ରକାଶରେ ବାଧା ସୃଷ୍ଟି କରୁଥିବାର ପ୍ରୟାସ ସରକାରଙ୍କର ହେବା ଉଚିତ୍ ନୁହେଁ । ତେବେ ଓଡ଼ିଶାର ଗଣତାନ୍ତ୍ରିକ ସରକାର ହିଁ ଏହାର ଏକମାତ୍ର ପୃଷ୍ଠପୋଷକ ହୋଇ ରହିବା ଉଚିତ ।

ଆଶା କରାଯାଏ ବର୍ତ୍ତମାନର ସରକାର ଓଡ଼ିଆ ଚଳଚ୍ଚିତ୍ର ଶିଳ୍ପର ଏହି ସଙ୍କଟସନ୍ଧି ସମୟରେ ଏ ବିଷୟରେ ଗମ୍ଭୀର ଭାବରେ ଚିନ୍ତା କରିବେ ଓ କଳାତ୍ମକ ସୃଜନୀ ଶକ୍ତିକୁ ପୃଷ୍ଠପୋଷକତା କରିବା ସଙ୍ଗେ ସଙ୍ଗେ ବ୍ୟାବସାୟିକ ଦୃଷ୍ଟିକୋଣରୁ ଯେପରି ଓଡ଼ିଆ ଚଳଚ୍ଚିତ୍ର ଶିଳ୍ପ ଉନ୍ନତ ହୋଇଉଠିବ ସେଥିପାଇଁ ଆଇନ ପ୍ରଣୟନ କରିବେ ।



# ଅତୀତ, ବର୍ତ୍ତମାନ୍ ଓ ଭବିଷ୍ୟତ, ଓଡ଼ିଆ ଚଳଚ୍ଚିତ୍ର

ସାରଦାପ୍ରସନ୍ନ ନାୟକ

## ଅତୀତ :

ପ୍ରଥମ ଓଡ଼ିଆ ଚଳଚ୍ଚିତ୍ର "ସୀତା ବିବାହ" ଯିଏ ଓ ଯେଉଁମାନେ ୧୯୩୪ ଠାରୁ ୧୯୩୬ ମସିହା ମଧ୍ୟରେ ନିର୍ମାଣ କରିଥିଲେ, ସେମାନେ ସମସ୍ତେ ଓଡ଼ିଆ ଜାତିର ଚିରନମସ୍ୟ ଓ ଚିରସ୍ମରଣୀୟ । ଜଣେ ଚଳଚ୍ଚିତ୍ର ଶିଳ୍ପୀ ( ଚିତ୍ରନାଟ୍ୟକାର, ସଂଳାପ ଲେଖକ, ଗୀତିକାର ଓ ନିର୍ଦ୍ଦେଶକ ) ଭାବରେ ଏ ମୋର ବ୍ୟକ୍ତିଗତ ମତ । ଏହି ପ୍ରଥମ ଚିତ୍ରରେ ଅନେକ ଦୋଷ ତ୍ରୁଟି ଇତ୍ୟାଦି ରହିଗଲା ବୋଲି ସେତେବେଳେ କେତେକେ ହୁଏତ ସମାଲୋଚନା କରିଥିବେ; ଠିକ୍ ଯେମିତି ୧୯୧୩ ମସିହାରେ ଭାରତର ପ୍ରଥମ ଚିତ୍ର ନିର୍ମାଣ କରି ଚଳଚ୍ଚିତ୍ର ଜଗତର ପିତା ଦାଦାସାହେବ ଫାଲକେ ହୁଏତ ସମାଲୋଚନାର ସମ୍ମୁଖୀନ ହୋଇଥିବେ; ତେବେ, ଏଠି ପ୍ରଥମ ଚିତ୍ର ନିର୍ମାଣ କରି ଆଲୋକବର୍ତ୍ତିକା ଦେଖାଇବା ହେଲା ମୁଖ୍ୟ; କୌଶଳ ବା ତ୍ରୁଟି ହେଲା ଗୌଣ । ସେଥିପାଇଁ "ହରିଶ୍ଚନ୍ଦ୍ର" ଚିତ୍ର ନାମ ସ୍ମରଣ କରି ଆମେ ଯେପରି ସର୍ବଭାରତୀୟ ଚଳଚ୍ଚିତ୍ର କ୍ଷେତ୍ରରେ ଗୌରବ ଅନୁଭବ କରୁ; ସେହିପରି ଗୌରବ ଅନୁଭବ କରୁ "ସୀତା ବିବାହ" ନାମ ସ୍ମରଣ କରି ଓଡ଼ିଆ ଚଳଚ୍ଚିତ୍ର କ୍ଷେତ୍ରରେ ।

ଆଜକୁ ପ୍ରାୟ ପଇଁତିରିଶି ବର୍ଷ ତଳେ ମୁଁ 'ସୀତା ବିବାହ' ଦେଖିଥିଲି । ମତେ ସେତେବେଳେ ଦଶବର୍ଷ ବୟସ ଓ ମୁଁ ଭିକ୍ଟୋରିଆ ସ୍କୁଲ (ବର୍ତ୍ତମାନର ଭକ୍ତମଧୁ ବିଦ୍ୟାପୀଠ) ରେ ଷଷ୍ଠ ଶ୍ରେଣୀରେ ପଢୁଥିଲି । ଏହି ଛବିରେ ରାମ, ଲକ୍ଷ୍ମଣ, ବିଶ୍ୱାମିତ୍ର, ଧୀବର, ସୀତା ଓ ସୀତାଙ୍କ ସଖୀ ଭୂମିକାରେ ଅଭିନୟ କରିଥିବା ଅଭିନେତା ଓ ଅଭିନେତ୍ରୀମାନଙ୍କର ଅଭିନୟର କିୟଦଂଶ ମୋର ଏବେ ବି ମନେଅଛି । ବିଶେଷ କରି ନମସ୍ୟ ସ୍ୱର୍ଗତ ମୋହନସୁନ୍ଦର ଦେବ ଗୋସ୍ୱାମୀଙ୍କର ବିଶ୍ୱାମିତ୍ର ଭୂମିକାରେ ଅଭିନୟ, ଅହଲ୍ୟା ଉଦ୍ଧାର ବେଳର ଗୀତ "ଏହି ଯେ ଆଶ୍ରମ ଦେଖୁଚ୍ଛ ଶ୍ରୀରାମ ଏ ଯେ ଗଉତମ ବାସ", ଶ୍ରୀରାମଙ୍କର ଗଙ୍ଗାରେ ନୌଯାତ୍ରା ସମୟରେ ପଣ୍ଡିତ ନନ୍ଦଶର୍ମାଙ୍କର ଧୀବର ଭୂମିକାରେ ଅଭିନୟ ଓ ଗୀତ "ବଧୀର ନୁହଇ ଖାର ବୋଇଲା ତହିଁ ଧୀବର" ରାମ ଓ ଲକ୍ଷ୍ମଣ ଭୂମିକାରେ ଯଥାକ୍ରମେ ସ୍ୱର୍ଗତ ମାଖନଲାଲ ବ୍ୟାନାର୍ଜୀ ଓ ଡାକ୍ତର ଅଦ୍ୱୈତ ଚନ୍ଦ୍ର ମହାନ୍ତିଙ୍କର ଅଭିନୟ ଓ ସୀତାଙ୍କର ସଖୀ ଭୂମିକାରେ ଓଡ଼ିଶାର

ନାଟ୍ୟ ସାମ୍ରାଜ୍ଞୀ ଶ୍ରୀମତୀ ରାଧାରାଣୀ (ଯିଏକି ବର୍ତ୍ତମାନ ଏକ ଅବହେଳିତ ଜୀବନ-ଯାପନ କରୁଛନ୍ତି ଓ ଅନ୍ନପୂର୍ଣ୍ଣା 'ଏ' ଗ୍ରୁପ୍‌ଙ୍କର କରୁଣାରୁ ବଞ୍ଚିରହିଛନ୍ତି) ଙ୍କର ଅପୂର୍ବ ଅଭିନୟ ବାସ୍ତବିକ୍ ଅବିସ୍ମରଣୀୟ । ଏହି ଛବି ନିର୍ମିତ ହେଲା-ବେଳକୁ ନିର୍ବାକ୍ ଯୁଗ ଯାଇ ସବାକ୍ ଯୁଗ ମାତ୍ର ପ୍ରବେଶ କରିଛି । ସୁତରାଂ ପ୍ରଥମ ଓଡ଼ିଆ ଛବି (କଥାଚିତ୍ର) ଦୃଷ୍ଟିରୁ ଓ ଚିତ୍ରଜଗତରେ ଏକ ସନ୍ଧିକ୍ଷଣରେ ଏହା ନିର୍ମିତ ହୋଇଥିବା ଦୃଷ୍ଟିରୁ ସମଗ୍ର ଭାରତବର୍ଷର ଚିତ୍ର ଜଗତରେ ଏହା ନିଶ୍ଚିତ ଏକ ତାତ୍ପର୍ଯ୍ୟ ପୂର୍ଣ୍ଣ ପରିଚ୍ଛେଦ ଅଧିକାର କରିବ ।

ଏ ଚିତ୍ରର ସୁଟିଂ ହୋଇଥିଲା କଲିକତାର ଟାଲିଗଞ୍ଜରେ ଥିବା ତତ୍କାଳୀନ କାଲୀ ଫିଲ୍ମସ୍ ଷ୍ଟୁଡ଼ିଓରେ, ଯାହାକି ବର୍ତ୍ତମାନ ଟେକନିସିଆନ୍ ଷ୍ଟୁଡ଼ିଓ ନାମରେ ନାମିତ । ଘଟଣା ପ୍ରବାହରେ ଏଠାରେ ଅନେକ ଓଡ଼ିଆ ଚଳ-ଚିତ୍ରର ସୁଟିଂ ହୋଇଛି ଓ ୧୯୬୬ ମସିହାରେ 'ଜୟଦେବ' ଓ ୧୯୬୮ ମସିହାରେ 'ସ୍ତ୍ରୀ' ଏହି ଷ୍ଟୁଡ଼ିଓରେ ଚିତ୍ର ନିର୍ମାଣରେ ସାମିଲ୍ ହବାର ସୌଭାଗ୍ୟ ମୋତେ ମିଳିଛି ।

ଅତ୍ୟନ୍ତ ବିସ୍ମୟ ଓ ଶୋଚନାର ବିଷୟ ଯେ ଏହି ଚିତ୍ର ନିର୍ମାଣ ହେବା ପରେ ଓଡ଼ିଆ ଚଳଚିତ୍ରରେ ଗୋଟାଏ ବିରାଟ ଦୂର୍ଚ୍ଛେଦ ପଡ଼ିଗଲା ଓ ଏକ ଅସ୍ୱସ୍ତିକର ଶୂନ୍ୟତା ବିରାଜମାନ କଲା । ଏହି ଶୂନ୍ୟତା ଭଙ୍ଗ ହେଲା ପ୍ରାୟ ଦୀର୍ଘ ବାରବର୍ଷ ପରେ ୧୯୪୮ ମସିହାରେ 'ଲଳିତା' ଚିତ୍ରର ମୁକ୍ତିଲାଭ ପରେ ଓ ଠିକ୍ ତା' ପରେ ପରେ ୧୯୪୯ ମସିହାରେ 'ଶ୍ରୀଜଗନ୍ନାଥ' ଚିତ୍ରର ମୁକ୍ତିଲାଭ ପରେ । ଏଇ ଦୁଇଟି ଚିତ୍ରର ଏକ ଉଲ୍ଲେଖଯୋଗ୍ୟ ଘଟଣା ହେଉଛି ଯେ ଶ୍ରୀଜଗନ୍ନାଥଙ୍କ କଥାବସ୍ତୁ ଉପରେ ଅର୍ଥାତ୍ ନୀଳମାଧବ, ବିଦ୍ୟାପତି, ବିଶ୍ୱାବସୁ, ଲଳିତା ଓ ଇନ୍ଦ୍ରଦ୍ୟୁମ୍ନଙ୍କ ଉପାଖ୍ୟାନ ମାଧ୍ୟମରେ ଦୁଇଟିଯାକ ଚିତ୍ର ନିର୍ମିତ ହେଲା ଓ ଗୋଟିଏ କଥାବସ୍ତୁ ଉପରେ ଦୁଇଟି ଚିତ୍ର ନିର୍ମାଣରେ ପ୍ରଯୋଜକମାନଙ୍କ ଦ୍ୱାରା ଏକ ପ୍ରତିଯୋଗିତାର ଅବତାରଣା କରାଯାଇଥିଲା । ସ୍ୱୀକାର କରିବାକୁ ହେବ ଯେ 'ଲଳିତା' ଅପେକ୍ଷା 'ଶ୍ରୀଜଗନ୍ନାଥ' ଦର୍ଶକମାନଙ୍କ ଦ୍ୱାରା ଖୁବ୍ ଆଦୃତ ହୋଇଥିଲା ଓ ଏହି 'ଶ୍ରୀଜଗନ୍ନାଥ' ଚିତ୍ର ହିଁ ଓଡ଼ିଶାରେ ଉତ୍କୃଷ୍ଟ ଚିତ୍ରନିର୍ମାଣର ଏକ ଦୃଢ଼ ଭିତ୍ତି ସ୍ଥାପନ କରିବା ସଙ୍ଗେ ସଙ୍ଗେ ଆଗାମୀ ଚିତ୍ରମାନଙ୍କ ନିର୍ମାଣ କରିବାପାଇଁ ପ୍ରଚୁର ଉଦ୍ଦୀପନା ଓ ପ୍ରେରଣା ଯୋଗାଇଲା ।

ପ୍ରଶ୍ନ ଉଠେ ଏହି ଦୀର୍ଘ ବ୍ୟବଧାନ ମଧ୍ୟରେ କ'ଣ ଓଡ଼ିଆ ଚିତ୍ର ନିର୍ମାଣ ପାଇଁ ଉଦ୍ୟମ ହେଉ ନ ଥିଲା ? ଉଦ୍ୟମ ନିଶ୍ଚିତ ହେଉଥିଲା; କିନ୍ତୁ ଉପଯୁକ୍ତ ଅଭିଜ୍ଞତା ଓ ନିର୍ମାଣ କୌଶଳ ଜ୍ଞାନର ଅଭାବ ଓ ସର୍ବୋପରି ନିର୍ମାଣ କ୍ଷେତ୍ର

ଅର୍ଥାତ୍ ଷ୍ଟୁଡ଼ିଓ ଅଭାବ ଯୋଗୁଁ ପରିକଳ୍ପନା ସାଙ୍ଗେ ସାଙ୍ଗେ ପରିସମାପ୍ତି ଘଟିଥିଲା । ମୋର ବ୍ୟକ୍ତିଗତ ମତ ୧୯୬୧ ମସିହା ଶେଷ ସୁଦ୍ଧା ଏହି ଅଭାବ କେତେକାଂଶରେ ଦୂର ହୋଇଛି ସିନା; କିନ୍ତୁ ସମ୍ପୂର୍ଣ୍ଣ ଦୂର ହୋଇନାହିଁ । ସେଥିପାଇଁ ଏହା ଏବେ ବି ଓଡ଼ିଆ ଚିତ୍ର ନିର୍ମାଣ ପଥରେ ଏକ ପ୍ରତିବନ୍ଧକ ରୂପେ ଠିଆ ହେବାପରି ମନେହୁଏ । ତଥାପି ଏତେ ପ୍ରତିବନ୍ଧକ ସତ୍ତ୍ୱେ ଓଡ଼ିଶାର ଯେଉଁ ପ୍ରଯୋଜକ, ଲେଖକ, ଅଭିନେତା ଅଭିନେତ୍ରୀ, ନିର୍ଦ୍ଦେଶକ, ସଙ୍ଗୀତଜ୍ଞ, ଗାୟକ-ଗାୟିକା, ଗୀତିକାର ଓ କର୍ମୀଗଣ ଆପ୍ରାଣ ଉଦ୍ୟମ କରି ଅନ୍ତତଃ ପଇଁତିରିଶିଟି ଚିତ୍ର (ପୌରାଣିକ, ଐତିହାସିକ ଓ ସାମାଜିକ) ନିର୍ମାଣ କରିପାରିଛନ୍ତି । ସେଥିପାଇଁ ସେମାନେ ଅଭିନନ୍ଦନୀୟ ।

ତଥାପି ନିମପିତା ବା ଚିରେଇତା ପିତା ପରି ଆତ୍ମସମୀକ୍ଷା ବା ଆତ୍ମନିରୀକ୍ଷଣ ଟିକିଏ ହେଲେ ଦେହକୁ ପ୍ରୀତ ହେଲାପରି ବର୍ତ୍ତମାନ ତଥା ଭବିଷ୍ୟତ ପାଇଁ କିଛି ଦିଗ୍‌ଦର୍ଶନ ମିଳିବ ବୋଲି ମନେହୁଏ ।

୧୯୪୮ ମସିହାଠାରୁ ୧୯୬୦ ମସିହା ପର୍ଯ୍ୟନ୍ତ ଅବିଚ୍ଛିନ୍ନ ଭାବରେ ଦୁଇ ବର୍ଷରେ ଗୋଟିଏ, ବର୍ଷକରେ ଗୋଟିଏ ଓ ବର୍ଷକରେ ଦୁଇଟି ଓଡ଼ିଆ ଚିତ୍ର ନିର୍ମିତ ହେବା ବାସ୍ତବିକ ଆମ୍ଭମାନଙ୍କ ପକ୍ଷରେ ଅତ୍ୟନ୍ତ ସୁଖର କଥା । ଦୁଃଖ ଓ ଦୁର୍ଭାଗ୍ୟର କଥା ଯେ ୧୯୬୧ ମସିହାଟି ହବିଷରେ ଗଲିଗଲା ଓ ଗୋଟିଏ ବୋଲି ଓଡ଼ିଆ ଚିତ୍ର ଜନ୍ମଲାଭ ମଧ୍ୟ କରିପାରିଲା ନାହିଁ, ୧୯୬୦ ମସିହାରେ 'ସଂସାର' ନାମକ ଯେଉଁ ଚିତ୍ରଟି ଜନ୍ମଲାଭ କଲା, ୧୯୬୧ ଗୋଟାଏ ବର୍ଷ ଗଲିଗଲା, ଅଥଚ ତାହା ମୁକ୍ତିଲାଭ ମଧ୍ୟ କରିପାରିଲା ନାହିଁ । ଏବେ ପୂର୍ବକଥା ଆଲୋଚନା କରିବା । ୧୯୪୮ରୁ ୧୯୬୦ ଯାଏଁ ୨୨ ବର୍ଷର ବ୍ୟବଧାନ । ଏହାର ମଧ୍ୟରେ ୩୪ଟି ପୂର୍ଣ୍ଣାଙ୍ଗ ଚିତ୍ର ନିର୍ମିତ ହୋଇଛି । ଏହାଛଡ଼ା କେତେକ ଡକ୍ୟୁ° ଚିତ୍ର ମଧ୍ୟ ମୁକ୍ତିଲାଭ କରିଛି । ଏହି ୩୪ଟି ଚିତ୍ର ମଧ୍ୟରୁ କେତେକ ଅତି ଉଚ୍ଚମାନ ଓ ଲୋକପ୍ରିୟତା ଅର୍ଜନ କରିବା ସାଙ୍ଗେ ସାଙ୍ଗେ ବେଶ୍ ଅର୍ଥ ମଧ୍ୟ ଉପାର୍ଜନ କରିବାକୁ (Box office) ସକ୍ଷମ ହୋଇଛି । ସେମାନଙ୍କ ମଧ୍ୟରୁ ଶ୍ରୀଜଗନ୍ନାଥ, ଶ୍ରୀଲୋକନାଥ, ଅମଡ଼ାବାଟ ଓ କା' ଚିତ୍ରଗୁଡ଼ିକର ନାମ ବିଶେଷ ଭାବରେ ଉଲ୍ଲେଖଯୋଗ୍ୟ ।

ଶ୍ରୀଲୋକନାଥଠାରୁ ୧୯୬୦ ପର୍ଯ୍ୟନ୍ତ ଧାରାବାହିକଭାବରେ ଓଡ଼ିଆ ଚିତ୍ର ରାଷ୍ଟ୍ରପତିଙ୍କ ପୁରସ୍କାର ପାଇ ସର୍ବଭାରତୀୟ ଚଳଚିତ୍ର କ୍ଷେତ୍ରରେ ଏକ ବିଶେଷ ସ୍ଥାନ ଲାଭ କରିପାରିଛି । ଏପରିକି ଗୋଟିଏ ବର୍ଷରେ ଏକ ସାଙ୍ଗରେ

ଦୁଇଟି ଓଡ଼ିଆ ଚିତ୍ର ଏହି ଗୌରବର ଅଧିକାରୀ ହୋଇଛି । (୧୯୬୩ ମସିହାରେ 'ଲକ୍ଷ୍ମୀ' ଓ 'ସୂର୍ଯ୍ୟମୁଖୀ' ରାଷ୍ଟ୍ରପତିଙ୍କ ପୁରସ୍କାର ପାଇ ରାଷ୍ଟ୍ରୀୟ ସମ୍ମାନ ଲାଭ କରି-ପାରିଛି) ଏହାଛଡ଼ା ଓଡ଼ିଶାର ବହୁ କୃତୀ ଅଭିନେତା, ଅଭିନେତ୍ରୀ, ନିର୍ଦ୍ଦେଶକ, ପ୍ରଯୋଜକଗଣ ରାଷ୍ଟ୍ରୀୟ ସମ୍ମାନରେ ଭୂଷିତ ହୋଇଛନ୍ତି । ସେମାନେ ସମସ୍ତେ ଏଡ଼ିଶାର ଗୌରବ । ଓଡ଼ିଶା ସେମାନଙ୍କୁ ବକ୍ଷରେ ଧାରଣକରି ଧନ୍ୟ । ତଥାପି ମନରେ ଗୋଟିଏ ପ୍ରଶ୍ନ ଉଠେ ଏତେ ପ୍ରଶଂସା ଓ ପ୍ରାଚୁର୍ଯ୍ୟ ସତ୍ତ୍ୱେ ଆମର ଚିତ୍ର ପ୍ରଯୋଜନାର ଗତି ଏତେ ଶିଥିଳ କାହିଁକି ? ଏ ଶିଥିଳତାର କାରଣ ଅଛି । ଏଥିପାଇଁ ଆମର ଆତ୍ମନିରୀକ୍ଷଣ ଲୋଡ଼ା । ଏହାହିଁ ହେଉଛି ଅତୀତର ପୃଷ୍ଠଭୂମି ଉପରେ ଆମର ବର୍ତ୍ତମାନ ।

## ବର୍ତ୍ତମାନ :

ଆମ୍ଭେମାନେ କଳାପ୍ରାଣ ଓ ଭାବପ୍ରବଣ ବ୍ୟକ୍ତି । ତେଣୁ ଆମେ ଅଳ୍ପକେ ସନ୍ତୁଷ୍ଟ ହେଇଯାଉ, ହଠାତ୍ ଭାବୋଚ୍ଛ୍ୱାସରେ ଉଚ୍ଛ୍ୱସିତ ହୋଇଯାଇ ବିହ୍ୱଳିତ ହୋଇଯାଉ । ସେଥିପାଇଁ ଆମର କଳନା ଓ ଗଣନା ( Foresight and calculation )ଅନେକ ସମୟରେ ଭୁଲ୍ ହେଇଯାଏ । ଏହା ଆମର ଦୃଷ୍ଟି-ଭଙ୍ଗୀର ଏକ ଦୁର୍ବଳତା । ୧୯୬୦ ମସିହାଠାରୁ ଏପର୍ଯ୍ୟନ୍ତ ମୁଁ ଓଡ଼ିଆ ଚଳଚିତ୍ର ନିର୍ମାଣ ( ପ୍ରଯୋଜନା ଛଡ଼ା) ସହିତ ଘନିଷ୍ଠଭାବରେ ସମ୍ପୃକ୍ତ ଅଛି । ମୋ ବିବେଚନାରେ ଆମେ ଆଜିର ମନ୍ତ୍ର, କାଲିର ବଇଦପତ୍ର ଚିତ୍ର ନିର୍ମାଣ କାର୍ଯ୍ୟର ବହୁ ବିଭାଗ (ଯାନ୍ତ୍ରିକ ଓ ତାତ୍ତ୍ୱିକ)କୁ ଅକ୍ତିଆର କରିସାରିଲୁଣି । ମୋର ଦୃଢ଼ବିଶ୍ୱାସ, ଆହୁରି କେତେ ବିଭାଗକୁ ସମ୍ପୂର୍ଣ୍ଣ ଅକ୍ତିଆର କରିଗଲେ ଆମେ ନିର୍ମାଣ କାର୍ଯ୍ୟକୁ ଶୃଙ୍ଖଳିତ ଓ ସାବଲୀଳ କରିପାରିବା ଓ ନିୟମିତ ଭାବରେ ବହୁ ଚିତ୍ର ନିର୍ମାଣ କରିପାରିବା ।

ଆମେ କ'ଣ ଅକ୍ତିୟାର୍ କରିସାରିଲୁଣି; ଆଉ କ'ଣ ବାକୀ ଅଛି ?

ମୋର ସ୍ପଷ୍ଟ ମନେଅଛି ୧୯୪୮ ମସିହାରେ, ଯେତେବେଳେ 'ଶ୍ରୀଜଗନ୍ନାଥ'ର କାର୍ଯ୍ୟ ହେଉଥିଲା, ସେତେବେଳେ କେବଳ ଗଳ୍ପ ଓ ସଂଳାପ ରଚନା, ଗୀତ ରଚନା ଓ ଅଭିନୟ ଛଡ଼ା ଚିତ୍ର ନିର୍ମାଣ ବିଭାଗର ଅନ୍ୟ କିଛି ବିଦ୍ୟା ପ୍ରାପ୍ତ କାହାକୁ କିଛି ଜଣା ନଥିଲା । ଏପରିକି ପ୍ରଯୋଜନା ଓ ତତ୍ତ୍ୱାବଧାନ କ୍ଷେତ୍ରରେ ମଧ୍ୟ ଅନ୍ଧାରରେ ବାଡ଼ି ବୁଲୁ ହେଉଥିଲା । ଫଳରେ ବହୁ ଅର୍ଥ ଅପବ୍ୟୟ ହେଉଥିଲା । ଯଦି ଏଇ ଆରମ୍ଭ ଅବସ୍ଥାରେ କେତେଜଣ ଉତ୍ସାହୀ

ବ୍ୟକ୍ତିଙ୍କୁ ସେଇଦିନଠାରୁ ବିଭିନ୍ନ ବିଭାଗରେ ଟ୍ରେନିଂ ଲାଭ କରିବାର ବନ୍ଦୋବସ୍ତ କରାଯାଇ ପାରିଥାନ୍ତା, ତା'ହେଲେ ଆଜ ଆମେ ସମ୍ପୂର୍ଣ୍ଣ ଭାବରେ ଆତ୍ମନିର୍ଭରଶୀଳ ହୋଇପାରିଥାନ୍ତୁ ଓ ଆମର ଷ୍ଟୁଡିଓ ଓ ଅନ୍ୟାନ୍ୟ ସମସ୍ତ ଉପକରଣମାନ ମଧ୍ୟ ଆମେ କରି ପାରିଥାନ୍ତୁ । ଆଜି ଆମକୁ ଓଡ଼ିଶା ବାହାରେ କାହାଉପରେ ନିର୍ଭର କରିବାକୁ ପଡ଼ନ୍ତାନାହିଁ ।

ଏ ଯାହା ବ୍ୟତିକ୍ରମ ମୂଳରୁ ହୋଇଗଲା । ଏବେ ବି ଉଦ୍ୟମ କଲେ ଆମେ ସବୁ ସୁଧାରିପାରିବା ଓ ସମ୍ପୂର୍ଣ୍ଣ ଆତ୍ମନିର୍ଭରଶୀଳ ହୋଇପାରିବା ।

ତଥାପି ଠିକ ଠିକ ବହୁତ କଥା ଶିଖିବାକୁ ପଡ଼ିଲା । ଗୋଡ଼େଇ ଗୋଡ଼େଇ ବହୁତ ଇଲମ ହାସଲ କରିବାକୁ ପଡ଼ିଲା । ନିର୍ମାଣର ମୂଳତତ୍ତ୍ୱ ଚିତ୍ରନାଟ୍ୟ, ନିର୍ଦ୍ଦେଶ, ସଙ୍ଗୀତ ନିର୍ଦ୍ଦେଶ, ପ୍ରଚ୍ଛଦପଟ ଗାୟନ, ପ୍ରଯୋଜନା, ନିର୍ମାଣ ( ପ୍ରଡ଼କ୍‌ସନ୍ ) କାର୍ଯ୍ୟ ଏଥିରେ ଓଡ଼ିଶା ବର୍ତ୍ତମାନ ସମ୍ପୂର୍ଣ୍ଣ ଆତ୍ମ-ନିର୍ଭରଶୀଳ ।

ନିକଟ ଅତୀତରେ ଯେତେବେଳେ କେତେକ ପ୍ରଯୋଜକ ବାହାରୁ କେତେକ ଚିତ୍ରନାଟ୍ୟକାର ଓ ନିର୍ଦ୍ଦେଶକଙ୍କୁ ଆଣି ଓଡ଼ିଆ ଚିତ୍ର ତିଆରିକଲେ, ସେତେବେଳେ ଓଡ଼ିଶାର ଜାଣିବାଲୋକଙ୍କ ପ୍ରତି ନ୍ୟାୟ କଲେ ନାହିଁ ବୋଲି କହିଲେ ଅତ୍ୟୁକ୍ତି ହେବ ନାହିଁ ।

ଏମାନଙ୍କଛଡ଼ା ଏବେ କ୍ୟାମେରା (Cinematography), ସମ୍ପାଦନା କାର୍ଯ୍ୟ (Editing) ଓ ଶବ୍ଦଯନ୍ତ୍ର (Sound) ପ୍ରଭୃତି ଯାନ୍ତ୍ରିକ ବିଭାଗରେ ମଧ୍ୟ ନିପୁଣ ଓଡ଼ିଆ କଳାକାର କେତେଜଣ ବାହାରିଲେଣି । ସେମାନଙ୍କମଧ୍ୟରୁ କେତେଜଣ ବାଙ୍ଗାଲୋର ଓ ପୁନାରେ ଥିବା Film Training Institute ରେ ଟ୍ରେନିଂ ପାଇଛନ୍ତି । ଏମାନେ ସବୁ ଜାଣିଥିଲେ ସୁଦ୍ଧା ଓଡ଼ିଆ ଚିତ୍ର ନିର୍ମାଣରେ ଭାଗୀଦାର ହୋଇପାରୁନାହାନ୍ତି । ଏହାର କାରଣ ଯେଉଁ ଯନ୍ତ୍ରୀମାନେ ଓଡ଼ିଶା ବାହାରୁ କଣ୍ଟ୍ରାକ୍ଟ୍ ନେଇଆସୁଛନ୍ତି, ସେମାନେ ଓଡ଼ିଶାର ଏହି କୁଶଳୀ କାରିଗରମାନଙ୍କୁ ସେମାନଙ୍କ ସାଙ୍ଗରେ ସାମିଲ୍ ହେବାର ସୁଯୋଗ ଦେଉନାହାନ୍ତି, ତାଙ୍କର ମାର୍କେଟ୍ ଚାଲିଯିବା ଭୟରେ । ତେଣୁ ସେମାନଙ୍କ ମଧ୍ୟରୁ କେତେକ ବମ୍ବେରେ, କେତେକ ମାଡ୍ରାଜରେ ଓ ବାକି କେତେକ କଲିକତାରେ ସ୍ଥାନ ପାଇବାପାଇଁ ଜୀବନ ସଂଗ୍ରାମ କରୁଛନ୍ତି । ଓଡ଼ିଶାରେ ସେମାନଙ୍କୁ, ନିଯୁକ୍ତ କରିବାକୁ Studio, Outdoor Unit ଓ Laboratory ପ୍ରଭୃତି କିଛି ନାହିଁ । ଏବେ ଶୁଣାଯାଏ, ହେବାର ଅଛି । ସେଥିପାଇଁ ଆନନ୍ଦ ଓ ଆଶ୍ୱସ୍ତ ଲାଗୁଛି । ଏତକ ହୋଇଗଲେ ଓଡ଼ିଆ ଚଳଚ୍ଚିତ୍ର

ନିର୍ମାଣର ଖର୍ଚ୍ଚ ଖୁବ୍ କମିଯିବ ଓ ଅଳ୍ପ ଖର୍ଚ୍ଚରେ ବହୁ ଉତ୍କୃଷ୍ଟ ଚଳଚ୍ଚିତ୍ର ନିର୍ମିତ ହୋଇପାରିବ । ତେବେ ଏ ସବୁ କାର୍ଯ୍ୟ ହାସଲପାଇଁ ସମସ୍ତ ପ୍ରଯୋଜନା ସଂସ୍ଥାମାନଙ୍କୁ ଖିଆଲ୍, ଅହଂ ଓ ଏକଚ୍ଛତ୍ରିଆ ମନୋଭାବ ଛାଡ଼ି ପରସ୍ପର ମଧ୍ୟରେ ଆତ୍ମୀୟତା ଓ ଉତ୍ତମ ସଂପର୍କ ସ୍ଥାପନ କରିବାକୁ ପଡ଼ିବ । ଏତକ ହେଲେ ଉତ୍ତମ ପ୍ରତିଯୋଗିତା ମାଧ୍ୟମରେ ଉତ୍କୃଷ୍ଟ ଛବି ନିର୍ମିତ ହୋଇ ପାରିବ ।

ଆମର ୩୫ଟି ଛବିରେ ଓଡ଼ିଶାର ନିର୍ଦ୍ଦେଶକ ମୋଟେ ଚାରିଜଣ । ବାକିତକ ସବୁ ଓଡ଼ିଶା ବାହାରର । କ୍ୟାମେରାମ୍ୟାନ୍ ଏଡ଼ିଟର, ଆର୍ଟ୍-ଡାଇରେକ୍ଟରମାନଙ୍କ ମଧ୍ୟରେ କେହି ଜଣେ ତ ହେଲେ ଓଡ଼ିଶାରୁ ନାହାନ୍ତି ! ସୁତରାଂ ଆମର ସ୍ଥିତି କ'ଣ ଆମେ ହୃଦୟଙ୍ଗମ କରି ଭବିଷ୍ୟତ ପାଇଁ ସାବଧାନ ହେବା ଓ ଏକତ୍ରିତ ହୋଇ ଉଦ୍ୟମ କରିବାର ବେଳ ବର୍ତ୍ତମାନ ଆସିଯାଇଛି ।

**ଭବିଷ୍ୟତ :**

ଶିଥିଳ ହେଉ ବା କ୍ଷିପ୍ର ହେଉ, ଓଡ଼ିଆ ଚଳଚ୍ଚିତ୍ର ନିର୍ମାଣର ଗତିକୁ ଆଜି କେହି ରୋକିପାରିବ ନାହିଁ, ଏହା ନିଶ୍ଚୟ ପ୍ରବାହିତ ହୋଇ ମହାଭାରତୀୟ କ୍ଷେତ୍ରରେ ସମଗ୍ର ଜାତି (Nation) ଓ ଦେଶର ସେବା କରିବ । ସୁତରାଂ ଭବିଷ୍ୟତକୁ ନିୟନ୍ତ୍ରଣ କରିବା ବର୍ତ୍ତମାନ ଆମର ପ୍ରଧାନ କର୍ତ୍ତବ୍ୟ । ଆମର ସ୍ୱପ୍ନ, ଆମେ ଯେପରି ଅଚିରେ ଦେଖିବା ଗୋଟିଏ ସୁନ୍ଦର ରଙ୍ଗୀନ ଓଡ଼ିଆ ଚିତ୍ର, ଯାହାକୁ କି ଓଡ଼ିଶାର ନିର୍ଦ୍ଦେଶକ, ଓଡ଼ିଶାର କ୍ୟାମେରା ମ୍ୟାନ୍, ଓଡ଼ିଶାର ଏଡ଼ିଟର ଓ ଓଡ଼ିଶାର ସମସ୍ତ ଶିଳ୍ପୀଗଣ ନିର୍ମାଣ କରିଛନ୍ତି, ଏହା ଯୁଗୋପଯୋଗୀ ହୋଇଛି, ସାଧାରଣ ଜନତାର ସମସ୍ୟା ଓ ଆବେଗକୁ ପୂର୍ଣ୍ଣ କରିଛି ଏବଂ ସମଗ୍ର ଜାତି ଓ ଦେଶର ସେବାକରୁଛି । ଆସନ୍ତୁ ଆମେ ସମସ୍ତେ ସ୍ୱପ୍ନକୁ ସତ୍ୟରେ ପରିଣତ କରିବାକୁ ଆଗେଇଯିବା ।

---





# ଓଡ଼ିଶା ଚଳଚ୍ଚିତ୍ର ନିର୍ମାଣ କେନ୍ଦ୍ର (ଷ୍ଟୁଡିଓ)

କୁସୁମ କୁମାର ମିଶ୍ର

ଏହା (ଚଳଚ୍ଚିତ୍ର ନିର୍ମାଣ କେନ୍ଦ୍ର) ଗୋଟିଏ ଅର୍ଥଉପାର୍ଜନକାରୀ ଅନୁଷ୍ଠାନ, ତଥା ଗୋଟିଏ କର୍ମଯୋଗାଣ ସଂସ୍ଥା, ଏହା ମୁକ୍ତ କଣ୍ଠରେ ସ୍ୱୀକାର କରିବାକୁ ହେବ । ମୋଟ ଲୋକସଂଖ୍ୟାରୁ ବହୁସଂଖ୍ୟକ ଉପଯୁକ୍ତ, ଅଭିଜ୍ଞ, ଦକ୍ଷତାପୂର୍ଣ୍ଣଲୋକ ଏହି ଅନୁଷ୍ଠାନରେ (ଭାରତର ବିଭିନ୍ନ ରାଜ୍ୟରେ ଥିବା ଏହି ଅନୁଷ୍ଠାନ) କାର୍ଯ୍ୟ କରି ତାଙ୍କର ଜୀବିକା ନିର୍ବାହ କରନ୍ତି । ଏହି ଅନୁଷ୍ଠାନରେ ତିଆରି ହେଉଥିବା ଚଳଚ୍ଚିତ୍ର, ପ୍ରଦେଶ, ଦେଶ ଓ ବିଦେଶରେ ପ୍ରଦର୍ଶିତ ହୁଏ । ବ୍ୟକ୍ତିବିଶେଷ, ପ୍ରାଦେଶିକ ସରକାର ଓ ଦେଶ ସରକାର (ଭାରତ ସରକାର) ଏଥିରୁ ବିପୁଳ ଅର୍ଥ ଲଭ ହିସାବରେ ପାଇଥାନ୍ତି । ଏହି ଅର୍ଥ (ଟଙ୍କା) ପ୍ରଦେଶ ଓ ଦେଶର ଯୋଜନା କାର୍ଯ୍ୟରେ ଲାଗେ । ଏହା ଅକ୍ଷରେ ଅକ୍ଷରେ ସତ୍ୟ ।

ବର୍ତ୍ତମାନ ପରିସ୍ଥିତିରେ, ଓଡ଼ିଶାରେ ଗୋଟିଏ ଏହିଭଳି ଅନୁଷ୍ଠାନ (ଚଳଚ୍ଚିତ୍ର ନିର୍ମାଣ କେନ୍ଦ୍ର) ଯେ ନିହାତି ଦରକାର, ଏହା ସମସ୍ତେ ଉପଲବ୍ଧି କରିସାରିଛନ୍ତି । କିନ୍ତୁ ଏଥିପାଇଁ ଉଭୟେ, ଓଡ଼ିଶାର ଲୋକେ ଓ ଲୋକପ୍ରତିନିଧି ସରକାର କାହିଁକି ଯେ ଚୁପ୍-ଚାପ୍ ଅଛନ୍ତି ସେବିଷୟରେ ଚିନ୍ତାକଲେ ଯେତିକି ଆଶ୍ଚର୍ଯ୍ୟ ଲାଗେ ସେତିକି ମର୍ମାହତ ହେବାକୁ ହୁଏ ।

ଓଡ଼ିଶାରେ ଚଳଚ୍ଚିତ୍ର ନିର୍ମାଣ କେନ୍ଦ୍ର (ଷ୍ଟୁଡିଓ) ପ୍ରତିଷ୍ଠା ଦିଗରେ ଜଟିଳ ଅବସ୍ଥାର ନିରାକରଣ ବା ଦୂରୀକରଣ ନିମନ୍ତେ, ଅତୀତରେ ଦିଆଯାଇଥିବା ଦୃଢ଼ ପ୍ରସ୍ତାବ ଓ ପଦକ୍ଷେପ-ମାନଙ୍କ ବିଷୟରେ କିଛିମାତ୍ର ଲେଖାଗଲା ।

ବହୁବର୍ଷ ପୂର୍ବେ, ଭୁବନେଶ୍ୱରର ଖଣ୍ଡଗିରି ପାଖରେ ଗୋଟିଏ ବିସ୍ତୃତ ପ୍ରାନ୍ତର ଉପରେ ଶିଳାନ୍ୟାସ କରାଯାଇଥିଲା, ସରକାରୀ ସ୍ତରରେ, ଚଳଚ୍ଚିତ୍ର ନିର୍ମାଣ କେନ୍ଦ୍ର (ଷ୍ଟୁଡିଓ) ପ୍ରତିଷ୍ଠା ନିମନ୍ତେ । ତାହା ସେତିକିରେ ରହିଲା । ଏଥିର କାରଣ ସରକାରୀ ସ୍ତରରେ ଜଣାଥିବ । ବେସରକାରୀ ସ୍ତରରେ ଗୋଟାଏ ଖାପଛଡ଼ା କାରଣ ଲୋକମୁଖରୁ ଶୁଣାଯାଏ ଯେ, ସେବେକାର ମନ୍ତ୍ରିମଣ୍ଡଳର ମୁଖ୍ୟମନ୍ତ୍ରୀ ସେ କାମ ଆରମ୍ଭ କରିଥିଲେ ବୋଲି, ତା'ପର ମନ୍ତ୍ରିମଣ୍ଡଳ, ଅଗ୍ରାଧିକାର ଦେଇ ଚଳଚ୍ଚିତ୍ର ନିର୍ମାଣ କେନ୍ଦ୍ରର କାର୍ଯ୍ୟ ଖଣ୍ଡଗିରିଠାରେ ଅଗ୍ରଗତି କରାଇବେ ନାହିଁ । ଏକଥା ସତ୍ୟ ବୋଲି ମନେହେଉନାହିଁ । କିନ୍ତୁ ଏ କାରଣ ଯଦି ସତ୍ୟ ହୋଇଥାଏ, ତାହାହେଲେ ଓଡ଼ିଶାବାସୀଙ୍କ ପ୍ରତି ଏହା ଦୁର୍ଭାଗ୍ୟଜନକ ବୋଲି କୁହାଯିବ ।

କଥାରେ ଅଛି "ବିଳମ୍ବରେ କାର୍ଯ୍ୟ ନାଶ ହୁଏ" । ଏକଥା ଉପରେ ଏଠାରେ ବିଶେଷ ବ୍ୟାଖ୍ୟା କରିବା ଅନାବଶ୍ୟକ । ଆଉ କାଳବିଳମ୍ବ ନକରି ଉଭୟେ ବେସରକାରୀ ସ୍ତରରେ ଓ ସରକାରୀ ସ୍ତରରେ କାର୍ଯ୍ୟ ଆରମ୍ଭ ହୋଇଯିବା ଉଚିତ ।

ବେସରକାରୀ ସ୍ତରରେ, ଓଡ଼ିଶାରେ ଚଳଚ୍ଚିତ୍ର ନିର୍ମାଣ କେନ୍ଦ୍ର ପ୍ରତିଷ୍ଠା ଦିଗରେ କ'ଣ କ'ଣ ଚେଷ୍ଟା ପ୍ରଚେଷ୍ଟା ଓ ଉଦ୍ୟମ ହୋଇଛି, ତାହା ନିମ୍ନରେ ଦିଆଗଲା, ଅଳ୍ପ ପରିମାଣରେ, ଜନସାଧାରଣଙ୍କ ଅବଗତି ନିମନ୍ତେ ।

## ବେସରକାରୀ ସ୍ତରରେ ଉଦ୍ୟମ :—

୧—ବହୁଥର ସଭା, ସମିତି, ଚର୍ଚ୍ଚା, ଆଲୋଚନାଚକ୍ର ଓ ବହୁ ସମାଲୋଚନା ହୋଇଛି । ମଝିରେ ମଝିରେ ଶତଥର ବହୁ ଉଚ୍ଚସ୍ତରର ସରକାରୀ ହାକିମମାନଙ୍କ ସହ ଦେଖାସାକ୍ଷାତ୍ ଓ କଥାବାର୍ତ୍ତା ହୋଇଛି ।

୨—ଗୋଟିଏ ବା ଦୁଇଟି ଅବା ଅନେକ ଅନୁଷ୍ଠାନ ହୋଇପାରନ୍ତି—ସେମାନଙ୍କ ତରଫରୁ ଓଡ଼ିଶା ସରକାରଙ୍କୁ ପ୍ରସ୍ତାବ ଦିଆହୋଇଛି ଯେ, ଓଡ଼ିଶା ସରକାର ଗୋଟିଏ ପୂର୍ଣ୍ଣାଙ୍ଗ "ଆଉଟ୍ ଡୋର୍ ସୁଟିଙ୍ଗ୍ ସରଞ୍ଜାମ, ଶବ୍ଦଗ୍ରହଣ ଯନ୍ତ୍ରପାତିସହ ଚଳଚ୍ଚିତ୍ର ନିର୍ମାଣ ସକାଶେ" କିଣନ୍ତୁ ଓ ଓଡ଼ିଶାର ଚଳଚ୍ଚିତ୍ର ପ୍ରଯୋଜକମାନଙ୍କୁ ଭଡ଼ା ସୂତ୍ରରେ ଦିଅନ୍ତୁ ।

୩—କେତେକ ପ୍ରଯୋଜକ ସରକାରଙ୍କୁ ପ୍ରସ୍ତାବ ଦେଇଥିଲେ ଯେ, ଓଡ଼ିଶା ସରକାର ପ୍ରତ୍ୟେକ ସିନେମା ଟିକେଟ୍ ଉପରେ, ଏକ, ଦୁଇ, ବା ତିନି ପଇସାକରି ଅଧିକା ଟିକସ୍ ବସାଇ (ଆମୋଦ, ପ୍ରମୋଦ ଟିକସ୍ ଭଳି) ତାହା ଆଦାୟ କରାଯାଉ ଓ ସେଥିରେ ଗୋଟିଏ "ପାଣ୍ଠି" ହେଉ । ସେ "ପାଣ୍ଠି"ରୁ ଅର୍ଥ ନେଇ ଓଡ଼ିଶାରେ ଚଳଚ୍ଚିତ୍ର ନିର୍ମାଣ କେନ୍ଦ୍ର ପ୍ରତିଷ୍ଠା ହେଉ ଓ ଓଡ଼ିଶାର ପ୍ରଯୋଜକମାନଙ୍କୁ ଓଡ଼ିଆ ଚଳଚ୍ଚିତ୍ର ତିଆରି ସକାଶେ ଟଙ୍କା ଋଣଆକାରରେ ଦିଆଯାଉ ।

ଉପରୋକ୍ତ ପ୍ରସ୍ତାବମାନ ଅବଧି କାର୍ଯ୍ୟକାରୀ ହୋଇନି ।

ବହୁବର୍ଷରୁ ଓଡ଼ିଶାରେ ଗୋଟିଏ ଚଳଚ୍ଚିତ୍ର ନିର୍ମାଣ କେନ୍ଦ୍ର କିପରି ହେବ, ମୁଁ ସେ ବିଷୟରେ ଚିନ୍ତାକରି, ବହୁଲୋକଙ୍କ ସହ କଥାବାର୍ତ୍ତା କରି ଠିକ୍ କଲି ଯେ, "ସମବାୟ ଭିତ୍ତିରେ" ଅନୁଷ୍ଠାନଟିଏ କଲେ ଭଲ ହେବ । ସେ ଦିଗରେ କଣ ହୋଇଛି, ଏଠାରେ ତାହାର ସୂଚନା ଦିଏ । ଅଂଶଧନ ବିକ୍ରୀ ଦିଗରେ ଚେଷ୍ଟାକରି କିଛି ଟଙ୍କା ମଧ୍ୟ ଆଦାୟ କରିଛି । ଏହି ଅନୁଷ୍ଠାନ ବିଷୟରେ ସାମାନ୍ୟ ବିବରଣୀ ଦିଏ ।

୪—ଅନୁଷ୍ଠାନଟି "ସମବାୟ ଭିତ୍ତିରେ" କରାହୋଇଛି । ଏହାରନାମ "ଓଡ଼ିଶା ସମବାୟ ଚଳଚ୍ଚିତ୍ର ନିର୍ମାଣକେନ୍ଦ୍ର ଲିଃ" ରଖାଯାଇଛି । ଏହିଅନୁଷ୍ଠାନରେ ଯେକୌଣସି ଲୋକ ଅଂଶଧନ କିଣି ସଭ୍ୟ ହୋଇପାରିବେ । ପ୍ରତ୍ୟେକ ଅଂଶଧନର ମୂଲ୍ୟ ଟ ୧୦୦୦୍ (ଏକହଜାର ଟଙ୍କା) ମାତ୍ର । ପ୍ରବେଶିକା ମୂଲ୍ୟ ଟ ୧୦୍ (ଦଶ ଟଙ୍କା) ରଖାଯାଇଛି । ଏହି ଅନୁଷ୍ଠାନଟି ରାଜ୍ୟସ୍ତରୀୟ ହେବ । ଏହାର ଲକ୍ଷ୍ୟ ହେଉଛି ଭୁବନେଶ୍ୱରରେ ଷ୍ଟୁଡିଓ ଓ ଲାବୋରେଟୋରୀ ନିର୍ମାଣ କରିବ ଓ ପରେ ପରିସ୍ଥିତି, ଅର୍ଥ, ବ୍ୟାବସାୟିକ ସୁବିଧା, ସୁଯୋଗ

ଦେଶି ଓଡ଼ିଶାର ଅନ୍ୟାସ୍ଥାନରେ ଷ୍ଟୁଡ଼ିଓ ନିର୍ମାଣ କରିବ । ଏହି ଅନୁଷ୍ଠାନର ମୂଳଧନ, ଅଂଶଧନ ବିକ୍ରୀ କରି ସର୍ବସାଧାରଣଙ୍କଠାରୁ ସଂଗ୍ରହ କରିବ ଏବଂ ଓଡ଼ିଶା ସରକାରଙ୍କଠାରୁ ଋଣ ଗ୍ରହଣ କରିବ । ଓଡ଼ିଶା ସରକାର ପ୍ରାଥମିକ ସ୍ତରରେ ଋଣ ଛଡ଼ା ଏହି ଅନୁଷ୍ଠାନକୁ ପ୍ରଥମ ପାଞ୍ଚବର୍ଷ ପାଇଁ ପରିଚାଳନାଗତ ଅର୍ଥକ ସାହାଯ୍ୟ ଦେବେ । ଏ ହେଲା ଅଳ୍ପବିସ୍ତୃତେ ବିବରଣୀ ।

## ସରକାରୀ ସ୍ତରରେ ଉଦ୍ୟମ :—

୧—ଆଗରୁ ଲେଖିଥିବା "ଭୁବନେଶ୍ୱରର ଖଣ୍ଡଗିରିଠାରେ ଶିଳାନ୍ୟାସ, ଚଳଚ୍ଚିତ୍ର ନିର୍ମାଣକେନ୍ଦ୍ର ସକାଶେ" ସରକାରୀ ଉଦ୍ୟମ ବୋଲି ଧରିବାକୁ ହେବ ।

୨—ଗତ କିଛିବର୍ଷ ପୂର୍ବେ ସେବେକାର ମୁଖ୍ୟମନ୍ତ୍ରୀ ତାଙ୍କର ସରକାରୀ "ବିଭାଗକୁ" ନିର୍ଦ୍ଦେଶ ଦେଇଥିଲେ ଯେ ଗୋଟିଏ "ଯୋଜନା" ପ୍ରସ୍ତୁତ କରିବାକୁ , ଓଡ଼ିଶାରେ ଚଳଚ୍ଚିତ୍ର ନିର୍ମାଣ କେନ୍ଦ୍ର ବିଷୟରେ । ସେ ଯୋଜନା ହେଲା କି ନହେଲା, ତାହା ଓଡ଼ିଶା ସରକାର ଓ ସରକାରୀ ସ୍ତରର ଲୋକମାନଙ୍କୁ ଜଣାଥିବ । କିନ୍ତୁ ବେସରକାରୀ ଲୋକଙ୍କୁ ଜଣାଯାଇଛି ଯେ, "ଯୋଜନା" ତିଆରି ହୋଇନି । ଏହା ଗୋଟିଏ "ଆଖିମିଟିକା" ଖେଳ ଭଳି ମନେହୁଏ ।

୩—ସରକାରୀ ସ୍ତରରେ ଆଉକିଛି ଉଦ୍ୟମ ହୋଇନି । ଏହା ଖବରନେବାରେ ଜଣାପଡ଼ୁଛି ।

ଓଡ଼ିଶା ରାଜ୍ୟରେ ବସବାସ କରୁଥିବା ଲୋକମାନଙ୍କ ପାଖରେ "ଅର୍ଥ" ଯେ ଅଭାବ ଏହା କହିବା ବା ଚିନ୍ତାକରିବା ଠିକ୍ ହେବନି । ବରଂ ପ୍ରଚୁର ପରିମାଣରେ ଅର୍ଥ ଅଛି, ଏହା ଠିକ୍ ବୋଲି ମନେକରିବାକୁ ହେବ । କିନ୍ତୁ ସେମାନେ ଯେ କାହିଁକି ଏଭଳି ଅନୁଷ୍ଠାନରେ ଅର୍ଥ ବିନିଯୋଗ କରୁନାହାନ୍ତି, ତାହାର କାରଣ ମଧ୍ୟ ଅଛି । ତାହାହେଲା— (୧) ବିଶ୍ୱାସ—(୨) ଅନୁଷ୍ଠାନ । ଲୋକମାନଙ୍କର ପ୍ରଥମେ ବିଶ୍ୱାସ ହେବା ଦରକାର ଯେ, ଏଭଳି ଅନୁଷ୍ଠାନ ଗଢ଼ିଲେ ଓ ଏଥିରେ ଅର୍ଥ ବିନିଯୋଗ କଲେ, ତାହା ଲାଭଜନକ ହେବ । ଏହି ଅନୁଷ୍ଠାନ ରାଜ୍ୟରେ ପ୍ରଥମେ ଗଢ଼ିବାକୁ ଯାଉଥିବାବେଳେ ଓଡ଼ିଶା ସରକାର ତାଙ୍କର ସାହାଯ୍ୟ କରିବା ବାଞ୍ଛନୀୟ । କାରଣ ଲୋକମାନେ ଅନ୍ୟ ବ୍ୟକ୍ତିବିଶେଷକୁ ବା ଅନୁଷ୍ଠାନକୁ ବିଶ୍ୱାସ କରି ନ ପାରନ୍ତି । ଏହା ମଧ୍ୟ ସ୍ୱାଭାବିକ । କିନ୍ତୁ ସରକାରଙ୍କୁ ନିଶ୍ଚୟ ବିଶ୍ୱାସ କରିବେ । ସେଥିପାଇଁ ଓଡ଼ିଶା ସରକାରଙ୍କୁ ସର୍ବସାଧାରଣଙ୍କଠାରୁ ଅର୍ଥ ଆଦାୟ କରିବା ଓ ତାହା ଓଡ଼ିଶା ଚଳଚ୍ଚିତ୍ର ନିର୍ମାଣ କେନ୍ଦ୍ରକୁ ଦେବା ବିଷୟରେ, ନିମ୍ନରେ ଦୁଇଟି ଦୃଢ଼ ପ୍ରସ୍ତାବ ଦିଆଗଲା । ଆଶାକରାଯାଏ, ଓଡ଼ିଶା ସରକାର ଆଉ କାଳ ବିଳମ୍ବ ନକରି, ଏ ଦିଗରେ ଦ୍ରୁତ କାର୍ଯ୍ୟାନୁଷ୍ଠାନ କରିବେ ।

## ପ୍ରଥମ ପ୍ରସ୍ତାବ :—

ଏହା ହେଲା "ଲଟେରୀ" । ଓଡ଼ିଶା ସରକାର ତାଙ୍କର ବିଭାଗ କରିଆରେ ଲଟେରୀ ଟିକେଟ୍ ବିକ୍ରୀ କରାଇ ବା ଏଜେଣ୍ଟ୍ ଦ୍ୱାରା ଏହା ବିକ୍ରୀ କରାଇ ବର୍ଷକୁ ବାରମ୍ବାର ଟଙ୍କା

ହେଠାରୁ । ପ୍ରତିଥର ଲଟେରୀ ବିକ୍ରୀଲବ୍ଧ ଧନରୁ ପୁରସ୍କାର ଦିଆଯିବା ପୂର୍ବରୁ ଶତକଡ଼ା ପଚାଶଭାଗ (୫୦%) ଓଡ଼ିଶା ଚଳଚ୍ଚିତ୍ର ନିର୍ମାଣକେନ୍ଦ୍ର ସକାଶେ ଅଲଗା ରଖାଯାଉ । ବାକୀ ୫୦% ଭାଗରୁ ପଚିଶଭାଗ (୨୫%)ରେ ଗୋଟିଏ "ପାଣ୍ଠି" ହେଉ ଓ ଓଡ଼ିଆ ଚଳଚ୍ଚିତ୍ର ନିର୍ମାଣ ସକାଶେ ପ୍ରଯୋଜକମାନଙ୍କୁ ସେ ପାଣ୍ଠିରୁ ଋଣ ଦିଆଯାଉ । ଶେଷୋକ୍ତ ପଚିଶଭାଗ (୨୫%) ଟିକେଟ୍ କିଣିଥିବା ସର୍ବସାଧାରଣଙ୍କୁ ଲଟେରୀ ନିୟମାବଳୀ ଅନୁସାରେ ପୁରସ୍କାର ଦିଆଯାଉ । ଏହି ବ୍ୟବସ୍ଥା ଓଡ଼ିଶାରେ ପୂର୍ଣ୍ଣାଙ୍ଗ ଚଳଚ୍ଚିତ୍ର ନିର୍ମାଣ-କେନ୍ଦ୍ର ଓ ତତ୍‌ସହିତ ଆନୁଷଙ୍ଗିକ ଅନୁଷ୍ଠାନମାନ ତିଆରିହେବା ପର୍ଯ୍ୟନ୍ତ ଚାଲୁ ରହୁ । ଉପରୋକ୍ତ ଭାବରେ ଆଦାୟ ଟଙ୍କା, ସରକାର "ସମବାୟ ଭିତ୍ତିରେ" ଅନୁଷ୍ଠାନକୁ ଦିଅନ୍ତୁ ବା ସରକାରଙ୍କର ଗୋଟିଏ ବିଭାଗ ଏହାକୁ ପରିଚାଳନା କରନ୍ତୁ ।

**୨ୟ ପ୍ରସ୍ତାବ :—**

ଏହା ହେଲା "ଋଣ ଗ୍ରହଣ" ।

ଓଡ଼ିଶା ସରକାର "ଋଣପତ୍ର" ବିକ୍ରୀକରି ଭାରତର ସର୍ବସାଧାରଣଙ୍କଠାରୁ ଗୋଟିଏ କୋଡ଼ିଏ ବର୍ଷିଆ, ପାଞ୍ଚକୋଟି ଟଙ୍କାର ଋଣ ଗ୍ରହଣ କରନ୍ତୁ ଓ ସେହି ଟଙ୍କା ଋଣ ଆକାରରେ ଉପରୋକ୍ତ ସମବାୟ ଅନୁଷ୍ଠାନକୁ ସୁବିଧା ଦର ସୁଧରେ ଦିଅନ୍ତୁ, ଓଡ଼ିଶାରେ ଚଳଚ୍ଚିତ୍ର ନିର୍ମାଣକେନ୍ଦ୍ର ପ୍ରତିଷ୍ଠା ନିମନ୍ତେ । ଯଦି ଉପରୋକ୍ତ ଅନୁଷ୍ଠାନ ପ୍ରତି ସରକାରଙ୍କର ବିଶ୍ୱାସ ନପାଏ, ତାହାହେଲେ **ତାଙ୍କର (ସରକାରଙ୍କର) ଗୋଟିଏ ବିଭାଗ ଏହି କାର୍ଯ୍ୟ ଉପରେ ହେବ, ତାହାର ପରିଚାଳନା ଦାୟିତ୍ୱ ନିଅନ୍ତୁ** । ଏ ଦୁଇଟି ପ୍ରସ୍ତାବରୁ ସରକାର ଗୋଟିଏ କାର୍ଯ୍ୟକାରୀ କରିବେ ବୋଲି ଆଶା କରାଯାଏ ।

ଶେଷରେ ଓଡ଼ିଶାର ଅଭିନେତା, ଅଭିନେତ୍ରୀ, ସଙ୍ଗୀତଜ୍ଞ, ଗାୟକ, ଗାୟିକା ଓ ଓଡ଼ିଆ ଚଳଚ୍ଚିତ୍ର ସହିତ ସମ୍ପର୍କ ଥିବା ସମସ୍ତ ଚଳଚ୍ଚିତ୍ର ପ୍ରେମୀ ଓ ପ୍ରଯୋଜକମାନଙ୍କୁ ଅନୁରୋଧ ଏହି ଯେ, ସେମାନେ ଓଡ଼ିଶା ସରକାରଙ୍କ ଦୃଷ୍ଟିକୁ ଓଡ଼ିଶାରେ ଚଳଚ୍ଚିତ୍ର ନିର୍ମାଣ କେନ୍ଦ୍ର ପ୍ରତିଷ୍ଠା ବିଷୟକୁ ଆଣନ୍ତୁ ଓ ସମବେତ ଚେଷ୍ଟା କରି ଏ ଦିଗରେ କିଭଳି ଦୃଢ଼ କାର୍ଯ୍ୟାନୁଷ୍ଠାନ କରାଯିବ, ସେ ବିଷୟରେ ନିଜ ନିଜର ମତାମତ ନେଇ ପ୍ରସ୍ତାବିତ କରନ୍ତୁ ।

**ଓଡ଼ିଶାରେ ଚଳଚ୍ଚିତ୍ର ନିର୍ମାଣକେନ୍ଦ୍ର ପ୍ରତିଷ୍ଠା ନିଶ୍ଚୟ ହେବ, ଏହାହିଁ ହେଉ, ସଭିଙ୍କ ଲକ୍ଷ୍ୟ ।**



# ଆଉଟଡୋର୍ ସୁଟିଙ୍ଗ୍‌ରେ ମୋର ଅନୁଭୂତି

ଅବଦୁଲ୍ ହମିଦ୍ ନାଶାଦ୍

ଶୀତର କାଳୁଆ ପରଶ ବହୁ ଦୂରରେ । ଅମାନିଆ ଖରା ଓଳପାଖରୁ ଉଠି ଏଣେତେଣେ କାହାକୁ ଖୋଜି ବୁଲୁଥାଏ । ମନଟା ମୋର କେମିତି କେମିତି ଲାଗୁଥାଏ । ନିତ୍ୟକର୍ମ ସମାପନ କରି ମୁଁ ରୂପବାଣୀ ଅଫିସଆଡ଼େ ଚାଲିଗଲି ଫର୍‌ଦର୍ ପ୍ରୋଗ୍ରାମ ଜାଣିବାପାଇଁ । ସେଠି ପହଞ୍ଚି ଶୁଣେ ତ ମ୍ୟାନେଜିଂ ଡାଇରେକ୍ଟର୍‌ଙ୍କ ନିର୍ଦ୍ଦେଶ ଅନୁସାରେ ସେହିଦିନ ସମସ୍ତଙ୍କୁ ଆଉଟଡୋର୍ ସୁଟିଙ୍ଗ୍ ପାଇଁ ତାଳଚେର ଯିବାକୁ ହେବ ।

ସମୟ ବହୁତ କମ ଥାଏ । କିନ୍ତୁ ପାଟି ଫିଟାଇବାର ଚାରା ନ ଥାଏ । ଯାହାହେଉ ଆମେ ସମସ୍ତେ ବେଡ଼ିଂପତ୍ର ବାନ୍ଧି ଯଥାସମୟରେ ଷ୍ଟେସନରେ ପହଞ୍ଚି ତାଳଚେର ଲୋକାଲ୍ ଧରିଲୁ । ମଝିରେ ମଝିରେ ଛୋଟ ଛୋଟ ଷ୍ଟେସନଗୁଡ଼ିକର କ୍ଷୀଣ କୋଳାହଳ ମଧ୍ୟରେ ଗାଡ଼ିଟା ଧିମେଇ ଧିମେଇ ମାଡ଼ି ଚାଲିଥାଏ ଆଗକୁ । ରାତି ପ୍ରାୟ ଅଧାଅଧି ପରେ ଆମେ ତାଳଚେରରେ ପହଞ୍ଚିଲୁ । ସେଠି ପହଞ୍ଚି ପ୍ରଥମେ 'ବାବୁକୁଲି' ବେଶରେ ନିଜନିଜର ଜିନିଷପତ୍ର ତଳକୁ ଓହ୍ଲାଇ ପକାଇ ଅପେକ୍ଷା କରି ରହିଲୁ ଗୋଟିଏ ଲିଫ୍ଟ୍ ପାଇଁ । ଅଳ୍ପ ସମୟ ପରେ ଆମ ଗାଡ଼ିଟା ଆସି ପହଞ୍ଚିଲା ଓ ପ୍ରଥମ ଲୋଡ଼, ମାନେ କେତେକଙ୍କୁ ନେଇ ଟାଉନ-ଆଡ଼େ ମାଡ଼ି ଚାଲିଲା । ଯାହାହେଉ ରାତି ପ୍ରାୟ ସରିଆସିଲା ବେଳକୁ ଆମେମାନେ ଟାଉନର ମୁଖ୍ୟ ଦ୍ୱାର ଦେଶରେ ପହଞ୍ଚିଗଲୁ । ଜୀବନରେ ତାଳଚେର ପରଶଟା ପାଇବା ଥିଲା ପ୍ରଥମ । ମୁଖ୍ୟ ଦ୍ୱାର ଦେଶକୁ ଗୋଟାଏ କଟାକ୍ଷ ହାଣି ଦେଖେ ତ ତାହା ଚାର୍‌ମିନାର ସିଗାରେଟ ଉପରେ ଥିବା ଛବି ବଦଳରେ ବୋଧହୁଏ ଦୁଇମିନାରର ରୂପଛଟା ପ୍ରକାଶ କରିବାରେ ବ୍ୟସ୍ତ । ଯାହାହେଉ ଟାଉନ ଭିତରେ ପହଞ୍ଚି ଗୋଟାଏ ଧୋବାଲି କୋଠାର ଉପର ମହଲାରେ ମାନେ ତଥାକଥିତ କ୍ଲବ ଘରେ ଆଡ଼ା ଜମାଇଦେଲୁ । ନିର୍ଦ୍ଦେଶକ ଓ ଅନ୍ୟାନ୍ୟ କର୍ମକର୍ତ୍ତାମାନେ ଗୋଟିଏ ଅସ୍ୱତନ୍ତ୍ର ଘରେ ଅବସ୍ଥାନ କଲେ । ଆମର ପୁରୁଣା କ୍ୟାମେରାମ୍ୟାନ ସେତେବେଳକୁ ବେମାର ଥାଆନ୍ତି । ସୁତରାଂ ତାଙ୍କ ସ୍ଥାନ ପୂରଣ କରିବାପାଇଁ କଲିକତା ନଗରୀରୁ ଜଣେ ଦକ୍ଷ କ୍ୟାମେରାମ୍ୟାନ ଇମ୍ପୋର୍ଟ ହୋଇଥାଆନ୍ତି । ଯାହାହେଉ ମୁଁ ମୋର ସଙ୍ଗୀମାନଙ୍କ ଗହଣରେ (ଶ୍ରୀଗୋପାଳ ଘୋଷ, ଶ୍ରୀ ଗୌର ଘୋଷ ପ୍ରଭୃତି) ଶୋଇପଡ଼ିଲୁ ।

ପରଦିନ ଖୁବ୍ ସକାଳୁ ଆମ୍ଭମାନଙ୍କୁ ନିର୍ଦ୍ଦେଶ ଦିଆଗଲା ଯେ ଘୋଡ଼ାରେ ଦଉଡ଼—ମାନେ ରେସ୍ ପ୍ରାକ୍ଟିସ୍ କରିବାକୁ ହେବ । ମନଟା ମୋର

ଫିକା ପଡ଼ିଗଲା, କାରଣ ଜୀବନରେ ଚଢ଼ି ଘୋଡ଼ା ଉପରେ ବସି ପନ୍ନ ରେସ୍‌ରେ ସୌଭାଗ୍ୟ କେବେ ଯୁଟିନ । ଅଷ୍ଟ୍ରେଲିଆନ୍ ହର୍ସମାନେ ପାଞ୍ଚଧାଞ୍ଚ ଘୋଡ଼ାକଥା ପଚୃରେ କଏ ? ଯାହାହେଉ ଜୀବନଟାକୁ ଗୋଟାଏ ଫାଙ୍କା ଆଟୋପ ତଳେ ବାନ୍ଧି ଘୋଡ଼ା ଶାଳରେ ପହଞ୍ଚିଗଲୁ । ସେଠି ଦେଖେ ତ ଧାଡ଼ିକୁ ଧାଡ଼ି ଅଷ୍ଟ୍ରେଲିଆନ ହର୍ଷମାନଙ୍କ ବିରାଟ ଜମାଟ । ପାଖକୁ ଯାଇଦେଖେ ତ ଘୋଡ଼ାଗୁଡ଼ାକୁ ବେଶ୍ ଉଜ୍ଜଳଡାଉଳ ଓ ଆକ୍ଟିଭ୍ । ସାଧାରଣ ଶବ୍ଦରେ ମୁହଁ ବୁଲାଇବା ଠାରୁ ଆରମ୍ଭ କରି ଦେହ ଉପରେ ମାଛି ପର୍ଯ୍ୟନ୍ତ ବି ବସାଇ ଦେବାକୁ ନାରାଜ । ତେବେ ଆମର ଅବସ୍ଥା ଯେ କ'ଣ ହେବ କିଏ କହିବ ? ଆଗକୁ ମାଡ଼ିଯାଇ ଦେଖେ ତ ଗୋଟାଏ ଘୋଡ଼ା ଲଗାମ ଚୋବାଇବାରେ ବ୍ୟସ୍ତ । ପିଠି ଉପରେ ତା'ର ବାଳବସ୍ତା ଆଉ ତା'ର ଚାଲିଛି ଅବିଶ୍ରାନ୍ତ ଡ୍ରିଲ୍ ମାନେ ଲେଫ୍ଟ୍‌ରାଇଟ୍, ଅଫ୍ ଏଣ୍ଡ୍ ଅନ୍ । ସନ୍ଦେହ ମୋର ଘନେଇ ଆସିଲା । ପଚାରି ବୁଝେଁ ତ ଘୋଡ଼ା ଚଢ଼ାଳି ଶର୍ମାଜୀ ଜବାବ ଦେଲେ—ଘୋଡ଼ାକୁ କାବୁ କରିବାକୁ ହେଉଛି ପ୍ରଥମ ଷ୍ଟେପ୍—ମାନେ ସନ୍ଦୀପ୍ତ ପନ୍ଥାର ପ୍ରଥମ ପାହାଚ । ୨ୟ ଷ୍ଟେପ୍, ୩ୟ ଷ୍ଟେପ—ଏମିତିକା ଅନେକ ଷ୍ଟେପ ଡେଇଁଗଲାପରେ ମଣିଷ ଉଠେ ତାର ପିଠି ଉପରକୁ । ଏକଥା ଶୁଣି ଛାତିଟା ମୋର ଉଠପଡ଼ ହେବାକୁ ଲାଗିଲା । କାରଣ ମୋ ପରି ଜଣେ ଅଣସବାର ଏକାବେଳେ ଫାଇନାଲ ଷ୍ଟେପ୍‌ରେ ଘୋଡ଼ାକୁ ଆଲିଙ୍ଗନ କରିବା ଗୋଟାଏ ଦୁଃସାହସ କହିଲେ ଚଳେ; କିନ୍ତୁ ସେତେବେଳେ ଓଡ଼ିଶାର ଗଜପତି ମହାରାଜାଙ୍କର ଦୂତ ବିଦ୍ୟାପତିଙ୍କର ମୁଁ ସଙ୍ଗୀ ତେବେ ଜୀବନଟା ଯାଉ ପଛକେ ଘୋଡ଼ା ଚଢ଼ିବାକୁ ହେବ । କାରଣ ମୁଁ ଯଦି ଏ ଦିଗରେ ଫେଲେ ହୁଏ, ତେବେ ଗଜପତି ବି ଏ ଦିଗରେ ଫେଲ୍ ବୋଲି ଧରିବାକୁ ହେବ । ଯାହାହେଉ ବାଛିବାଛି ଶେଷରେ ଗୋଟାଏ ମୂଲ୍ୟବାନ୍ ଘୋଡ଼ା ଚାଇଲି । ମନଟା ବେଶ୍ ପାଇଁଲା । କାରଣ ଘୋଡ଼ାଟା ଟିକିଏ ଛୋଟା ହୋଇଯାଇଥିଲା ପୋଲୋ ଖେଳରେ ଯୋଗ ଦେଇ । ସେଟା ମୋ ପକ୍ଷରେ ଥିଲା ଗୋଟାଏ ଆଶୀର୍ବାଦ । କାରଣ ସେ ଥିଲା ଗୋଡ଼ରେ ଛୋଟା ମୁଁ ଥିଲି ଚଢ଼ିବାରେ ଛୋଟା ।

ସକାଳ ଠିକ୍ ସାତଟା । ବିଦ୍ୟାପତିଙ୍କ ଗହଣରେ ହର୍ସ ରେସ୍ ଆରମ୍ଭ ହେଲା ଟ୍ରାଏଲ୍ ବେସିସ୍‌ରେ । ସଡ଼କର ଦୁଇଧାରରେ ଦର୍ଶକବୃନ୍ଦ କରତାଳି ଦେବାରେ ବ୍ୟସ୍ତ । କାରଣ ସେମାନଙ୍କର ଅନୁମାନ ବୋଧହୁଏ ଘୋଡ଼ା ଦଉଡ଼ ହେଉଛି । ପ୍ରାୟ ଘଣ୍ଟାଏକାଳ କୁଦା, ଝାଳ ବୁହାଇ ଫେରିଲୁ ବିଶ୍ରାମ କକ୍ଷକୁ । ତା'ପରେ ଆରମ୍ଭ ପ୍ଲାଟ୍‌ରେସ୍—ମାନେ ଗାଧୁଆପାଧୁଆ । ଖୋଜି ଦେଖୁଛି ପାଖରେ ଦୁଇଟି ପୋଖରୀ ଅଛି । ସେଥିରୁ ଗୋଟାଏ କେବଳ ସ୍ନାନ ପାଇଁ

ଉଡିଶ୍ଵ । ପାଖକୁ ଯାଇ ଦେଖେ ତ ପୃଷ୍ଠପୃଷ୍ଠ ପୋଖଶା ହୋଇ ରଙ୍ଗରେ ଗଲ୍ପ ଦେଖାଯାଉଛୁ । ଗଜପତିଙ୍କ ଅନୁଚରଙ୍କ ଭିତରେ ଅନେକଙ୍କର ସୁକୁମାର ତନୁ ଅନିଚ୍ଛାପ୍ରକାଶ କରି କଞ୍ଚ ପାଣିରେ ଗାଧୋଇବା ସାରିଦେଲୁ । ତା’ପରେ ଅନ୍ୟାନ୍ୟ ଜରୁରୀ କାମ ଅର୍ଥାତ୍ ଖିରପିଆ ଶେଷକରି ବିଶ୍ରାମ ନେଲୁ । ଉପର-ବେଳା ପୁଣି ସକାଳ ପ୍ରୋଗ୍ରାମର ଶଭ୍ୟ । କୌଣସି ମତେ ଦିନଟା କଟିଗଲା । ଏହିପରି ୨।୩ ଦିନ ଟ୍ରାଏଲ ପରେ ଦିନେ ସନ୍ଧ୍ୟାବେଳକୁ ମୁଁ ଆଉ ମୋର ସଙ୍ଗୀ କ୍ଷୀରୋଦ ମହାନ୍ତି ବିଖ୍ୟାତ ରାଣୀ ପାର୍କର କଡେକଡେ ବୁଲିବାକୁ ବାହାରି-ଗଲୁ । ବୁଲିବାଟା ଆରମ୍ଭ ହୋଇନି ଠିକ୍ ଏହି ସମୟରେ ଜଣେ ମାତାଲ୍ ବ୍ୟକ୍ତି ଧୂମକେତୁ ରୂପେ ସିନ୍‌ଉପରେ ସିଧା ଦେଖାଦେଇ ମୋର ପାଦଧରି ସ୍ପର୍ଶଣଦେବାକୁ ଲାଗିଲେ । ମୋତେ ପଞ୍ଜାବୁତ ସାହେବ ବୋଲି ସମ୍ବୋଧନ କରି ରାଜଗାଦି ଗ୍ଲ୍ଲ-ଯିବାରେ ସମବେଦନା ପ୍ରକାଶ କରିବା ସଙ୍ଗେ ସଙ୍ଗେ କୃପାଭିକ୍ଷା କରିବାକୁ ଲାଗିଲେ । ଅନ୍ୟ କୌଣସି ଉପାୟ ନଦେଖି ତାକୁ ମୋର ସେକ୍ରେଟେରୀ ସହିତ କଥାବାର୍ତ୍ତା (କ୍ଷୀରୋଦ ମହାନ୍ତିଙ୍କ ପ୍ରତି ନିର୍ଦ୍ଦେଶ ଦେଇ) କରିବାକୁ କହିଲି ଆଉ ଲୋକଟା ଯେମିତି କ୍ଷୀରୋଦ ଆଡ଼କୁ ମୁହାଁଇଛି ମୁଁ ପ୍ରାଣବିକଳରେ ଦେଲି ଚମ୍ପଟ ।

ସୁଟିଂ ଦିନ ଆସି ପହଞ୍ଚିଲା । ରାତି ପ୍ରାୟ ୪ଟାରୁ ଉଠି ଆମେମାନେ ଚାଲିଗଲୁ ଦାଢ଼ି ଗୁମ୍ଫିବାରେ । ମେକଅପ୍, ନିର୍ଦ୍ଦେଶକ ପଦେପଦେ ସାହାଯ୍ୟ କରୁଥାନ୍ତି । ମେକ୍‌ଅପ୍ ସରିଲା ବେଳକୁ ବାହାରେ ପ୍ରାୟ ୩୦୦ ସଶସ୍ତ୍ର ସୈନିକ ମାନଙ୍କର ବିରାଟ ଗଜପତି ବାଟାଲିଆନ ସଜ୍ଜିତ ହୋଇ ଛିଡ଼ାହୋଇ ଥାଆନ୍ତି । ହାତରେ ସେମାନଙ୍କର ବର୍ଚ୍ଛା ଓ ମୁଣ୍ଡରେ ପଗଡ଼ି । ଘୋଡ଼ାଗୁଡ଼ାକ ବି ସଜ୍ଜାହୋଇ ଛିଡ଼ାହୋଇଥାଆନ୍ତି । ଗୋଟିଏ ହାତୀ ଉପରେ ଜଣେ ମାହୁନ୍ତ ଗୋଟାଏ ଲମ୍ବ ତୂରୀ ଫୁଙ୍କିବାରେ ବ୍ୟସ୍ତ । ଅପୂର୍ବ ବେଶରେ ସମସ୍ତେ ସଜ୍ଜିତହୋଇ ନିଜନିଜ ବାହନରେ ବସିପଡ଼ିଲୁ । ଗାଲିଗୁଡ଼ାକ ଇସ୍ପାତର ଧାରକୁ ଗାଢ଼ ଚୁମ୍ବନ କରି ଜଳିଉଠୁଥାଏ । ତା’ପରେ ନିର୍ଦ୍ଦେଶକ ମହାଶୟଙ୍କର ଠିକ୍ ନିର୍ଦ୍ଦେଶ ଅନୁସାରେ ଆମେ ଆଗକୁ ମାଡ଼ି ଚାଲିଲୁ । ଆଗେ ଆଗେ ମାହୁନ୍ତର ତୂରୀ ଆଗମନର ହେରାଲ୍ଡ—ମାନେ ସମ୍ବାଦ ପରିବେଷଣ କରୁଥାଏ । ତା’ ପଛକୁ ଫଂଖିଏ ଅଶ୍ୱାରୋହୀ ସୈନ୍ୟ ଓ ପଛକୁ ଗଜପତିଙ୍କର ବାଟାଲିଆନ ଥାଆନ୍ତି । ବାଟାଲିଆନ ପଛକୁ ଅନୁଚରଙ୍କ ଗହଣରେ ବିଦ୍ୟାପତିଙ୍କ ରଥର ଘର ଘର ଶବ୍ଦ ବେଶ୍ ତାଳ ପକାଇଗଡ଼ ଚାଲିଥାଏ ଆଗକୁ । ଦର୍ଶକଙ୍କର ଭିଡ଼ ବେଳକୁବେଳ ବଢ଼ିଚାଲିଥାଏ । ରାଜପ୍ରାସାଦର ଅଳ୍ପ ଦୂରରେ ଜଗନ୍ନାଥ ମନ୍ଦିର ମୋଡ଼ ଉପରେ କ୍ୟାମେରା ଫିଟ୍ ହୋଇଥାଏ । ସେଠାରେ ଦର୍ଶକଙ୍କ ଭିଡ଼ ଦଶ ହଜାର

ଉପରେ; ଫଳରେ ପୋଲାର୍ ସାହାଯ୍ୟରେ ଆମେ ଆଗେଇ ଚାଲିଲୁ । ଠିକ୍ ମୋଡ଼ଉପରେ ଦୁଇଟା ପାସିଙ୍ଗ୍ ସଟ୍ ଗ୍ରହଣ କରାଗଲା । ତା'ପରେ ପୁଣି ଧଳବାଜ । ଭାରତ ପ୍ରସିଦ୍ଧ ସିଂହଦ୍ୱାରର ଅଳ୍ପଦୂରରେ ରିମେକ୍‌ଅପ୍ ଓ କ୍ୟାମେରା ରିପ୍ଲେସମେଣ୍ଟ୍ ମାନେ ପୁଣିଥରେ ଫିଟ୍ ଫାଟ୍ । ସେତେବେଳକୁ ମୁଣ୍ଡ ଉପରକୁ ବେଳ ପ୍ରାୟ ଗଡ଼ିଗଲାଣି । ଟାଣୁଆ ଗମ୍ ମାନେ ଅଠାସାହାଯ୍ୟରେ ଦାଢ଼ି ଚଂଗୁ ଓ ମୁହଁ ଉପରେ ଲଗାଯାଇଥିବା ନକଲି କେଶ ଗୁଡ଼ାକ ଛୁଂଚି ଫୋଷ୍କାଳପରି ଜଣାପଡ଼ୁଥାଏ । କାନକୁ ଜୋର୍‌ରେ କାମୁଡ଼ି ଧରିଥିବା କୁଣ୍ଡଳ ଗୁଡ଼ାକ ଦାଉରେ କାନଗୁଡ଼ାକ ପୂରାପୂରି ନିର୍ଜୀବ ହୋଇ ପଡ଼ିଥାଆନ୍ତି । ଝାଳକଥା ପଚାରେ କିଏ ? ତଥାପି ଆମେମାନେ ପୂରା କାଇଦାରେ ଆମଆସନ ଉପରେ ଦୃଢ଼ ଥାଉ । ତା'ପରେ ପୁଣି ମଝିରେ ମଝିରେ ଲେଫ୍‌ଟ ରାଇଟ୍ ଫରଓ୍ୱାର୍ଡ଼ ବ୍ୟାକ୍‌ଓ୍ୱାର୍ଡ଼ । ମୋଟଉପରେ ଆମ୍ଭମାନଙ୍କ ଅବସ୍ଥା ସେତେବେଳେ ପହଞ୍ଚି ସାରିଥାଏ ପୂରାପୂରି ପଞ୍ଚମରେ । ଏତିକିବେଳକୁ କ୍ୟାମେରାମ୍ୟାନ ଓ ନିର୍ଦ୍ଦେଶକଙ୍କ ମଧ୍ୟରେ ଲାଗିଲା ଗୋଟାଏ ବାକ୍‌ବଚସା ମାନେ ଟଗ୍-ଅଫ୍-ଓ୍ୱାର୍ । କୌଣସି ମତେ ଗୋଟାଏ ରଫାନାମା ହେବାପରେ ସୁଟିଂ କାମ ସମାପ୍ତ ହେଲା । ତା'ପରେ ୨।୩ ଦିନ ମଧ୍ୟରେ କେତେକ ସାଇଡ଼୍ ସୁଟିଂ ମଧ୍ୟ ହେଲା । ଯଥାସମୟରେ ଆମେମାନେ କଟକ ଫେରିଆସିଲୁ । କର୍ମକର୍ତ୍ତାମାନେ ପ୍ରୋସେସିଂ ପାଇଁ ଫିଲ୍ମକୁ ଲାବୋରାଟୋରିକୁ ପଠାଇଦେଲେ ।

ଆମେସବୁ ଅପେକ୍ଷା କରି ବସିଥାଉ । ଶ୍ରୀଜଗନ୍ନାଥ ପିକ୍‌ଚର ଆସିବ— ଲୋକେ ଦେଖିବେ— ସର୍ବସାଧାରଣଙ୍କର ମୂଲ୍ୟ ଓ ଶ୍ରମସାର୍ଥକ ହେବ । କିଛିଦିନ ପରେ ପିକଚର୍‌ଟି ଆସି ପହଞ୍ଚିଗଲା । ପ୍ରଥମକରି ବହୁ ନିମନ୍ତ୍ରିତ ବ୍ୟକ୍ତିଙ୍କ ଆଗରେ ପିକ୍‌ଚରଟି ପରିବେଷଣ କରାଗଲା । ଦର୍ଶକ ଗ୍ୟାଲେରୀରେ ଆମେ ଅପେକ୍ଷାକରି ବସିଥାଉ । ବହୁକଷ୍ଟସାଧ୍ୟ କରିଥିଲେ ଆମର ବାଟାଲିଅନ୍ ସଟ୍ ଦେଖିବାପାଇଁ । ମାତ୍ର ଏ କ'ଣ ? ମାତ୍ର କେଇଟା ସେକେଣ୍ଡ୍‌ରେ ବାଟାଲିଆନ ସଟ୍‌ଟା ପରଦାବକ୍ଷରୁ ଉଭେଇଗଲା । କଥା କ'ଣ ? କିଛି ବୁଝାଗଲା ନାହିଁ । ତା'ପରେ ଚାଲିଲା ଅନୁସନ୍ଧାନ । ବହୁ ଚେଷ୍ଟା ପରେ ଜଣାପଡ଼ିଲା ଯେ କ୍ୟାମେରା ଲିକ୍ ଥିବାରୁ-ମାନେ କଣା ଥିବାରୁ ସୁଟିଂବେଳେ ଫିଲ୍ମ ଏକ୍‌ସପୋଜ୍ ହୋଇଯାଇଥିଲା । ପ୍ରାୟ ୧୦ହଜାର ଟଙ୍କାରେ ଏଇଯେଉଁ ସୁଟିଂ ହୋଇଥିଲା, ତା'ରପରିଚୟ ପ୍ରତ୍ୟେକ ଓଡ଼ିଆ ନିଜ ଆଖିରେ ଦେଖିଥିବେ । ଏଥିରୁ ଆମେ କେଉଁଠି ଏବଂ ଆମର ଭବିଷ୍ୟତ ଯେ କ'ଣ ତାହା ବେଶ୍ ଅନୁମାନ କରାଯାଇପାରେ ।

( ଶତପୁଷ୍ପ ସୌଜନ୍ୟରୁ )

# ସ୍ମରଣୀୟ ଚଳଚ୍ଚିତ୍ର

ନିତାଇ ପାଲିତ



ଆମ୍ଭେମାନେ ବହୁବାର ଶୁଣିଥିବା, "ବାଃ, ଏ ଏକ ସ୍ମରଣୀୟ ଚଳଚ୍ଚିତ୍ର"। ଏଠାରେ ଏହି 'ସ୍ମରଣୀୟ' ଶବ୍ଦଟିକୁ ଲକ୍ଷ୍ୟ କରନ୍ତୁ । ଏହାର ପ୍ରକୃତ ଅର୍ଥ କଣ ?

ସାଧାରଣତଃ ଆମେ ଚଳଚ୍ଚିତ୍ର ଦେଖୁ ଏବଂ ପରେ ଭୁଲିଯାଉ । ଅବଶ୍ୟ ଅଳ୍ପ କେତୋଟି ଚଳଚ୍ଚିତ୍ରର କେତେକ ଦୃଶ୍ୟ ଆମ ସ୍ମୃତି ପଟରେ ଲାଗି ରହେ । ସେହା ହୁଏତ ଆମର ଚିନ୍ତାଧାରା, ଧାରଣା ବା ଅନୁଭୂତି ସହ ଏକାତ୍ମବୋଧରେ ଆମମାନଙ୍କୁ ସ୍ପର୍ଶ କରେ ଏବଂ ଅତୀତରେ କେବେ ଦେଖା ଦେଇ ନଥିବା ଏକ ଅବିସ୍ମରଣୀୟ ଚିହ୍ନ ଛାଡ଼ିଯାଏ, କିମ୍ବା ଆମ ମନର ବକ୍ଷଃପଟରେ ଏକପ୍ରକାର ଶୂନ୍ୟତା, ଏକ ପ୍ରକାର ନିସ୍ତବ୍ଧତା ସୃଷ୍ଟି କରେ । ଏହି ପ୍ରକାର ଚଳଚ୍ଚିତ୍ର ଅତି ସୂକ୍ଷ୍ମ ଭାବରେ ଏକ ନୂତନ ଆତ୍ମଚେତନା ଆଣିଦିଏ ।

ବାସ୍ତବ ଜୀବନରେ ଆମ୍ଭମାନଙ୍କ ମଧ୍ୟରୁ ଅନେକଙ୍କର ନିଜର ଅତୀତ ଜୀବନ, ପାରିପାର୍ଶ୍ୱିକ ଅବସ୍ଥା ସମ୍ବନ୍ଧରେ ପରିଷ୍କାର ସ୍ମରଣ ଥାଏ । କିନ୍ତୁ ସ୍ମରଣୀୟ ସ୍ମୃତି ଗୁଡ଼ିକୁ ସମସ୍ତେ ପୋଷଣ କରି ରଖନ୍ତି ନାହିଁ । କାରଣ ଏହି ସ୍ମୃତି ବିସ୍ମୃତ ଜୀବନର ଦୁଃଖ ଆବିଳତା, ଦୁର୍ଦ୍ଦଶା, ଅପମାନ କିମ୍ବା ସମ୍ବର୍ଦ୍ଧନା ବହନ କରି ଆଣିପାରେ । ଏହି କାରଣରୁ ଅର୍ଥାତ୍ ଏହି ସବୁ ସ୍ମୃତିର ବାହକ ହେବାରୁ ଅବିସ୍ମରଣୀୟ ଚଳଚ୍ଚିତ୍ରର ଏକ ନିଜସ୍ୱ ଆବେଗ ରହିଛି । ହେଲେ ତାହା ବ୍ୟକ୍ତି-କୈନ୍ଦ୍ରିକ, କିନ୍ତୁ ବିଶ୍ୱାତ୍ମକ ନୁହେଁ । ସ୍ମୃତି ପଟରେ ଲାଗି ରହିବାର ଏହି ଗୁଣ ଯେଉଁ ଚଳଚ୍ଚିତ୍ରରେ ରହିଛି, ତାହା କେବଳ ସ୍ମରଣୀୟ ବୋଲି ଗୃହୀତ ।

ଏହି ଧରଣର ଚଳଚ୍ଚିତ୍ରର ବିଷୟବସ୍ତୁ ଓ ଭାବଧାରାରେ ମୌଳିକତା ଅଛି ବୋଲି ଆମେ କହି ପାରିବା କି ? ହୁଏତ ମୌଳିକତା ଥାଇପାରେ । କିନ୍ତୁ ଏହାର ଅର୍ଥ କଣ ବର୍ତ୍ତମାନ ଆବିଷ୍କୃତ ମୌଳିକତା ପୂର୍ବରୁ ନଥିଲା ?

ହଁ ଥିଲା । କିନ୍ତୁ ଆମ୍ଭେମାନେ ପୂର୍ବରୁ ଏଥିପ୍ରତି ଦୃଷ୍ଟିପାତ କରି ନଥିଲୁ କିମ୍ବା ଏଥିପ୍ରତି ଦୃଷ୍ଟି ନିକ୍ଷେପ କରିବାର ପ୍ରଚେଷ୍ଟା ମଧ୍ୟ କରି ନଥିଲୁ । ଅନ୍ୟାର୍ଥରେ କହିବାକୁ ଗଲେ ଏହା ଏବେ ଆମ ସମ୍ମୁଖରେ ବିକଶିତ ହେଲା ବା ଆମେ ଅନ୍ତର୍ଦୃଷ୍ଟିରେ ଏହା ଅନୁଭବ କଲୁ ।

ଉଦାହରଣ ସ୍ୱରୂପ କାହିଁ କେଉଁ ଯୁଗରୁ ମୋ ଘର ଆଗରେ ଏକ ଉଚ୍ଚ ଦେବଦାରୁ ଗଛ ଆକାଶକୁ ମୁଣ୍ଡ ଟେକି ଠିଆ ହୋଇଛି। ମୁଁ ଏହାକୁ ଶୈଶବରୁ ଦେଖି ଆସୁଛି। ଅଥଚ ଏହା ପ୍ରତି କେବେ ନଜର ଦେଇ ନଥିଲି। ହଠାତ୍ କୌଣସି ଏକ ମୁହୂର୍ତ୍ତରେ ମୁଁ ଏହି ଗଛଟିକୁ ଆବିଷ୍କାର କଲି ଏବଂ ଏହାର ଅନ୍ତର୍ନିହିତ ସୌନ୍ଦର୍ଯ୍ୟକୁ ହୃଦୟଙ୍ଗମ କରିପାରିଲି। ଅର୍ଥାତ ବହିଃଦୃଷ୍ଟିରେ ତଥା ଅନ୍ତଃଦୃଷ୍ଟିରେ ଏହା ମୋ ମନ ରାଜ୍ୟରେ ବିକଶିତ ହୋଇ ଉଠିଲା।

ଯାହା ଏହିପରି ବିକଶିତ ହୁଏ, ତାହାହିଁ ବସ୍ତୁର ସତ୍ୟତା ଏବଂ ମୋର ଚିନ୍ତାଧାରାର ସତ୍ୟତା।

ଚଳଚ୍ଚିତ୍ର କ୍ଷେତ୍ରରେ କ୍ୟାମେରା ମାଧ୍ୟମରେ କୌଣସି ଏକ ବସ୍ତୁର ପୁନଃ ପ୍ରକାଶ କେବଳ ଏହାକୁ ସ୍ମରଣୀୟ କରିପାରେ ନାହିଁ। କ୍ୟାମେରାର ସୁଦକ୍ଷ ପରିଚାଳନା ଦ୍ୱାରା ଯଦି ବସ୍ତୁଟିର ଅନ୍ତର୍ନିହିତ ଉଦ୍ଦେଶ୍ୟ ଓ ଚରିତ୍ରଗୁଡ଼ିକର ଭାବଭଙ୍ଗୀକୁ ଯଥାଯଥ ଭାବେ ଗ୍ରହଣ କରାଯାଇ ମନସ୍ତାତ୍ତ୍ୱିକ ବିନ୍ଦୁକୁ ସ୍ପର୍ଶ କରାଯାଇପାରେ, ତେବେ ଯାଇ ଏହା ସମ୍ଭବପର ହୋଇପାରେ। ଯେତେବେଳେ କୌଣସି ଚଳଚ୍ଚିତ୍ର ଏହି ଅନ୍ତର୍ନିହିତ ଭାବଧାରାର ଚିତ୍ର ନିଜଠାରେ ବହନ କରି ଏହାର ସତ୍ୟକୁ ଦର୍ଶକଙ୍କ ସମ୍ମୁଖରେ ଉଦଘାଟିତ କରାଏ, ସେତେବେଳେ ତାହା ଅବିସ୍ମରଣୀୟ ହୋଇ ଉଠେ। ବାସ୍ତବିକ ଏହିଭଳି ଚଳଚ୍ଚିତ୍ର ଗୁଡ଼ିକହିଁ ସ୍ମରଣୀୟ।



# ଓଡ଼ିଆ ଚଳଚ୍ଚିତ୍ରର ଭବିଷ୍ୟତ

ଧୀର ବିଶ୍ୱାଳ

"ଜୀବନ ରଙ୍ଗ"ର ସମ୍ପାଦକ ଶ୍ରୀ ରଣଧୀର ଦାସ ତାଙ୍କର ମାସିକ ସାହିତ୍ୟ ପତ୍ରିକାର ଗୋଟିଏ ସଂଖ୍ୟାକୁ ଓଡ଼ିଆ ଚଳଚ୍ଚିତ୍ର ବିଶେଷାଙ୍କ ରୂପେ ପ୍ରକାଶ କରୁ-ଥିବାରୁ ମୁଁ ତାଙ୍କୁ ସାଧୁବାଦ ଜଣାଉଛି । ଓଡ଼ିଆ ଚଳଚ୍ଚିତ୍ର ଶିଳ୍ପ ଯେତେବେଳେ ଆସି ଶେଷ ଅବସ୍ଥାରେ ପହଞ୍ଚିବାକୁ ବସିଛି ସେଇ ସମୟରେ 'ଏପରି ଏକ ବିଶେଷାଙ୍କ ପ୍ରକାଶ କରି ରଣଧୀର ବାବୁ ସମସ୍ତଙ୍କର ଧନ୍ୟବାଦାର୍ହ । ଏହି ସଂଖ୍ୟାରେ ଯେଉଁ ସୁଚିନ୍ତିତ ଲେଖା ସବୁ ପ୍ରକାଶ ପାଇବ ମୋର ବିଶ୍ୱାସ ସେଗୁଡ଼ିକ ଆମ ସରକାର ଓ ଜନସାଧାରଣଙ୍କ ଉପରେ ବିଶେଷ ପ୍ରଭାବ ପକାଇବ ଓ ଓଡ଼ିଆ ଚଳଚ୍ଚିତ୍ରର ଭବିଷ୍ୟତ ଉଜ୍ଜ୍ୱଳମୟ ହେବ । ରଣଧୀର ବାବୁ ଯେଉଁ ଲେଖା ପାଇଁ ମୋତେ ହୁକୁମ ଦେଇଛନ୍ତି ମୁଁ ଏଇ ଲେଖାଟି ଲେଖିବାର ସୁଯୋଗ ପାଇଥିବାରୁ ମୁଁ ତାଙ୍କୁ ମୋର ଅନ୍ତରର ଧନ୍ୟବାଦ ଜଣାଉଛି । ଆଶା କରେ ମୋର ଏହି ଲେଖାଟି ଆମର ଜନପ୍ରିୟ ସରକାର ତଥା ଅଗଣିତ ପାଠକ ବା ପାଠିକାଙ୍କୁ ଆମ ଚଳଚ୍ଚିତ୍ରର ଭବିଷ୍ୟତ ସମ୍ବନ୍ଧରେ ଅନେକ ତଥ୍ୟ ଯୋଗାଇ ଦେବ ।...... ସ୍ୱର୍ଗତଃ ଦାଦା ସାହେବ ଫାଲକେ ୧୯୧୩ ମସିହାରେ ଭାରତବର୍ଷରେ ପ୍ରଥମେ "ରାଜା ହରିଶ୍ଚନ୍ଦ୍ର" ଛବି ନିର୍ମାଣ କରିଥିଲେ ।

ଓଡ଼ିଶାରେ ପ୍ରଥମେ ସ୍ୱର୍ଗତଃ ମୋହନସୁନ୍ଦର ଦେବ ଗୋସ୍ୱାମୀ ୧୯୩୪ ମସିହାରେ "ସୀତା ବିବାହ" ଚଳଚ୍ଚିତ୍ର ନିର୍ମାଣ କରିଥିଲେ । ତାଙ୍କପରେ ପୁଣି ୧୯୪୮ ମସିହାରେ ଗ୍ରେଟ ଇଷ୍ଟର୍ଣ୍ଣ ମୋଭିଟନ ପୌରାଣିକ ଚିତ୍ର "ଲଳିତା" ନିର୍ମାଣ କରିଥିଲେ । ରୂପଭାରତୀ ଲିମିଟେଡ଼ର ପ୍ରଥମ ଓଡ଼ିଆ ଚିତ୍ର 'ଶ୍ରୀ ଜଗନ୍ନାଥ' ଓଡ଼ିଶାରେ ଚହଲ ପକାଇ ଦେଇଥିଲା । ଏ ଚିତ୍ର ବହୁତ ଅର୍ଥ ପାଇ ଲାଭବାନ ହୋଇଥିଲା । ଏହି ସଂସ୍ଥା ଚଳଚ୍ଚିତ୍ର ଶିଳ୍ପରେ ଅନେକ ଅଗ୍ରଗତି କରି ପାରିଥାନ୍ତା । କିନ୍ତୁ ଏଇ ଗୋଟିଏ ଛବି ପରେ ଏଇ ସଂସ୍ଥା ବୃନ୍ଦାବନ ପାଇଁ ବନ୍ଦ ହୋଇଗଲା । ୧୯୫୧ରେ ପ୍ରଥମ ଓଡ଼ିଆ ସାମାଜିକ ଛବି ହେଲା 'ରୋଲସ-୨-୮' । କିନ୍ତୁ ପ୍ରଯୋଜକ ରଥକାନ୍ତ ପାଢ଼ିଙ୍କର ଏ ହେଲା ପ୍ରଥମ ଓ ଶେଷ ଛବି ।

୧୯୫୬ ଠାରୁ ୧୯୫୯ ମଧ୍ୟରେ ସପ୍ତଶଯ୍ୟା, ଆମର ଗାଁ ଝିଅ, କେଦାର ଗୌରୀ, ଭାଇଭାଇ, ମା ଓ ମହାଲକ୍ଷ୍ମୀପୂଜା ଚଳଚ୍ଚିତ୍ରମାନ ନିର୍ମିତ ହୋଇ ପ୍ରଦର୍ଶିତ ହେଲ । ଏହା ମଧ୍ୟରେ ସାମାଜିକ ଓ ପୌରାଣିକ ଛବି ମଧ୍ୟ ରହିଛି । ଉତ୍କଳ ଚଳଚ୍ଚିତ୍ର ପ୍ରତିଷ୍ଠାନ ପ୍ରା.ଲି. ମହାଲକ୍ଷ୍ମୀ ପୂଜା, ଦସ୍ୟୁ ରତ୍ନାକର, ପରଶୁରାମ ପରେ ପରେ ତୃତୀୟ ଛବି 'କଂସ' ଓ 'ନାଗପୂଜା' କରିଥିଲେ । ୧୯୬୧ ମସିହାରୁ ଏହି ଅନୁଷ୍ଠାନ ଆଜି ପର୍ଯ୍ୟନ୍ତ ଆଉ ଓଡ଼ିଆ ଛବି ନିର୍ମାଣ କରିପାରି ନାହିଁ ।

୧୯୬୦ରେ ପ୍ରଥମ ଓଡ଼ିଆ ଛବି ରାଷ୍ଟ୍ରପତି ପୁରସ୍କାର ପାଇଲା "ଶ୍ରୀଲୋକନାଥ" । ରୂପରାଗ ପ୍ରାଃଲିଃ ଦ୍ୱାରା ପ୍ରସ୍ତୁତ ଏହି ଛବି ଓଡ଼ିଶା ଚଳଚ୍ଚିତ୍ର କ୍ଷେତ୍ରରେ ଆଉ ଏକ ମାଇଲ ଖୁଣ୍ଟ । କିନ୍ତୁ ଏହି ସଂସ୍ଥାର ମଧ୍ୟ ଏ ଛବି ପରେ ଆଉ ଛବି ହୋଇ ନାହିଁ ।

କେତେଜଣ ଯୁବକ କଳାକାର ପ୍ରଥମ କରି ପାଦ ବାହାର କରି ଆଗେଇ ଆସିଲେ ୧୯୬୧ ମସିହାରେ । ପଞ୍ଚସଖା ପିକଚର୍ସ ନାମରେ ଏକ ଯୌଥ ସଂସ୍ଥା ଗଢ଼ି ଉଠିଲା । ଏମାନଙ୍କର ପ୍ରଥମ ଛବି ନୂଆବୋଉ ରାଷ୍ଟ୍ରପତି ପୁରସ୍କାର ପାଇଲା । ଏଇ ସଂସ୍ଥା ପରେ ପରେ ମାଣିକ ଯୋଡ଼ି, ନବଜନ୍ମ ଓ କଏ କାହାର ନିର୍ମାଣ କରି ଓଡ଼ିଶା ଚଳଚ୍ଚିତ୍ର ଇତିହାସରେ ତାଙ୍କର ସ୍ଥାନ ପ୍ରତିଷ୍ଠା କରିଦେଲେ । ନବଜନ୍ମ ମଧ୍ୟ ରାଷ୍ଟ୍ରପତି ପୁରସ୍କାର ପାଇଲା ।

"କଏ କାହାର" ଆଜି ପର୍ଯ୍ୟନ୍ତ ଯେତେ ଓଡ଼ିଆ ଛବି ନିର୍ମାଣ ହୋଇଛି ତାହା ସବୁଠାରୁ ବେଶୀ ଅର୍ଥ ଉପାର୍ଜନ କରି ଓଡ଼ିଶାର ବିଭିନ୍ନ ପ୍ରାନ୍ତରେ ରେକର୍ଡ଼ ସୃଷ୍ଟି କରିଛି ।

ଶ୍ରୀ ଗୌରପ୍ରସାଦ ଘୋଷ ଓ ଶ୍ରୀମତୀ ପାର୍ବତୀ ଘୋଷ 'ମା', 'ଲକ୍ଷ୍ମୀ', 'କା' ଓ 'ସ୍ତ୍ରୀ' ପର ପର ୪ଟି ଛବି ନିର୍ମାଣ କରିଛନ୍ତି । 'କା' ଛବି ଓଡ଼ିଶାର ଗୃହଆଡ଼େ ବହୁତ ଦିନ ଧରି ଚାଲିଥିଲା ଏବଂ ଖୁବ୍ ଭଲ ଅର୍ଥ ଉପାର୍ଜନ କରିଥିଲା । କା ଓ ସ୍ତ୍ରୀ ରାଷ୍ଟ୍ରପତି ପୁରସ୍କାର ପାଇଥିଲେ ।

ସେଇପରି ବାବୁଲାଲ ଦୋଷିଙ୍କର ପ୍ରଥମ ଛବି 'ଅମଡ଼ା ବାଟ' ଓଡ଼ିଶାରେ ଚାଞ୍ଚଲ୍ୟ ସୃଷ୍ଟି କରିଥିଲା ଓ ବହୁ ଦିନ ଧରି ଅନେକ ପ୍ରେକ୍ଷାଳୟରେ ଚାଲିଥିଲା । ଶ୍ରୀ ଦୋଷି ପରେ ପରେ ଅଭିନେତ୍ରୀ, ମାଟିର ମଣିଷ, ଅଧିକ ମେଘ ନିର୍ମାଣ କରି ଓଡ଼ିଆ ଚଳଚ୍ଚିତ୍ରକୁ ବହୁତ ଦୂର ଆଗେଇ ନେଇଛନ୍ତି । ତାଙ୍କର 'ମାଟିର ମଣିଷ' ଓ 'ଅମଡ଼ା ବାଟ' ରାଷ୍ଟ୍ରପତି ପୁରସ୍କାର ପାଇଥିଲେ । ମାଟିର ମଣିଷ ଆନ୍ତର୍ଜାତୀୟ ଚଳଚ୍ଚିତ୍ର କ୍ଷେତ୍ରରେ ଆଲୋଡ଼ନ ସୃଷ୍ଟି କରିଥିଲା ଓ ଓଡ଼ିଆ ଚଳଚ୍ଚିତ୍ର ଭାରତବର୍ଷ ବାହାରକୁ ଯାଇ ବେଶୀ ଖ୍ୟାତି ଅର୍ଜନ କରିଥିଲା । ଏହି ତିନି ଚାରିଟି ସଂସ୍ଥାକୁ ଛାଡ଼ି ଦେଲେ ଆଉ ଯେତେ ପ୍ରଯୋଜକ ଓଡ଼ିଶାକୁ ଆସିଛନ୍ତି ସମସ୍ତେ ଗୋଟିଏ ବା ଦୁଇଟି ଛବି ନିର୍ମାଣ କରି ବିଦାୟ ନେଇଛନ୍ତି । ଡାଇମଣ୍ଡ ଭାଇର 'ସାଧନା', ଶ୍ରୀନିବାସ ପାଇକରାୟଙ୍କର 'ଜୀବନ ସାଥୀ', ସୌମେନ୍ଦ୍ର ମିଶ୍ରଙ୍କର "ସୂର୍ଯ୍ୟମୁଖୀ" ଧୀରେନ

ପଣ୍ଡନାଏକଙ୍କର "ଅରୁନ୍ଧତୀ" ଏ ସମସ୍ତ ଛବି ରାଷ୍ଟ୍ରପତି ପୁରସ୍କାର ପାଇଛନ୍ତି । କିନ୍ତୁ ଏଇ ପ୍ରଯୋଜକମାନେ ଆଉ ଛବି କରି ନାହାନ୍ତି ବା ନିର୍ମାଣ କରିବାର ଯୋଜନା ମଧ୍ୟ ନାହିଁ । ଶିବ୍ରସ୍ବ ପଣ୍ଡନାଏକଙ୍କର 'ଭାଇ ଭାଉଜ', ସୁଶ୍ରୀ ପଣ୍ଡନାଏକଙ୍କର 'ବଂଧନ', ଶ୍ରୀ ଫିଲ୍ମସ୍ ଙ୍କର "ମଲାଜହ୍ନ" (ରାଷ୍ଟ୍ରପତି ରୌପ୍ୟ ପଦକ ପୁରସ୍କାର ପ୍ରାପ୍ତ), ଗାଙ୍ଗୁଲି ଫିଲମ୍ସର 'ଶ୍ରୀଶ୍ରୀ ପତିତ ପାବନ', ନରେନ ମିତ୍ରଙ୍କର 'ନାରୀ' ଏଇ ପ୍ରଯୋଜକ ମାନେ ଏଠି ଚିତ୍ର ଗୋଟାଏ ଲେଖା କରି ଆଉ କରି ନାହାଁନ୍ତି । ଅବଶ୍ୟ 'ନାରୀ'ର ପ୍ରଯୋଜକ ବହୁଦିନ ଆଗରୁ "ଆମରି ଗାଁ ଝିଅ" ଛବି ନିର୍ମାଣ କରିଥିଲେ ।

ଏଇପରି ଦେଖିବାକୁ ଗଲେ ୧୯୩୪ରୁ ଡିସେମ୍ବର ୧୯୭୧ ଭିତରେ ସମୁଦାୟ ୩୪ଟି ଓଡ଼ିଆ କଥାଚିତ୍ର ନିର୍ମିତ ହୋଇଛି । ତେଣୁ ବର୍ଷକୁ ଗୋଟିଏ କରି ମଧ୍ୟ ହେଲନାହିଁ, ୩୭ବର୍ଷରେ ୩୪ଟି ଚିତ୍ର ଏ ବିଷୟ ହୁଏତ ଅନେକ ଜାଣି ନ ଥିବେ, ଆମେ ଯେ କେତେ ପଛରେ ଅଛୁ ଏକଥା ଆପଣମାନେ ବର୍ତ୍ତମାନ ବୁଝି ପାରୁଥିବେ । ଏଇ ୩୭ବର୍ଷ ମଧ୍ୟରେ ୭ଟି ଡ଼ବିଙ୍ଗ ଛବି ହୋଇଛି କିନ୍ତୁ ମୁଁ ସେଗୁଡ଼ିକ ଓଡ଼ିଆ ଛବି ବୋଲି ଧରି ନାହିଁ ।

ବର୍ତ୍ତମାନ ପ୍ରଶ୍ନ ହେଉଛି ଆମେ କାହିଁକି ଏତେ ପଛରେ ଅଛୁ । ଆମର କଣ ଏ ଅବସ୍ଥା ଆଉ ସୁଧୁରିବ ନାହିଁ ? ଏକଥା ଆମ ସମସ୍ତଙ୍କ ମନକୁ ଆସିବା ସ୍ୱାଭାବିକ । ତେଣୁ ମୁଁ ଏ ବିଷୟରେ ଏଠାରେ ସଂକ୍ଷେପରେ ଆଲୋଚନା କରିବି ।

ଭାରତବର୍ଷର ଅନ୍ୟାନ୍ୟ ପ୍ରଦେଶରେ ଆଞ୍ଚଳିକ ଭାଷା ଛବି ଖୁବ୍ ଅଗ୍ରଗତି କରି ପାରିଛି । ମହୀଶୂର, ତାମିଲନାଡ଼ୁ, ଆନ୍ଧ୍ର, ଆସାମ, ମହାରାଷ୍ଟ୍ର, ପଞ୍ଜାବ, ପଶ୍ଚିମ ବଙ୍ଗ ଓ ଅନ୍ୟାନ୍ୟ ବହୁ ରାଜ୍ୟରେ ବର୍ଷକୁ ୬୦।୭୦ଛବି ହେଉଥିବା ସ୍ଥଳେ ଆମ ଦେଶରେ ଗଲ ୩ବର୍ଷ ହେଲି ଗୋଟିଏ ଛବି ନିର୍ମାଣ ହୋଇ ପାରିନି । ସେମାନେ କାହିଁକି କରି ପାରୁଛନ୍ତି ଅଥଚ ଆମେ କାହିଁକି କରି ପାରୁନାହୁଁ, ତାର କାରଣ ହେଲା—

୧. ଆମର ନିଜର ଷ୍ଟୁଡ଼ିଓ ନାହିଁ ।

୨. ଆମର ନିଜର ଆଉଟ ଡୋର ସୁଟିଙ୍ଗ୍ କରିବା ପାଇଁ କ୍ୟାମେରା ୟୁନିଟ୍ ନାହିଁ ।

୩. ଆମର ନିଜର କେନ୍ଦ୍ର ପରିବେଷକ ବା ଅର୍ଥବିନିଯୋଗ ସଂସ୍ଥା ନାହିଁ ।

୪. ପ୍ରଯୋଜକ ମାନଙ୍କ ପାଖରେ ଅର୍ଥ ନାହିଁ ।

୫. ଅଧିକାଂଶ ପ୍ରଯୋଜକ ଋଣ ଉପରେ ନିର୍ଭର କରି ଛବି କରନ୍ତି ।

୬. ଆମର ପ୍ରେକ୍ଷାଳୟ ବହୁତ କମ୍ ।

୭. ଓଡ଼ିଆ ଛଡ଼ା ଅନ୍ୟ ଜାଗାରେ ଯେଉଁଠାରେ ଓଡ଼ିଆ ମାନେ ବହୁ ସଂଖ୍ୟାରେ ଅଛନ୍ତି ସେଠାରେ ଓଡ଼ିଆ ଛବି ଚଲାଇବାର ସୁବିଧା ନାହିଁ ।

୮. ଆମର ଲୋକସଂଖ୍ୟା ତୁଳନାରେ ଦର୍ଶକସଂଖ୍ୟା ଅନ୍ୟାନ୍ୟ ପ୍ରଦେଶ ଅପେକ୍ଷା ଯଥେଷ୍ଟ କମ୍ ।

୯. ସରକାରଙ୍କର ଆମପ୍ରତି କୌଣସି ସାହାଯ୍ୟ ବା ସହାନୁଭୂତି ନାହିଁ ।

୧୦. ଆମ ଜନସାଧାରଣ ଏହି ବାଣିଜ୍ୟ ବା ଶିଳ୍ପ ପାଇଁ କେହି କେବେ କିଛି ଚିନ୍ତା କରନ୍ତି ନାହିଁ ।

୧୧. ଆମର ରାଜ୍ୟ ବିଧାନ ସଭାର ସଭ୍ୟ, ଲୋକ ସଭା ଓ ରାଜ୍ୟସଭାର ସଭ୍ୟ, ବୁଦ୍ଧିଜୀବୀ; ଗୁଣି ସମାଜ, ଲେଖକ, ସାହିତ୍ୟିକ, ଓ ସାମ୍ବାଦିକ ମାନେ ଆମର ଦୁଃଖ ଲାଘବ ହେବା ପାଇଁ କେବେ ଆନ୍ତରିକ ଚେଷ୍ଟା କରି ନାହାନ୍ତି କି ଏ ବ୍ୟବସାୟର କିପରି ଉନ୍ନତି ହେବ ତାର ବ୍ୟବସ୍ଥା କରି ନାହାନ୍ତି ।

୧୨. ଆମର ଯେଉଁ କେତେଜଣ ପ୍ରଯୋଜକ ଅଛନ୍ତି ତାଙ୍କ ଭିତରେ ଏକତାର ଏକାନ୍ତ ଅଭାବ ।

୧୩. ନାୟିକା ବା ଉପନାୟିକା ହେବା ପାଇଁ ବହୁ ସଂଖ୍ୟାରେ ସୁନ୍ଦରୀ ଓଡ଼ିଆ ଝିଅଙ୍କର ଅଭାବ ।

୧୪. ଆମର ଟେକନିସିଆନ ମଧ୍ୟ ନାକ ର ବହୁତ କମ ।

ଉପର ଲିଖିତ ଅସୁବିଧାଗୁଡିକ ଯଦି ଶୀଘ୍ର ଦୂର ହେବ ତାହେଲେ ଆମେ ମଧ୍ୟ ସର୍ବ ଭାରତୀୟ ସ୍ତରରେ ଉଚ୍ଚସ୍ଥାନ ଲାଭକରି ପାରିବା ।

ଗତ ଡିସେମ୍ବର ୩ ତାରିଖ ଦିନ ଆଲୋଚନାରେ ଓଡ଼ିଶାରେ ଏକ ଚଳଚ୍ଚିତ୍ର ଉନ୍ନୟନ ବୋର୍ଡ଼ ଗଠନ କରାଯିବାର ନିଷ୍ପତ୍ତି ନିଆଯାଇଛି । ଓଡ଼ିଶା ଚଳଚିତ୍ର ଉନ୍ନୟନ ପାଣ୍ଠି ପାଇଁ ପ୍ରତ୍ୟେକ ସିନେମା ଟିକେଟ ଉପରେ ୫ ପଇସା କରି ସରଚାର୍ଜ ବସିବ ଓ ଏହା ବର୍ଷକୁ ପନ୍ଦର ଲକ୍ଷ ଟଙ୍କା ଆଦାୟ କରିପାରିବ । ଏହି ସରଚାର୍ଜ ବସି ଟଙ୍କା ଆଦାୟ ହେବା ପର୍ଯ୍ୟନ୍ତ ସରକାର ଏହି ବୋର୍ଡ଼କୁ ୫୦ ଲକ୍ଷ ଟଙ୍କା ଋଣ ଆକାରରେ ଦେବେ ଓ ଏହି ବୋର୍ଡ଼ ୩/୪ ବର୍ଷ ମଧ୍ୟରେ ସରକାରଙ୍କର ସେ ଋଣ ପରିଶୋଧ କରି ଦେଇ ପାରିବ । ଏହି ଟଙ୍କାରେ ଆମର ଗୋଟିଏ ଷ୍ଟୁଡ଼ିଓ ନିର୍ମାଣ ହେବା ସାଙ୍ଗେ ଅଳ୍ପ ସୁଧ ହାରରେ ବିଭିନ୍ନ ପ୍ରଯୋଜକଙ୍କୁ ଓଡ଼ିଆ ଛବି ନିର୍ମାଣ କରିବା ପାଇଁ ଋଣ ଦିଆଯିବ ଓ ବିଭିନ୍ନ ମୂଲ୍ୟରେ ଉନ୍ନତ ଧରଣର ପ୍ରେକ୍ଷାଳୟମାନ କରିବାକୁ ମଧ୍ୟ ଟଙ୍କା ଦିଆଯିବ ।

ଏଇ କାର୍ଯ୍ୟକ୍ରମ ଅନ୍ତରିକ ଭାବେ କାର୍ଯ୍ୟକାରୀ ହେଲେ ଓଡ଼ିଆ ଚଳଚ୍ଚିତ୍ରର ଭବିଷ୍ୟତ ଖୁବ ଉଜ୍ଜ୍ୱଳ ହେବ । ଆମେ ଶୀଘ୍ର ଚଳଚିତ୍ର ବ୍ୟବସାୟରେ ଅନ୍ୟ ପ୍ରଦେଶ ସହିତ ସମକକ୍ଷ ହୋଇ ପାରିବା ।

ବର୍ତ୍ତମାନ 'ଘର ବାହୁଡ଼ା' ନାମକ ଏକ ଓଡ଼ିଆ କଥାଚିତ୍ରର ନିର୍ମାଣ କାର୍ଯ୍ୟ ପ୍ରାୟ ଶେଷ ହେବା ଉପରେ ।

ଫିଲ୍ମ ଫାଏନାନ୍ସ କରପୋରେସନରୁ ଶ୍ରୀମତୀ ପାର୍ବତୀ ଘୋଷ ଓ ଶ୍ରୀନିରଞ୍ଜନ ପଟ୍ଟନାଏକ ଋଣ ପାଇବେ । ଶ୍ରୀମତୀ ଘୋଷ ଫକୀର ମୋହନଙ୍କର "ଛମାଣ ଆଠଗୁଣ୍ଠ" ଓ ଶ୍ରୀ ପଟ୍ଟନାଏକ କାଳନ୍ଦୀ ଚରଣ ପାଣିଗ୍ରାହୀଙ୍କର "ମାଂସର ବିଳାପ" ଛବି ଅତିଶୀଘ୍ର ଆରମ୍ଭ କରିବେ ବୋଲି ଆଶା କରାଯାଏ ।

ସମ୍ବଲପୁରର ଶ୍ରୀ ପ୍ରହ୍ଲାଦ ବହ୍ମାଣ୍ଡ ମିଶ୍ର ତାଙ୍କର ଆଗାମୀ ଛବି "ମନଆକାଶ"ର ଗୀତ ରେକର୍ଡିଙ୍ଗ ପ୍ରଥମ ଥର ପାଇଁ ମାଡ୍ରାସର ଜେମିନି ଷ୍ଟୁଡିଓରେ ଶେଷ କରି ସାରିଚନ୍ତି ଓ ଖୁବ୍ ଶୀଘ୍ର ତାଙ୍କର ଆଉଟ ଡୋର ସୁଟିଙ୍ଗ ଆରମ୍ଭ କରିବେ । ଶ୍ରୀ ଯଦୁନାଥ ଜେନା 'ଭରସା' ଛବିର ଅନେକ ଗୁଡ଼ିଏ ଗୀତ ରେକର୍ଡିଙ୍ଗ କରି ସାରିଛନ୍ତି । ସେ ମଧ୍ୟ ଖୁବ୍ ଶୀଘ୍ର ତାଙ୍କର ସୁଟିଙ୍ଗ କାର୍ଯ୍ୟ ଆରମ୍ଭ କରିବେ ବୋଲି ଶୁଣାଯାଏ ।

ସାରଥି ଗୋଷ୍ଠିର ଗୋପାଳ ଘୋଷଙ୍କର 'ଲକ୍ଷହୀରା', ବିନ ବହ୍ମାଣ୍ଡ ପଟ୍ଟନାଏକଙ୍କର ନୂତନ ଛବି, (ଗୀତ ରେକର୍ଡିଙ୍ଗ ସରିଛି) ପଞ୍ଚସଖା ଗୋଷ୍ଠୀର ଶ୍ରୀ ଧୀରେନ୍ଦ୍ର ନାଥ ବିଶ୍ୱାଳଙ୍କର "ଧରିତ୍ରି" ପାଇଁ ଓଡ଼ିଶା ସରକାରଙ୍କର ଗ୍ୟାରେଣ୍ଟି ମିଳି ସାରିଛି । ଟଙ୍କା ମିଳିବା ମାତ୍ରେ ଏମାନେ ମଧ୍ୟ କାମ ଆରମ୍ଭ କରି ଦେବେ ବୋଲି ଆଶା କରାଯାଏ ।

ଆସ୍କାର କବିରାଜ କୃଷ୍ଣଚନ୍ଦ୍ର ତ୍ରିପାଠୀ ଓ କଟକର ବିଶିଷ୍ଟ କଳାକାର ଶ୍ରୀଗୋବିନ୍ଦ ତେଜ, ଚିନ୍ମୟ ପଟ୍ଟନାଏକ ଗୋଟିଏ ଗୋଟିଏ ସାମାଜିକ ଛବି ୧୯୭୨ରେ ଆରମ୍ଭ କରିବେ ବୋଲି ଜଣାଯାଇଛି । ଭଗବାନଙ୍କ ଦୟାରୁ ଉପର ଲିଖିତ ପ୍ରଯୋଜକ ମାନେ ଯଦି ଲଗି ପଡ଼ି ସବୁଯାକ ଛବି ୧୯୭୨ରେ ଶେଷ କରି ଦିଅନ୍ତି ତା ହେଲେ ପ୍ରାୟ ୧୨୦ ଟି ଛବି ନିର୍ମିତ ହୋଇସିବ । ମୁଁ ଯେତିକି ଜାଣିଛି ସେତିକି ଲେଖିଲି । ଏହାଭିତରେ ଅନ୍ୟ କୌଣସି ପ୍ରଯୋଜକ ନୂଆ ବାହାରି ଥିବେ ସେ କଥା ମୁଁ ଜାଣିନାହିଁ । ଗ୍ରୁପ୍ୟାବାଣୀ ପ୍ରତିଷ୍ଠାନର ଶ୍ରୀ ବାବୁଲାଲ୍ ଦୋଷି ତାଙ୍କର ଆଗାମି ଛବିର କଥାବସ୍ତୁ ନିର୍ଣ୍ଣୟ କରି ସାରିଲେଣି । ସେ ମଧ୍ୟ ୧୯୭୨ରେ ନୂଆ ଛବି କରିବେ ।

ବହୁ ଛବି ହେବାର ଯୋଜନା ରହିଛି । ମୋର ଆଶା ଏ ସମସ୍ତ ଛବି ଖୁବ ଉଚ୍ଚକୋଟିର ହେବ ଓ ଓଡ଼ିଆ ଜାତିର ମାନ ଆହୁରି ବଢ଼ିଯିବ ! ଏଇଥିରୁ ଅନୁମାନ ଯେ ଓଡ଼ିଆ ଚଳଚ୍ଚିତ୍ରର ଭବିଷ୍ୟତ ଖୁବ୍ ଉଜ୍ଜ୍ୱଳ ।



# ବେଲୁନ୍ ଫୁଙ୍କୁଥିଲି

ଗୋବର୍ଦ୍ଧନ ମିଶ୍ର

ସିନେମା ମୋତେ ଗ୍ରହଣ କଲା କି ମୁଁ ତାକୁ ଗ୍ରହଣ କରିପାରିବିନି । ମାତ୍ର ମୁଁ ଥିଲି । କୌଣସି ଭୂମିକାରେ ଅଭିନୟ କରି ନଥିଲି । ଗାୟକ, ବାଦକ, ପ୍ରଯୋଜକ, ପରିଚାଳକ ମଧ୍ୟ ନଥିଲି । ......ତେବେ କିଛିତ କରୁଥିଲି ନିଶ୍ଚୟ । ହଁ, ବେଲୁନ୍ ଫୁଙ୍କୁଥିଲି ।

ମସ୍ତବଡ଼ ବେଲୁନ୍ । କଲିକତା, ବମ୍ବେ ପ୍ରଭୃତି ବଡ଼ ବଡ଼ ସହରମାନଙ୍କରେ, ଆକାଶରେ ବଡ଼ ବଡ଼ ବେଲୁନ୍ ଉଡ଼ୁଥିବା ଦେଖିଥିବେ । ବିଜ୍ଞାପନର ବେଲୁନ୍ — ରେଡ଼ିଓ, ସିଗାରେଟ ପ୍ରଭୃତିର ବିଜ୍ଞାପନ ।

ସେହିଭଳି ଏକ ବେଲୁନ୍ ଫୁଙ୍କୁଥିଲି । ଏ ବେଲୁନ୍‌କୁ ବହୁତ ଲୋକ ଫୁଙ୍କିଚନ୍ତି । ଏଥିଲାଗି କିଏ ଅର୍ଥ ଦେଉଥିଲେ କିଏ ବା ଶ୍ରମ ଦେଉଥିଲେ । ବେଲୁନ୍ ଏବେବି ଉଡ଼ୁଛି । ଟିକିଏ ପବନ କମିଗଲେ, ଅନ୍ୟମାନେ ଆସି ଫୁଙ୍କିଦେଇ ଯାଉଛନ୍ତି । ବେଲୁନ୍‌ଟି ନଫାଟୁ, ଉପରେ ସିମିତି ଉଡ଼ୁଥାଉ — ତାହାହିଁ କାମନା ।

+ + +

ଗୋଟିଏ ଗୋଟିଏ ଘଟଣା ଗୋଟିଏ ସିନେମା । "ଦୋ ଅଣ୍ଡେକା ଆମଲେଟ" ଠାରୁ ଆରମ୍ଭ କରି ଭରା ନଈରେ ନୌକାବିହାର, ନିର୍ଗୁଣ୍ଡି ଷ୍ଟେସନଠାରୁ କଟକ ଷ୍ଟେସନ ପର୍ଯ୍ୟନ୍ତ ରେଳରାସ୍ତା ଉପରେ ପଦଯାତ୍ରା, ବହୁ ନାୟକ ନାୟିକାଙ୍କ ସହିତ ପରିଚୟ, ରାତି ଉଜାଗର......ବହୁ ଦୃଶ୍ୟ, ବହୁ ଆଲୋଚନା, ବହୁ ରାଗ ରୋଷ, ମାନ ଅଭିମାନ କ'ଣ ଲେଖିବି ?

ବହୁ କିଶୋରୀ ତନ୍ୱୀ ଚିର ବୁଢ଼ୀଆର ମାଆ ହେଲେଣି, ନାୟକମାନଙ୍କ ବାଳ ପାଚିଲାଣି । ସେ ଚାପଲ୍ୟ, ସେ ଉଦ୍ଦୀପନା, ସେ ଉତ୍ତେଜନା, ସେ ଆନନ୍ଦ ଉଲ୍ଲାସ ଆଉ ନାହିଁ । ସିମିତି ମନେ ହେଉଛି ନିଶ୍ଚଳ ସମୁଦ୍ର । ତରଙ୍ଗ ଗୁଡ଼ାକ ଗମ୍ଭୀର ନିଦ୍ରାରେ ବିଭୋର ।

ବାସ୍ତବରେ ଜୀବନର ଏ ଏକ ରଂଗ । ଏହାକୁ ବର୍ଣ୍ଣି କୁହ, ଖେଳ କୁହ । ସବୁ ଗୁଡ଼ାକୁ ଏକାଠି କଲେ ଏହାକୁ ଏକ ମଦନାନନ୍ଦ ମୋଦକ ଆଖ୍ୟା ଦିଆଯାଇ ପାରିବ । ଏହି ମୋଦକ ଭିତରୁ ବହୁ ମଦନ ବାହାରିଛନ୍ତି, ବହୁ ରତି ବାହାରିଛନ୍ତି । ବହୁ ମଦନଙ୍କ ସୀମା ଲଂଘନ ଓ ଉଚ୍ଛୃଂଖଳତାକୁ ଦମନ କରିବାଲାଗି ଶିବଙ୍କ କୋପାନଳ ମଧ୍ୟ ଉଦ୍‌ଗୀରଣ ହୋଇଛି । କେତେକ ଧ୍ୱଂସ ବି ପାଇଛନ୍ତି ।

ସବୁ ଗୋଟିଏ ଗୋଟିଏ କାହାଣୀ । ମୋ ସିନେମାର କାହାଣୀ 'ଦୋ ଅଣ୍ଡେକା ଅମ୍‌ଲେଟ୍‌ରୁ" । ଆମ ହିରୋଇନ୍‌ଙ୍କ ମାନସିକଗର୍ଭରୁ ଏହି ଅଣ୍ଡାର ଉତ୍ପତ୍ତି ।

' ସିନେମା ନାଁ କହୁନ । ଓଡ଼ିଆ ଚଳଚିତ୍ର । ସେତେବେଳେ ମୋର କାମ ଥିଲା ବସ୍ତାନି ଧରି ବୁଲିବା । ଦିନ ଘଣ୍ଟାରୁ ରାତି ଘଣ୍ଟାଯାଏଁ, କେବେ କେବେ ରାତି ପାହିଯାଏ, ଲେଖିରଖ କହିଲେ ଲେଖିରଖେ, କାଟିଦିଅ କହିଲେ କାଟିଦିଏ । ଖୋଳେ କାଗଜର ଗୋଟାଏ ଛୋଟ ବସ୍ତାନି । ଏ ବସ୍ତାନିଟି ଧରି ବୁଲିବାରେ, ଏକ ଅନନ୍ତ ଆନନ୍ଦ ଥିଲା । ମନରେ ଗର୍ବ ବି ଥିଲା । ଅନ୍ୟମାନେ ଈର୍ଷା କରୁଥିଲେ । ଭାବୁଥିଲେ ଗୋଟିଏ ମୁଠାଏ ପଇସା କରି ପକାଉଛୁ କାରଣ ସିନେମାର ଲୋକ ସେ । ବେଶି ମାରୁଥିବ । ବିନା ପଇସାରେ କିଏ କେବେ ଖଟେ ? ମୋ ରୋଜଗାରର ହିସାବ ମୁଁ କରି ପାରୁନଥିଲି, ମୋପ୍ରତି ଈର୍ଷା କରିବା ଲାଗି ଯେଉଁମାନଙ୍କୁ ଦାୟିତ୍ୱ ଦେଇଥିଲି ସେମାନେ ମୋ ଉପାର୍ଜନର ଅଙ୍କ କଷୁଥିଲେ । ଆଜି ୧୦ହଜାର ରୋଜଗାର ତ କାଲି ଆଉ କଣ, ସେମାନଙ୍କୁ ହିସାବ ଖାତାରେ ମୋ ଉପାର୍ଜନର ମାତ୍ରା ବେଶି, ବେଶି ବଢ଼ି ଚାଲିଯାଏ ।

······ସବୁ ରେଡ଼ି । ସ୍କ୍ରିପ୍ଟ୍ ମ୍ୟୁଜିକ୍‌ଡ଼ାଇରେକ୍ଟର୍ ସବୁ, ଖାଲି ବାକି ରହିଲା ହିରୋଇନ୍ । ପାର୍ଟନର ମାନଙ୍କର ଜିଦ୍ ଯାଦ କରିବା, କରିବା ଖାଣ୍ଟି ଓଡ଼ିଆ, ଓଡ଼ିଆଣୀଙ୍କୁ ନେବା । ଓଡ଼ିଆଣୀଙ୍କ ମଧ୍ୟରେ କ'ଣ ସୁନ୍ଦରୀ, ଶିକ୍ଷିତା ଝିଅ ନାହାନ୍ତି ? ସ୍କୁଲ କଲେଜରେ ଏତେ ଝିଅ । ଆମକୁ କ'ଣ ଗୋଟିଏ ହେଲେ ମିଳିବେନି ?

ଜଣେ ପାର୍ଟନର କହିଲେ,ଦେଖିବାକୁ ବହୁତ ମିଳିବେ, ମାତ୍ର ରାଜି ହେଲେ ତ ? ଘରର ନାଟ କଲେ ଉପସ୍ଥିତି ମାତ୍ର ବାହାରକୁ ଗୋଡ଼ କାଢ଼ିଲେ ବେଶ୍ୟା । ଚରିତ୍ର ନଷ୍ଟ ହୋଇଯିବ । ଝିଅ ବାହାହୋଇ ପାରିବନି ।

ଅନ୍ୟମାନେ କହିଲେ, ସେ କାଳ ଥିଲା ଏବେ ଯୁଗ ବଦଳି ଗଲାଣି । ଖାଲି ଖବର କାଗଜରେ ବିଜ୍ଞାପନ ଦିଅ, ଦେଖ ଗୋଡ଼ତଳେ ଆସି ପଡ଼ିବେ । ପ୍ରସ୍ତାବ ହେଲା, ପ୍ରସ୍ତାବ ଗୃହୀତ ହେଲା-ବିଜ୍ଞାପନ ଦିଆଗଲା । ଶତକୁ ଶତ ବହୁତ ଆସି ଗୋଡ଼ ତଳେ ବାଡ଼େଇ ହେଲେ-ମାତ୍ର-ସମସ୍ତେ ପାହାଚ ତଳର ଘାସ, ଘଷରା, କିଏ ଦାନ୍ତୁରୀ ତ ପୁରୁକ ଗାଲ, କିଏ ଗ୍ରେଟ୍‌ଟି ତ କିଏ ଟେଙ୍ଗା ଖନ, ଇମିତି ଖୁଣ୍ଡାଏ । ବହୁ, ଅଭିନୟ କଲେ, ବହୁତ ନାଚିଲେ, ଅଙ୍ଗ ହଲେଇଲେ, କୃତ୍ରିମ ମିଥ୍ୟାବୁଲିଲା ବିଳମ୍ବନର ପ୍ରଦର୍ଶନୀରେ ପ୍ରଯୋଜକ ମାନଙ୍କୁ ପ୍ରଲୁବ୍ଧ କରିବାକୁ ଉଦ୍ୟମ କଲେ । ନିର୍ବାଚନ ହୋଇ ପାରିଲା ନାହିଁ ।

ବଙ୍ଗାଳୀ ନିର୍ଦ୍ଦେଶକ କହିଲେ ସେ ପାରିବେ । ତାଙ୍କ କଲିକତାରେ ବହୁ ଓଡ଼ିଆଣୀ – ଶେଷରେ ଧରି ଆଣିଲେ ଗୋଟାକୁ । ବାପା ଓଡ଼ିଆ । ମାଆ ବଙ୍ଗାଳୀ । ଅତଏବ ସ୍ଥିର ହେଲା ସେ ବଙ୍ଗଳାଭାଷା କହିଲେ ମଧ୍ୟ ଓଡ଼ିଆଣୀ । ସଂଳାପ ଗୁଡ଼ାକୁ ବଙ୍ଗଳା ଲିପିରେ ଲେଖିଦେଲେ ସେ ଠନଠନ ଭିତରେ ବାଟ ପିଇଯିବେ ବୋଲି ପ୍ରତିଶ୍ରୁତି ଦେଲେ ।

ସେତେବେଳେ, ମନେ ଅଛି, "ଜିସ୍ ଦେଶ୍ ମେ ଗଙ୍ଗା ବହ୍‌ତି ହୈ" ହିନ୍ଦି ଚିତ୍ରର ନା ଖୁବ୍ ଥିଲା । ରାଜକାପୁରଙ୍କ ଫିଲ୍ମ ପଦ୍ମିନୀ ହିରୋଇନ । ଏହି ଚିତ୍ରରେ ପଦ୍ମିନୀଙ୍କ ଦେହରେ ବ୍ଲାଉଜ ନଥିଲା । ପାହାଡ଼ି ଅଞ୍ଚଳ ଝିଅ ଭୂମିକାରେ ସେ ଅଭି-ନୟ କରୁଥିଲେ । ପଦ୍ମିନୀ ଚିତ୍ର ର କାଂଚଲ (ବ୍ଲାଉଜ) ନଥିବା ଦେହରେ ପାଣିରେ ପହଁରୁଥିବା ଏକ ଦୃଶ୍ୟ ଥିଲା ।

ଏ ଦୃଶ୍ୟଟା ଆମ ହିରୋଇନଙ୍କ ମନକୁ ବେଶ ପାଇଥିବ । ତେଣୁ ପ୍ରଥମ ଇଣ୍ଟରଭ୍ୟୁରେ ଆମ ପ୍ରଯୋଜକମାନଙ୍କୁ ସେ କହିଥିଲେ, "ପଦ୍ମିନୀର ମତନ ଆମି ସାଁ ତାର୍ କାଟତେ ପାର୍‌ବୋ" । ଏହି ଦଂଭୋକ୍ତି ପ୍ରଯୋଜକମାନଙ୍କୁ ସ୍ତମ୍ଭୀଭୂତ କରିପକାଇଥିଲା । ସମସ୍ତେ ତାଙ୍କୁ ଶହେରୁ ଶହେ ମାର୍କ ଦେଇଥିଲେ । ହିରୋଇନଙ୍କ ନାମକରଣ ଉତ୍ସବ ପାଳନ ଲାଗି କୁକୁଡ଼ା କଟା ହେଲା-ବୋତଲ ଆସିଲା, ହିରୋଇନ୍ ଢ଼ଳିଲେ, ଅନ୍ୟମାନେ ଢୋଳେଇ ଢୋଳେଇ ଶୋଇପଡ଼ିଲେ ।

ନିଦରୁ ଉଠିବା ପରେ ଦେଖିଲେ ସମସ୍ତେ ଯାଇ ଷ୍ଟୁଡ଼ିଓରେ ହାଜର । କ୍ୟାମେରାଷ୍ଟାଣ୍ଡ ନାନା ରକମର କଳକବ୍‌ଜା । ପଇସା ଖର୍ଚ୍ଚ କଲେ ମଣିଷ ପୃଥି-ବୀରେ ଥାଇ ସ୍ୱର୍ଗପୁରୀକୁ ମଧ୍ୟ ଯାଇପାରେ । ଏ ସ୍ୱର୍ଗପୁରୀର ନାମ ସିନେମା—ଓଡ଼ିଆର ଚଳଚିତ୍ର !

ହିରୋଇନ ଭୁଲ କଲେ ବି ଠିକ…କାରଣ ଆଡ଼ଭାନ୍‌ସ ଦିଆସରିଚି । ବହୁତ ଖର୍ଚ୍ଚ ହୋଇ ସାରିଲାଣି । ହିରୋଇନ୍ ଯଦି ବିଗିଡ଼ିଯାଏ ସବୁ ଯିବ । ତେଣୁ ହିରୋଇନ୍ ବୋଉକୁ କାଉ କହିଲେ ବି ଠିକ୍ । ଓଡ଼ିଆ ଦର୍ଶକ ସବୁ ଭୁଲକୁ ମାଫ୍ କରି ଦେଇ ପାରିବେ ।

ମଧ୍ୟାହ୍ନ ସୁଦ୍ଧା ହିରୋଇନ୍‌ଙ୍କ ସେଦିନର କାମ ଶେଷ । ତା ପର ବେଳାର କାମ ଅନ୍ୟ ଆର୍ଟିଷ୍ଟମାନଙ୍କର । ଷ୍ଟୁଡ଼ିଓ ଭଡ଼ା ଦିଆ ସରିଚି । କିଛୁ ନକଲେ ମଧ୍ୟ ପଇସା ଦେବାକୁ ପଡ଼ିବ । ଦିଇଟାବେଳୁ ଅପରାହ୍ନ କାର୍ଯ୍ୟକ୍ରମ ଆରମ୍ଭ ।

ଘନ ବାଜିଲା । ଭୁଟେଇ ଭୁଟେଇ ନାକେଦମ । ଅନ୍ୟ ଆର୍ଟିଷ୍ଟମାନେ କଜଳ ସିନ୍ଦୂର ପାଉଡ଼ର ଲଗେଇ, ବେଶଭୂଷା ହୋଇ ଷ୍ଟୁଡ଼ିଓରେ ହାଜର । ('ସବୁଠାରୁ ମଜାରକଥାହେଉଛି ଆମ ସିନେମାର ସବୁ ପାର୍ଟନର ଜଣେ ଜଣେ ଆର୍ଟିଷ୍ଟ) । ମାତ୍ର ପାର୍ଶ୍ୱ ନାୟିକାଙ୍କ ଦେଖା ନାହିଁ । ସେ କଜଳ ସିନ୍ଦୂର ଲଗେଇ ନାହାନ୍ତି ଓ ଶାଢ଼ୀ ବଦଳେଇ ନାହାନ୍ତି ! ସେ ଖାଣ୍ଟି ଓଡ଼ିଆଣୀ ! ଓଡ଼ିଆରେ ତାଙ୍କର ଯଥେଷ୍ଟ ସୁନାମ ! ମନେ ମନେ ଯୁବତୀ, ମନେ ମନେ ସୁନ୍ଦରୀ ! ଆଗରୁ ତାଙ୍କର ଅଭିଯୋଗ ଥିଲା—ତାଙ୍କୁ ହିରୋଇନ୍ କରି ନଗଲା କାହିଁକି ?

ମୋ ବଖାନରେ ତାଙ୍କ ନାଁ ହିରୋଇନ୍‌ଙ୍କ ତଳେ । ଡକରା ଯାଉଛି—ପାର୍ଶ୍ୱ ନାୟିକା ଖାଣ୍ଟି ଓଡ଼ିଆଣୀ ତଥାକଥିତା ସୁନ୍ଦରୀ ଜଣଙ୍କ ଷ୍ଟୁଡ଼ିଓକୁ ଆସିବାକୁ ନାରାଜ । ଶିଳ୍ପୀ

ପାର୍ଟନରଙ୍କ ମଧ୍ୟରୁ କେହି ଷ୍ଟୁଡିଓ ଗ୍ରୁଡ ଆସିବାକୁ ପ୍ରସ୍ତୁତ ନୁହନ୍ତି । ଭସ୍ମ ଅଥବା ଖଣ୍ଡେ ହାଡ଼ ଦେହରୁ ଝାଳ ବହିଲେ ପାଉଡର ଲନ୍ଦିଯିବ । ଯେତେବେଳେ ସିନେମା କରୁଛନ୍ତି ସେମାନେ ।

ମତେ ଆଦେଶ ହେଲା କଥା କ'ଣ ଯାଇ ବୁଝିବା ପାଇଁ । ଅଭିମାନିନୀ ପାର୍ଶ୍ୱନାୟିକା ଚୌକି ଉପରେ ବସିଛନ୍ତି, ମୁଣ୍ଡଟା ଟେବୁଲ ଉପରେ । ମତେ ଦେଖିଲା ମାତ୍ରେ କଇଁ କଇଁ ହୋଇ କାନ୍ଦି ଉଠିଲେ । ଯେମିତି ତାଙ୍କର ଶେଷ ସଙ୍ଗୀଙ୍କର ପରଲୋକ ହୋଇଯାଇଛି ।

ବହୁତ ପଚାରିଲି । କିଛି କହିଲେ ନାହିଁ, ବରଂ କାନ୍ଦଟା ଯୋର ହୋଇ ଉଠିଲା । ନିରୁପାୟ, ନିଃସହାୟ ଅବସ୍ଥାରେ ଷ୍ଟୁଡିଓକୁ ଯାଇ ରିପୋର୍ଟ କଲି ପାର୍ଟନର ମାନଙ୍କୁ । ବନ୍ଧୁତ୍ୱପୂର୍ଣ୍ଣ ଧିକ୍କାର ମିଳିଲା ମତେ, ପୁଣି ଆଦେଶ, ଆଉଥରେ ଯା ।

ଗଲି-ଦେଖିଲି ହିରୋଇନ୍ କେଶବିନ୍ୟାସରେ ବ୍ୟସ୍ତ । ବେଶ୍ ଗପ ସପ୍ ଚାଲିଛି ଷ୍ଟୁଡିଓ ଦରୱାନ ସହିତ । ଓଡ଼ିଆ ଦରୱାନ୍, ମତେ ପୁନର୍ବାର ଦେଖି ହିରୋଇନ୍ ପୁଣି ବିବର୍ଣ୍ଣ ହୋଇ ପଡିଲେ । ଯାହା ହେଉ ଏଥର ଆଉ କାନ୍ଦ ନଥିଲା । କିନ୍ତୁ କ୍ରୋଧ ଥିଲା । ପ୍ରଶ୍ନକଲେ-ଆପଣ କିଏ ?

ଚୁପ୍ ରହିଲି । ମନେ ମନେ ଭାବିଲି ପ୍ରକୃତରେ ମୁଁ କିଏ ? କିନ୍ତୁ ତାଙ୍କୁ ଉତ୍ତର ଦେଲି, ଆପଣଙ୍କୁ ନାଲି ବଗଡ଼ାଭାତ ଭିତରୁ ଯିଏ ଗରମ ଗରମ ସରୁ ସଫା ଚାଉଳର ଭାତ ଖୁଆଇବାକୁ ଆଣିଛି ସେମାନଙ୍କ ମଧ୍ୟରୁ ଜଣେ ।

ପାର୍ଶ୍ୱନାୟିକା କହିଲେ-ନାଁ । ସେଥିକରେ ଚଳିବ ନାହିଁ, "ମୋର ଦୋ ଅଣ୍ଡେକା ଆମ୍ଲେଟ୍" ଦରକାର, ସେତିକି ଦେଲେ ଯାଇ ଯିବି ।

ହସିବି କି କାନ୍ଦିବି ଭାବି ପାରିଲି ନାହିଁ । କାଣ୍ଟିନକୁ ଦୌଡ଼ିଲି । ଅଣ୍ଡା ଶେଷ, ପାଖ ଆଖ କାବିନ୍ ହୋଟେଲ ମାନଙ୍କୁ ଲୋକ ପଠାଇଲି-ଅଣ୍ଡା ନାହିଁ ।

ତିନରୁ ପାଞ୍ଚ ହେଲା । ସୁଟ ହେବାକୁ ଆଉ ଘଣ୍ଟେ ଦୁ ଘଣ୍ଟା ରହିଲା, ଟ୍ୟାକ୍ସି କରି ଗଲେ ଯାଇ ତଅପୋଇଙ୍କ ପାଇଁ ସରଗର ଚନ୍ଦ୍ର ଆସିବ । ନ ଟଙ୍କାର ଘୋଡ଼ାକୁ ନକୋଡ଼ି ଟଙ୍କାର ଦାନା । ଦଇଟା ଅଣ୍ଡାରେ ତିଆରି ଗୋଟେ ପିଠା ପାଇଁ ତିନକୋଡ଼ିର ଟଙ୍କାର ଟ୍ୟାକ୍ସି ଭଡ଼ା !

ଓଡ଼ିଆଣୀ ପାର୍ଶ୍ୱନାୟିକାଙ୍କ ଏତେ ଜିଦ୍ ।

ଓଡ଼ିଆ ଦରୱାନଠୁଁ ବୁଝିଲି ସେ ବଙ୍ଗାଳୁଣୀ ହିରୋଇନ୍‌ଟା କାଲେ କୁଆଡ଼େ ଦୋ ଅଣ୍ଡେକା ଆମ୍ଲେଟ ଖାଇଥିଲା । ପାର୍ଶ୍ୱନାୟିକା ତାକୁଇ ଖାଇଲେ ଯାଇ ଷ୍ଟୁଡିଓ ଭିତରେ ପ୍ରବେଶ କରିବେ !

ଘଣ୍ଟାକୁ ଦେଖିଲି-ହାଓ୍ୱାଡ଼ା-ପୁରୀ ଏକ୍ସପ୍ରେସ ଛାଡ଼ିବାକୁ ବହୁତ ସମୟ ଅଛି ।

କପେ ଚା ପିଇସାରି, କମ୍ପା ମାର୍କୋପୋଲ ସିଗାରେଟରୁ ଏକ ଧୂମକୁଣ୍ଡଳୀ ପାର୍ଶ୍ୱନାସ୍ତିକାଙ୍କ-ମୁହଁ ଆଡ଼କୁ ଛାଡ଼ି କହିଲି.....ହୁଏତ ପଖାଳ କଂସା ଶାଗ ଖରଡ଼ା ମାଗିଲେ ଦେଇହେବ ନଥାନ୍ତା । "ଦୋ ଅଣ୍ଡେକା ଆମ୍ଲେଟ" "ତ କଲି-କତାରେ ପ୍ରଚୁର । ପାଠକମାନେ ଦୋ ଅଣ୍ଡେକା କ'ଣ ଶତଅଣ୍ଡାର ଏକ ମସ୍ତବଡ଼ ପିଷ୍ଟକ ଦେଇ ତମକୁ ସନ୍ତୁଷ୍ଟ କରିପାରିବେ ! ତା ବଦଳରେ ତୁମେ ସେମାନଙ୍କୁ ସନ୍ତୁଷ୍ଟ କରି ପାରିଲେ ହେଲା ।"

ମୁଁ ପାରିବିନି ! କାରଣ ମୁଁ କବି ନୁହେଁ, ଖାଲି ଏ ବସ୍ତାନିର ବାହକ, ଏହାର ମାଲିକ ବି ନୁହେଁ ।

ବସ୍ତାନିର କାଗଜ ବୁଡ଼ାକୁ ବାହାର କରି ଅଧେ ପାର୍ଶ୍ୱନାସ୍ତିକାଙ୍କ ପାଦ-ତଳେ ଆଉ ଅଧେ ପାଠକମାନଙ୍କ ପାଦତଳେ ରଖିଦେଇ ବୋଝ ନେଲି ଷ୍ଟୁଡ଼ିଓରୁ......

ବସ୍ତାନିର ଚିରା କନାଖଣ୍ଡିକ ଥିଲା ମୋର ନିଜସ୍ୱ । ଖୁବ ମଇଳା ହୋଇ ଯାଇଥିଲା କନାଟା, ସେଥିପାଇଁ ବହୁତ ସାବୁନ ଲଗେଇଛି ତା ଦେହରେ ଏପର୍ଯ୍ୟନ୍ତ ସଫା ହୋଇ ପାରିନି ।

ଦେଖନ୍ତୁ ତ ବେଲୁନଟି ବେଶ୍ ଆରାମରେ ଆକାଶରେ ଉଡ଼ୁଛି । ତଳେ ଖସି ପଡ଼ୁନି କି ଫାଟି ଯାଉନି ।

ଖୁବ ଭଲ ଲାଗୁଛି ଦେଖିବାକୁ ।

# ଖଣ୍ଡିଏ ଚିଠି

## ନାୟକଙ୍କ କଲମରୁ



ଉମାକାନ୍ତ ମିଶ୍ର

ପ୍ରିୟ ରଣଧୀର ବାବୁ !

ଆପଣଙ୍କର ପତ୍ର ପାଇଲି । ଓଡ଼ିଆ ଚଳଚିତ୍ର ଜଗତକୁ "ଜୀବନ-ରଂଗ" ଦେବାକୁ ବୃତ୍ତାନ୍ତ ଶୁଣି ଖୁସିହେଲି । ତା ଛଡ଼ା ସ୍ୱତନ୍ତ୍ରଭାବେ ଜୀବନକୁ ରଂଗ ଦେବା ଆପଣଙ୍କର ସଚେଷ୍ଟା ବାସ୍ତବିକ ଅଭିନନ୍ଦନୀୟ । ଆପଣଙ୍କର ଏହି ମହନୀୟ ଉଦ୍ୟମ ଚଳଚିତ୍ର ଜଗତକୁ କେତେ ଦୂର ଆଗେଇ ନେବ କହିପାରିବି ନାହିଁ, କିନ୍ତୁ କଳାକାରମାନଙ୍କୁ ଅଦମ୍ୟ ପ୍ରେରଣା ଦେବ, ଏଥିରେ ସନ୍ଦେହ ନାହିଁ । ଜୀବନର ଏହି ଆହ୍ଟାରଂଗ ମଧ୍ୟରେ କେତେ ଶିଳ୍ପୀ, କଳାକାର, ସାହିତ୍ୟିକ, ଦାର୍ଶନିକ, ରାଜନୀତିଜ୍ଞ ପୁଟ ଦେବାକୁ ଚାହିଁଛନ୍ତି । କ୍ଷଣିକ ପାଇଁ ଜୀବନ ରଂଗୀନ ହୋଇ ଉଠିଛି ବସନ୍ତର ମଳୟ ସ୍ପର୍ଶ ପାଇ । ମନ, ପ୍ରାଣ, ଜୀବନ ଉଲ୍ଲସିତ, ବିକଶିତ, ହୋଇଛି ।—କିନ୍ତୁ ଠିକ ପରକ୍ଷଣରେ ମରୁ ବାଲିରେ ଜୀବନଟା ପୋଡ଼ି, କଲବଲ ହେଉଛି ନା ପ୍ଲାବିତ ବନ୍ୟାରେ ଭାସି ଭାସି ମହା ସମୁଦ୍ରରେ ଲୀନ ହେଉଛି । ଏହି ମାଟିଆ ଦେହରେ କେତେ ରଂଗ ବୋଳିଲେ ମଧ୍ୟ, ରଂଗ କ୍ଷଣିକ ପାଇଁ ଥରେ—ପୁଣି ବିକଳା ଛାଡ଼ି-ଯାଇ ଅସୁନ୍ଦରିଆ ଦିଶେ । ନିଜର ଅସଲ ରୂପ ଦେଖାଇଦିଏ ଏବଂ ଭ୍ରମର ପଦାରେ ପକାଇଦେଇ କହେ ଆରେ ଜୀବନଟା ଏଯା । ଉପରେ ଖାଲି ରଙ୍ଗବୋଳା ଯାଇଛି ।

ତଥାପି ମଣିଷ ଚେଷ୍ଟାକରେ ଜୀବନକୁ ରଂଗଦେବା ପାଇଁ, ସୁସଜ୍ଜିତ କରିବା ପାଇଁ, ଜୀବନର ପ୍ରତି ପଦକ୍ଷେପରେ ଯେଉଁ ନିର୍ଯାତନା, ଦୁଃଖ, ବେଦନା, ଅପମାନ ଲାଞ୍ଛନା, ଅହଂ ଦୁର୍ବଳତା ଅସଲ ରୂପକୁ ଲୁଚାଇ ପର ଉପରେ ରଂଗ ବୋଳି ଦୁନିଆକୁ ଆଖିରେ ଧୂଳି ଦେବାପାଇଁ କିନ୍ତୁ ତାହା ମାତ୍ର କ୍ଷଣସ୍ଥାୟୀ, ଏସବୁ ନିଛକ ବାସ୍ତବ

ଜାଣି ପୁଣି ମଣିଷ ସ୍ୱପ୍ନବାଦୀ ହୁଏ ଜୀବନକୁ ରଂଗୀନ କରିବାକୁ ଚାହେଁ ଓ ଏଣିକ ପାଇଁ ଆତ୍ମହରା ହେବାକୁ ଚାହେଁ । ଉତ୍ତପ୍ତ ବାଲିରେ ପୋଡ଼ିଜାଳହେଲେ ମଧ ମରୁ ନଦୀର ତୃଷ୍ଣା ତାକୁ ଆତ୍ମହରା କରେ । କେବଳ କ୍ଷଣିକ ପାଇଁ ଏବଂ ଏହି କ୍ଷଣିକ ପାଇଁ ସୁଖ ଦେବାକୁ ବା ରଂଗ ଦେବାକୁ ଯେଉଁମାନେ ଆସନ୍ତି ସେମାନଙ୍କ ମଧ୍ୟରୁ କଳାକାର ମାନେ ହେଉଛନ୍ତି ଅଗ୍ରଦୂତ । ଅନ୍ତତଃ କିଛି ସମୟ ପାଇଁ ଜୀବନକୁ ସବୁ କିଛିରୁ ଦୂରେଇ ନେଇ କଳାଜଗତ ରଖିବାର କାଉଁସ୍ତିମନ୍ତ ଏମାନଙ୍କ ଜଣା । ଏବଂ ନିଜେ ମଧ ଏହି କାଉଁସ୍ତି ମନ୍ତ୍ରରେ ସୁତୁରୁତୁ ହୋଇ ଆତ୍ମହରା ହୋଇ ଧାଇଁ ଚାଲନ୍ତି ଠିକ ପ୍ରଥମବର୍ଷାର ଭିଜାମାଟିର ଗନ୍ଧରେ ଯେପରି ମୃଗ ଧାଏଁ । ଚିନ୍ତନ୍ତୁ ଆପଣ ଚାହିଁଛନ୍ତି କଣ—ଅଯଥା କାହିଁକି ସମୟ ନଷ୍ଟ କରିବ ?

ମୋର ଜନ୍ମ ସ୍ଥାନ ଗ୍ରାମ-ସାନକୋଦଣ୍ଡା (ଭଞ୍ଜନଗର ପାଖରେ) ଜନ୍ମ ସମୟ ୧୪– ୭ – ୩୯ ଠିକ୍ ଦ୍ୱିତୀୟ ମହାଯୁଦ୍ଧ ଆରମ୍ଭରେ । ପାଠପଢ଼ା ଭଞ୍ଜନଗର, ଗଣିଆ, ବ୍ରହ୍ମପୁର, କୁଚିଣ୍ଡା ଓ ଦେବଗଡ଼ ହାଇସ୍କୁଲରେ ସ୍କୁଲ ଜୀବନ, ଆଇ.ଏ ରାଜେନ୍ଦ୍ର କଲେଜ, ବଲାଙ୍ଗୀର । ବି.ଏ ଗଙ୍ଗାଧର ମେହେର କଲେଜ ସମ୍ବଲପୁର ଓ ଆଇନ ଡିଗ୍ରୀ ମଧୁସୂଦନ ଆଇନ କଲେଜ । ପିଲାବେଳୁ ମୋର ସଂଗୀତ ଓ ଅଭି-ନୟ ପ୍ରତି ଗଭୀର ଆଗ୍ରହଥିଲା ଓ ସେହି ଅନୁଯାୟୀ ଚେଷ୍ଟା ମଧ କରୁଥିଲି । ଏବଂ ପ୍ରଥମତଃ ସଂଗୀତରେ ମୁଁ ପ୍ରତିଷ୍ଠା ପାଇବାକୁ ଆରମ୍ଭ କଲି । କଲେଜଜୀବନରେ ଜଣେ ଭଲ ଗାୟକ ଓ ଅଭିନେତା ହିସାବରେ ଖୁବ୍ ସୁନାମ ଥିଲା, କିନ୍ତୁ ହଠାତ କଲେଜ-ଜୀବନରେ ରାଜନୀତି ମଧ ପ୍ରବେଶ କଲା, ସେହିଦିନରୁ ରାଜନୀତିରେ ମଧ ତିଣି ଅଧିକେ ଭଲ କାମ ପାଇଁ ସହଯୋଗ କଲି ।

ହିଁ କଣ କହୁଥିଲି ଚଳଚିତ୍ରରେ ଜଣେ ପୋଖତ ଅଭିନେତା ହେବାପାଇଁ ମୋର ଗଭୀର ଇଚ୍ଛାଥିଲା । ସମ୍ବଲପୁରରେ ଥିବା ସମୟରେ କଳାକାର ଓ ଅଧ୍ୟାପକ ଶ୍ରୀ ଶରତ ପୂଜାରୀ ଗେଷ୍ଟ ହୋଇ ଆସିଥିଲେ । ତାହାଙ୍କର କଳାକୃତି ମତେ କେତେ ପରିମାଣରେ ଉତ୍ସାହିତ କରିଥିଲା । ଏବଂ ସତ କହିବାକୁ ଗଲେ ମୁଁ ମଧ ଜଣେ ଚଳ-ଚିତ୍ର କଳାକାର ହେବାକୁ ଚେଷ୍ଟାମଧ କଲି । ମୋର ଏଇ ଇଚ୍ଛା କାହାରିକୁ କିନ୍ତୁ ପ୍ରକାଶ କରୁ ନଥାଏ । ଥରେ କଥାପ୍ରସଙ୍ଗରେ ମୋର ଜଣେ ଅତି ଘନିଷ୍ଠଙ୍କୁ ପଚ୍ଚ-ରିଲି— ଅବଶ୍ୟ ସେ ଭାରି ନିଷ୍ଠାବାଦୀ ଓ ଏଇ କଳା ସଂଳାପେ ବିଶ୍ୱାସ ନାହିଁ । କିନ୍ତୁ କେତେବେଳେ କମିତିକା ଲେଖା ଲେଖି କରୁଥିଲେ । ମୁଁ କହିଲି, ମୁଁ ଜଣେ ଫିଲମ୍ ଅଭିନେତା ହେବାକୁ ଚାହୁଁଛି । ସେ ଚାହା...କପେ ଦେଇ ହୋ-ହୋ- ହୋଇ ହସି-ଉଠିଲେ ଓ କହିଲେ କଣ କେତେକ କରତାଳିର ଆବାଜ ଓ ବାଃ ବାଃ ପ୍ରଶଂସା ଛଡ଼ା କିଛି ମିଳିବ ନାହିଁ । ମୁଁ ଜୋରରେ ଯୁକ୍ତି କରି କହିଲି ସବୁ ମଣିଷ ସେଇ କରତାଳି ଓ ବାଃ ବାଃ ପାଇଁ ବଞ୍ଚେ । ତେଣୁ କ୍ଷତି କଣ, ଅବଶ୍ୟ ଜାଣେନା ସେ ଏବେ କେଉଁଠି ଅଛନ୍ତି— କିନ୍ତୁ ତାଙ୍କର କଥାର ନିଗୁଢ ତତ୍ତ୍ୱ ଏବେ ବୁଝିଲି ।

କଲେଜ ଜୀବନରେ ମୋର ସାଙ୍ଗରେ ଅନେକ ପୋଖତ କଳାକାର. ସହପାଠୀ ଓ ସେମାନଙ୍କ ମଧ୍ୟରୁ ଅନେକ ବର୍ତ୍ତମାନ ବମ୍ବେ ଚଳଚ୍ଚିତ୍ର ଜଗତରେ ଜମେଇଲେଣି । ସାଧୁ ଚରଣ ମେହ୍‌ରା ଯେ ପୁନା ଫିଲ୍ମ ଇନଷ୍ଟିଚ୍ୟୁଟରୁ ପାସ କରି ବର୍ତ୍ତମାନ ମୃଣାଳ ସେନଙ୍କ ସହିତ କାମ କରୁଛନ୍ତି । ସୁବ୍ରତ ମହାପାତ୍ର ବର୍ତ୍ତମାନ କେବେ କପରି ହିନ୍ଦି ଫିଲ୍ମରେ ଥାପୁଛନ୍ତି । ଶିଶିର ମିତ୍ର ଆସିଷ୍ଟାଣ୍ଟ ଡାଇରେକ୍ଟର ଭାବେ କାର୍ଯ୍ୟ କରୁଛନ୍ତି । ମୋର ସହପାଠୀମାନେ ସବୁ ଆଗେଇଛନ୍ତି କଳାକୁ ଧରି କିନ୍ତୁ ମୁଁ ବାସ୍ତବକୁ ଓହ୍ଲାଇ ଆସିଲି ।

ହିଁ ପ୍ରଥମ ଚଳଚ୍ଚିତ୍ର "ଝରଣା", M.C.C କଟକ ବକ୍ସି ବଜାରରେ ଗୋଟିଏ ଫିଲ୍ମ କୋପେରେଟିଭ୍ ଆସୋସିଏସନ ଆରମ୍ଭ ହେଲା । ହଠାତ୍ ମୋର ଫିଲ୍ମ ଜୀବନ ଆରମ୍ଭ ହୁଏ । ସେବକୁ ୧୯୬୨ ସାଲରେ "ଝରଣା" ହିନ୍ଦି ଓଡ଼ିଆ ଦୁଇଟି ଭାଷାରେ ବମ୍ବେରେ ହେବ ବୋଲି ସ୍ଥିରହେଲା । ଶ୍ରୀ ସନ୍ତୋଷ କୁମାର ସାହୁ ସେତେବେଳେ ସାଂସ୍କୃତିକ ବ୍ୟାପାର ମନ୍ତ୍ରୀ ଥିଲେ । ବମ୍ବେ (ମେହେବୁବ୍ ଷ୍ଟୁଡିଓ) ରେ ଆମର ୩ ଦିନ ସୁଟିଂ ଚାଲିଥାଏ । ସେତିକବେଳେ ମେହେବୁବ୍ ବଞ୍ଚିଥାନ୍ତି । ଦେଖାହେଲା, ଡ଼େଭିଡ, ମହମ୍ମଦରଫି ଇତ୍ୟାଦି, ମୋର ସାଂଗରେ ପ୍ରଫୁଲ୍ଲ କର ଓ ଅଧ୍ୟାପକ ହରି ମିଶ୍ର ମଧ୍ୟ ଯାଇଥାନ୍ତି । କିନ୍ତୁ ଆମେ ଯାହା ଦେଖିଲୁ, ଝରଣା ସେଇଠି ଶୁଖିଲା, ଗୋଟିଏ ଶଲ୍‌ପରେ ଝରଣା ଆଉ ଝରି ପାରିଲାନାହିଁ ।

ଦୁଇବର୍ଷ ପରେ ୧୯୬୪—ମୁଁ ଆଡଭୋକେଟ ସନନ୍ଦ ଆଣିବାକୁ ଯାଉଥାଏ । ସେତେବେଳକୁ ବାହା ହୋଇ ସାରିଲିଣି । ଏମଧ୍ୟରେ କଳାବିକାଶ କେନ୍ଦ୍ରର ସମ୍ପାଦକ ଶ୍ରୀ ବାବୁଲାଲ ଦୋଷୀ "ଅମଡ଼ା ବାଟ" ପାଇଁ କଳାକାର ଖୋଜୁଥାନ୍ତି । ମୁଁ ଆଗରୁ କଳାବିକାଶ କେନ୍ଦ୍ରର ଛାତ୍ର ଥିଲି । ହଠାତ୍ ଭୁଲି ଯାଇଥିଲି । ବାବୁଲାଲଜୀ ମୋର ପରିଚିତ । କହିଲେ ତୁମେ କଲିକତା ଯାଅ । କଲିକତା ଯାଇ ଅମର ଗାଙ୍ଗୁଲି ଡ଼ାଇରେକ୍ଟର ଓ ଅଜିତ୍ ମିତ୍ରଙ୍କ ସହିତ ଦେଖାକଲି । କେଜାଣି କାହିଁକି ମୋତେ ସେମାନେ ଠିକ୍ କଲେ ଅମଡ଼ାବାଟରେ ଅଭିନୟ କରିବାକୁ । ଚାଲିଲା ଚଳଚ୍ଚିତ୍ର ଜୀବନ । ଏଡ଼ଭୋକେଟ୍ ସନନ୍ଦ ହାତରେ ଧରି, ଚଳଚ୍ଚିତ୍ର ଅଭିନୟ । ତାପରେ "ଅଭିନେତ୍ରୀ" ରେ ମଧ୍ୟ ଅଭିନୟ କଲି । କିନ୍ତୁ ଅସୁବିଧା ହେଲା । ପେଟର କ୍ଷୁଧା ଓ ଓ ମନର କ୍ଷୁଧା ମଧ୍ୟରେ ଦ୍ୱନ୍ଦ । ମନ କହିଲା ଗୁଡ଼ାସବୁ ଧରି କମଣ୍ଡଳୁ ହୋଇଯା କଳାକାର । ପେଟ କହିଲା ଆରେ ବାବୁ ବାହା ସାହା ହେଲା । ପିଲା ପିଚିକା ହେଲେ । ଆଉ କେତେଦିନ ମୁହଁରେ ରଂଗ ବୋଳି ଅସଲ ରୂପକୁ ଭୁଲିବ । ଏପରି ଦ୍ୱନ୍ଦ ମଧ୍ୟରେ ଅନେକ ପ୍ରଯୋଜକ ଡ଼ାକିଲେ ଅଭିନୟ କରିବାକୁ । ମୁଁ କେତେଟା ନାରାଜ ହେଲି, କେତେଟା ତାଙ୍କର ଇଚ୍ଛା ନଥାଏ । ଏତିକିରେ ଚଳଚ୍ଚିତ୍ର ଜଗତର୍ ବିଦାୟ ନେଲି...... ବର୍ତ୍ତମାନ ପାଇଁ । ଦୁଇଟି ପୁରସ୍କାରରେ ଅଭିନୟ କଲି, ମନର ପିପାସ ମେଣ୍ଟିଲା ନାହିଁ ।

ଭାବିଲି ଜୀବନରେ ଅସଲ ଅଭିନୟରେ କେତେଦୂର ଆଗେଇ ପାରିବି । ଓହ୍ଲାଇ ଆସିଲି ଅସଲ ପୃଥିବୀକୁ ଦେଖିଲି ଏଇଠି ମଧ୍ୟ ହଜାର, ହଜାର କଷ୍ଟ । କୋଟି କୋଟି ଆଖିରେ ଲୁହ, ବେଦନା, ନିର୍ଯାତନା ଓ କ୍ରନ୍ଦନ କେହି ଶୁଣିବାକୁ ନାହିଁ । ସମସ୍ତେ ଆଗେଇଛନ୍ତି ନିଜର ସ୍ୱାର୍ଥ ପାଇଁ । କ୍ଷଣିକ ସମୟ ପାଇଁ ରଙ୍ଗ ଦେବାକୁ ଦେଶ, ଜାତି ଓ ସମାଜର ଗଠନ ପ୍ରତି କାହାରି ମନନାହିଁ, ଅଣ୍ଟାଭିଡ଼ି ବାହାରିଲି ଜଣେ ଭଲ ସଂଗଠକ ହେବାପାଇଁ କିନ୍ତୁ ଏମିତି ପରିସ୍ଥିତିରେ ପଡ଼ିଲି, ମୁଁ ଯାହା ଚାହୁଁଛି କରିବା ପାଇଁ କରିପାରୁନି କି ଛାଡ଼ିପାରୁନି । ରାଜନୀତି ବଡ଼ ଜଟିଳ, ମୁଁ ଚାଲିଲି ରାଜନୀତିର ପବିତ୍ରତା, ଦେଶ ସେବା ଓ ଏକ ନିଷ୍ଠାପର କର୍ମୀର ନ୍ରକ ନେଇ କିନ୍ତୁ ସବୁଠି ଓଲଟା, କମ୍ବଳ ଯାକ ବାଳ, ଖାଲି ପ୍ରତାରଣା । ସଭା ସମିତିରେ ଲମ୍ବା ଭାଷଣ ଓ ଅନ୍ୟାନ୍ୟ କଥା ଛଡ଼ା ଆଉ କିଛି ନୁହେଁ, ସତ-କହିଲେ ମାଡ଼ । ଏଇଠି ମଧ୍ୟ ପୁଣି ହାଆ ଚାଲିଛି । ମନରେ ଦରଦ ନ ଥାଇ ମଧ୍ୟ ଆହା, କି କଷ୍ଟ, କି ଦୁଃଖ, କି ଅତ୍ୟାଚାର କରିବାକୁ ପଡ଼ୁଛି । କଥା ବାହାଦୁରିରେ ସବୁ ମାନିନେବା କଥା । ଖାଲି ଲୋକେ ଜଳକା ହୋଇ ଚାହିଁଛନ୍ତି, ଛାଡ଼ନ୍ତୁ ଆପଣ କଣ ଲେଖିବାକୁ କହୁଛନ୍ତି ମୁଁ ଲେଖୁଛି କଣ ?

ତେବେ ଯାହା ହେଉ ବର୍ତ୍ତମାନ ଭଞ୍ଜନଗର ବିଜ୍ଞାପିତ ପରିଷଦର (N. A. C.) ଚେୟାର୍‌ମେନ୍ ଭାବେ କାର୍ଯ୍ୟକରୁଛି ଓ ପେଟପାଟଣା ପାଇଁ ଓକିଲାତି ମଧ୍ୟ କରୁଛି, ତା ଛଡ଼ା ଜୀବନ ଚଳଣିରେ ଅନେକ ଅନୁଷ୍ଠାନ ସହିତ ଜଡ଼ିତ ହୋଇ ଏବେ ଧନ୍ଦି ହୋଇଛି । କଳାକାର ସର ମଧ୍ୟ ଆସୁନାହିଁ, ମଝିରେ ମଝିରେ ଯେଉଁ ଯୋଟିଏ ଯୋଡ଼ାଏ ନାଟକ ଲେଖୁଥିଲି ତାପାଇଁ ମଧ୍ୟ ସମୟ ନାହିଁ ।

ଏମିତି ପରିସ୍ଥିତିରେ ଚାଲିଛି, ହେଉ ଆପଣଙ୍କର ମାସିକ ସାହିତ୍ୟ ପତ୍ରିକାରେ ଏହି ପୂର୍ବଟି ପ୍ରକାଶ ପାଇବ କି ନା ଜାଣେନା. କିନ୍ତୁ ଜଣେ ଦରଦୀ ବନ୍ଧୁ ହିସାବରେ ଆପଣ ନିଜେ ହୃଦୟଙ୍ଗମ କଲେ ଯଥେଷ୍ଟ, ମୁଁ ଜଣେ ଗଭୀର ଆତ୍ମବିଶ୍ୱାସୀ ଓ ଜୀବନବାଦୀ ଲୋକ । ମୋର ବିଶ୍ୱାସ ଆମର କଳାକାର, ସମାଜ, ଦେଶ ଜାତି ସମସ୍ତେ ନିଷ୍ଠାପରଭାବେ କାର୍ଯ୍ୟ କରିଲେ ଯେ କୌଣସି କ୍ଷେତ୍ରରେ ନିଶ୍ଚୟ ଫଳ ମିଳିବ ।

(ଇତି)

**ଉମାକାନ୍ତ ମିଶ୍ର**



# ଓଡ଼ିଆ ଛବି ଓ ଶ୍ରୀ ଶ୍ରୀ ପତିତପାବନ

ନାରାୟଣ ପ୍ରସାଦ ସିଂ

୧୯୬୪ରୁ ୧୯୭୧ କେତେବର୍ଷ ! କେତେଟା ବର୍ଷ ଫାଙ୍କା ଫାଙ୍କା ଯାଇ ସେଇଁ କେତେଟା ଓଡ଼ିଆ ଛବି ଏଇକେଇ ବର୍ଷ ଭିତରେ ନିଚ୍ଛକ ବାଣିଜ୍ୟିକ ସଂଗ୍ରାମ ଯୋଗୁଁ ହୋଇଛି ସେ ସବୁ ଆଙ୍ଗୁଠି ଅଗରେ ଗଣି ହୋଇ-ଯିବ । ସେଗୁଡ଼ିକର ଛବି ଇତିହାସରେ ସ୍ଥାନ କିମ୍ବା 'ଷ୍ଟାଣ୍ଡାର୍ଡ଼'ତ ଖୋଜାଯାଇ ପାରେନା...'କୌଣସିମତେ ହୋଇଯାଇଛି' ଏଇତିକି ଯାହା ସାଂତ୍ୱନା !

କାରଣ ଯା ଟଙ୍କା ଗର୍ଭ୍ୟନ୍ତର ନାହିଁ । ସବୁ ଓଡ଼ିଆ ପ୍ରଯୋଜକଙ୍କ ମୁହଁରେ ଗୋଟିଏ ରେକର୍ଡ଼ କରା କଥା...ଓଡ଼ିଆ ଛବି କରିବା ଗୋଟାଏ ମାରାତ୍ମକ ଅର୍ଥକରୀ 'ପ୍ରୋବ୍ଲମ୍': ଏବେବି ।

ତେବେ ସତ୍ୟ ଆମେ...ଆମେ ଓଡ଼ିଆ ଏ ସେମିତି ଢୋଲଉଛୁ...ସେମିତି କର୍ଣ୍ଣକାର ବାଦେ ! କେତେଦିନରେ ଆମର ଏ ଶୁନ୍‌ଶୁନିଆ ଶାଗଖିଆ ପେଟ ଗୁଡ଼ିକ କେଜା ଣେ... ଭୂପରଓ୍ୱାଲା ହିଁ କହିବେ ! ଷ୍ଟୁଡିଓ ହେବ ବୋଲି ପୁଣି ସୋର୍ ଉଠିଲାଣି... ସରକାରୀ ପୃଷ୍ଠପୋଷକତା ବି ମିଳିଲାଣି ।

ଏ ସବୁ କିନ୍ତୁ ବର୍ତ୍ତମାନର କଥା...ମାନେ ୧୯୭୧ ନଭେମ୍ବରର କଥା...... କିନ୍ତୁ ସେ ବେଳରେ ପରିସ୍ଥିତି ଥିଲା ଅଦ୍ଭୁତ ଭିନ୍ନ...ସମ୍ପୂର୍ଣ୍ଣ ନିଆରା । ଛବି କରିବା ମାନେ ହୁଇସାଇଡ଼ାଲ୍ ସ୍କ୍ୱାର୍ଡରେ ପଶିବା !

୧୯୬୦ରୁ ୧୯୭୧...ଦୀର୍ଘ ୧୧ବର୍ଷ ।

ସେଇବେଳର ଛବି ହେଲା 'ଶ୍ରୀ ଶ୍ରୀ ପତିତପାବନ' । ୧୯୬୦ ସାଲରେ କାମ ଆରମ୍ଭ ହେଲା, ସେନସର୍ ହୋଇ ଦର୍ଶକଙ୍କ ଆଖିସାମ୍ନା ପର୍ଦ୍ଦାରେ ପ୍ରତିଫଳିତ ହେଲା ୧୯୬୨ ଜାନୁୟାରୀ ମାସରେ ।

କଳାତ୍ମକ ଦୃଷ୍ଟିରୁ ଓ ବକ୍‌ସଅଫିସ୍ ଦୃଷ୍ଟିରୁ 'ଶ୍ରୀ ଶ୍ରୀ ପତିତପାବନ'ର ମୂଲ୍ୟାଙ୍କନ ଭିନ୍ନ କଥା କିନ୍ତୁ ତା ପଛରେ ଯେଉଁ ଅଦମ୍ୟ ଉତ୍ସାହ, କୃଚ୍ଛ୍ର ସାଧନା ଓ ଏକନିଷ୍ଠ ଉଦ୍ୟମ, ତଥା ଶ୍ରମ୍ ରହିଛି ସେ ଦୃଷ୍ଟିରୁ ତା'ର ବିଚାର କରିବାକୁ ପଡ଼ିବ ।

ଗାଙ୍ଗୁଲି ଫିଲ୍‌ମସ୍ ପ୍ରଯୋଜିତ ଏଇ ସାମାଜିକ-ପୌରାଣିକ ଛବି 'ଶ୍ରୀ ଶ୍ରୀ ପତିତ-ପାବନ' ପୁସ୍ତିରୁ ୨ୟ ତମ ପ୍ରଯୋଜନା । ୧୯୩୬ରେ ୭ ମୋହନ ସୁନ୍ଦର ଦେବ

ଗୋସ୍ୱାମୀଙ୍କ ପ୍ରଯୋଜିତ ପ୍ରଥମ ଓଡ଼ିଆ କଥାଚିତ୍ର 'ସୀତା ବିବାହ' । ପତିତପାବନ ପରେ ପୁରୀର ଅନ୍ୟତମ କଳାପ୍ରେମୀ ଶ୍ରୀ କେଦାରନାଥ ଗୁରୁ ଓ ଶ୍ରୀ ଲକ୍ଷ୍ମୀ ନାରାୟଣ ଗୁରୁଙ୍କ କେ. ଏଲ୍. ପ୍ରଡକ୍‌ସନ୍ ପକ୍ଷରୁ ଏକ ହିନ୍ଦୀ ଚିତ୍ର 'ଲଓ୍ୟାନ୍ ମର୍ଡ଼', ପ୍ରସ୍ତୁତ ହୋଇଛି ଓ ମାର୍‌ପିଟ୍ ଚିତ୍ର ବଜାରରେ 'ହିଟ୍' କରିଛି ।

ପୁରୀର ପ୍ରାୟ ସବୁ ସ୍ଥାନ-ମାହାତ୍ମ୍ୟ ଚିତ୍ରିତ ଦୃଶ୍ୟରେ ସମୃଦ୍ଧ 'ଶ୍ରୀ ଶ୍ରୀ ପତିତ-ପାବନ'ର ପ୍ରଯୋଜକ ହେଲେ ଶ୍ରୀ ସୁକୁମାର ଗାଙ୍ଗୁଲି···ପରିଚିତ ଗାଙ୍ଗୁଲିଦା ! କାହାଣୀ: ପଣ୍ଡିତ ଭୋଳାନାଥଙ୍କର, ସଂଳାପ ଓ ଗୀତ: ହରିହର ମିଶ୍ର, ସଂଗୀତ ପରିଚାଳନା କରିଥିଲେ ଶନ୍ତିଶ୍ରୀ ଚନ୍ଦନ, ରଘୁନାଥ ପାଣିଗ୍ରାହୀ ଓ ରାଧାମଣି ମହାପାତ୍ର । ନୃତ୍ୟ-ନିର୍ଦ୍ଦେଶ ଦେଇଥିଲେ ସଂଗୀତ ଏକାଡେମୀ ପୁରସ୍କାର ପ୍ରାପ୍ତ ନୃତ୍ୟ ଗୁରୁ ପଙ୍କଜ ଚରଣ ଦାସ ଓ ନୃତ୍ୟ ପରିବେଷଣ କରିଥିଲେ ଗୀତାଦାସ (ବର୍ତ୍ତମାନର ଗୀତା ରାଓ) ଓ ଜଣେ ମାହାରୀ 'କୋଇଲି ସିଦ୍ଧ' । ବେଶ୍ କେତୋଟି ଗୀତ ସାଙ୍ଗ କଣ୍ଠଦାନ କରିଥିଲେ ପ୍ରଫୁଲ୍ଲକୁମାର କର, ରାଧାମଣି ମହାପାତ୍ର ଓ ଚନ୍ଦନ ପ୍ରମୁଖ । ଅବଶ୍ୟ ସ୍ୱର-ସଂଯୋଜନା ପାରଂପରିକ ଶୈଳୀର । ତେଣୁ ସେତେଟା ମାତ୍ କଲାଭଳି ନୁହେଁ କିନ୍ତୁ ସେତେବେଳ ପାଇଁ ମନ୍ଦ ହୋଇନଥିଲା । ବାକୀ ଚିତ୍ରଗ୍ରହଣ, ଚିତ୍ରନାଟ୍ୟ, କଳାନିର୍ଦ୍ଦେଶ ଓ ନିର୍ଦ୍ଦେଶନା ସବୁ ଶ୍ରୀ ସୁକୁମାର ଗାଂଗୁଲିଙ୍କର ।

ଛବିର କାହାଣୀ ସଂଧାରଣ......

ଜାତି, ବର୍ଣ୍ଣ, ଭେଦର ମଣିଷ ତୋଳିଥିବା କାନ୍ଥକୁ ନମାନି ଅନ୍ୟର ଅବଜ୍ଞାମାନରେ ବଳିପଡ଼ି ସାହାଯ୍ୟ କରୁଥିବା ଅସ୍ପୃଶ୍ୟ ଏକ ଉଦ୍ଦାମ ଯୁବକ (ହରିଆ) ଓ ତା'ର ବଳିଷ୍ଠ ବାହୁ···ଦୃଢ଼ ପୌରୁଷ ଓ ଅନାବିଳ ପ୍ରୀତି ପ୍ରତି ଆସ୍ଥା ସ୍ଥାପନ ପୂର୍ବକ ଆଭିଜାତ୍ୟ, କୌଳିନ୍ୟ, ଅହମିକା ଓ ବଂଶପରଂପରାର ଜାଲିମ୍ ଅବରୋଧ ଠେଲି ଆଗେଇ ଆସିଥିବା ଏକ ଲାଜୁକ୍ ତରୁଣୀ (ଚଂପା)ର ପ୍ରେମ···ବିରହ...ମିଳନର କାହାଣୀ ଓ ଜଣେ ଚଂଡ଼ାଳୁଣୀ ବୃଦ୍ଧାର ଐକାଂତିକ ଆତ୍ମୋତ୍ସର୍ଗୀକୃତ ଭକ୍ତି ଛବିଟିର କଥାବସ୍ତୁ । ସାମ୍ୟ ସମାଜ ଓ ମୈତ୍ରୀ ମଂତ୍ରର ଉଦ୍‌ଘୋଷକ ଜଗନ୍ନାଥ ଧର୍ମର ଅନନ୍ୟ ସ୍ୱକୀୟତା ଛବିଟିରେ ପ୍ରତିଫଳିତ କରିବାର ଚେଷ୍ଟା କରାଯାଇଥିଲା । ତାରି ଭିତରେ ବର୍ଗୀ ଅତ୍ୟାଚାର, ମାରପିଟ୍, ବାଘ ସଂଗେ ଲଢ଼େଇ, ରଥଯାତ୍ରା, ଚଂଦନ ଯାତ୍ରା, ସ୍ନାନଯାତ୍ରା ସବୁର ଏକ ଅପୂର୍ବ ବିଚିତ୍ର ସମ୍ମିଶ୍ରଣ ହୋଇଛି । ଅବଶ୍ୟ କାହାଣୀରେ ନୂତନତ୍ୱ କିଛି ନଥାଇପାରେ; କିନ୍ତୁ ଦଶବର୍ଷ ତଳର ଦର୍ଶକଙ୍କ ପାଇଁ ସେତେ ମନ୍ଦ ହୋଇଥିଲା ବୋଲି କହିହେବ ନାହିଁ ।

ଚିତ୍ରର ବିଭିନ୍ନ ଭୂମିକାରେ ସଂପୂର୍ଣ୍ଣ ନବାଗତ ବା କଞ୍ଚା କଳାକାର ମାନଙ୍କୁ ନିଆ ଯାଇଥିଲା । ନାୟକ ଓ ନାୟିକା ଭୂମିକାରେ ଯଥାକ୍ରମେ କ୍ରୀଡ଼ାବିତ୍ ଶ୍ୟାମସୁନ୍ଦର ନାୟକ ଓ ନବୋଦିତା ଲକ୍ଷ୍ମୀପ୍ରିୟା ଅଭିନୟ କରିଥିଲେ । ଅନ୍ୟାନ୍ୟ ପାର୍ଶ୍ୱ ଚରିତ୍ର-

ମାନଙ୍କରେ ବର୍ତ୍ତମାନର ବିଶିଷ୍ଟ ହାସ୍ୟରସ ଶିଳ୍ପୀ ନିତ୍ୟାନନ୍ଦ ଓ ଗୀତା, ନରସିଂହ, ଗୌରାଙ୍ଗ ପ୍ରମୁଖ ଅଭିନୟ କରିଥିଲେ । ବଳିଷ୍ଠ ନିର୍ଦ୍ଦେଶନା ଅଭାବରୁ ହେଉ ବା ସମ୍ପୂର୍ଣ୍ଣ ନବାଗତ, ନବାଗତାଙ୍କ ଅ-ପୋଖତ ଅଭିନୟ ଯୋଗୁଁ ହେଉ ଅଭିନୟ ଦୃଷ୍ଟିରୁ ଛବିଟି ବେଶୀ 'ହିଟ୍' କରି ପାରିଲା ନାହିଁ...ସତ କହିବାକୁ ଗଲେ । ଅବଶ୍ୟ ସମ୍ପୂର୍ଣ୍ଣ ନିମ୍ନମାନର କିମ୍ବା 'ନଦେଖିଲା ଭଳିଆ' ଅଭିନୟ ହୋଇନଥିଲା ।

କିନ୍ତୁ ଛବିଟି ଆଶାଜନକ ବ୍ୟବସାୟ କରିପାରିନଥିଲା ସେତେବେଳେ !! ଓଡ଼ିଆ ଛବି : ଓଡ଼ିଆ ଦର୍ଶକ ଓ 'ଆଶା ଜନକ ବ୍ୟବସାୟ' ଗୋଟାଏ ଉତ୍ପୀଡ଼ିକ ବିରୋଧାଭାସ !

କିନ୍ତୁ ଛବିଟି ନିର୍ମାଣ କରିବାରେ ଯେଉଁ କଠୋର ଉଦ୍ୟମ, ସଂକଳ୍ପବଦ୍ଧ ଚେଷ୍ଟା ଓ ଦୃଢ଼ ମନୋବୃତ୍ତି ଓ ବହୁ ଝଡ଼ଝଞ୍ଜା, ବାଧାବିଘ୍ନ ଥିଲା ସେସବୁକୁ ବିଚାରକୁ ନେଲେ 'ଶ୍ରୀଶ୍ରୀ ପତିତପାବନ'ର ତ୍ରୁଟି ବିଚ୍ୟୁତି ଗୌଣ ହୋଇ ପଡ଼େ ।

ପ୍ରଯୋଜକ ଶ୍ରୀ ଗାଙ୍ଗୁଲିଙ୍କର 'ଧନ' ନଥିଲେ ବି 'ମନ' ଅଛି ଫିଲ୍ମରେ । ହିରୋ ଝିଙ୍କି ସେ । ସେଇ 'ଝିଙ୍କ୍' ଓ 'ମନ'କୁ ସମ୍ବଳ କରି ବ୍ୟକ୍ତିଗତ ପ୍ରଯୋଜନାରେ କୌଶଳିମତେ ସେ ହାତ ଦେଲେ 'ଶ୍ରୀଶ୍ରୀ ପତିତପାବନ'ରେ । ଏବେ ତାଙ୍କୁ ସେ ବିଚାରଧାରା ସମ୍ପର୍କରେ ପ୍ରଶ୍ନ କଲେ କିମ୍ବା 'ଛବିରୁ କଣ ପାଇଲେ' ବୋଲି ପଚାରିଲେ ଓଠରେ ଆତ୍ମବିଶ୍ୱାସର ହସର ପାଲିସ୍ ଦେଇ କହନ୍ତି : ଗୁଡ଼ାଏ ଏକ୍ସପେରିଏନସ୍ ...ଖୁବ୍ ମୂଲ୍ୟବାନ ।



୧୯୪୭ରେ 'POONA COMBINED CINEMAUTOGRAPHY TRAINING CENTRE & FILM PRODUCTIONS' ରୁଡ଼ି ଗାଙ୍ଗୁଲି ଦା' ପୁଣି ଅ.ସି କେ । ଫଟୋ ଦୋକାନ ଦେଲେ । କିନ୍ତୁ କଳାପ୍ରବଣ ମନ ତାଙ୍କର ସ୍ଥିର ହୋଇ ରହି ପାରିଲାନି । ୧୯୫୭ରେ ଏକ ବିରାଟ ଯୋଜନା ପ୍ରସ୍ତୁତ କରି ଏକ ସମବାୟ ଚିତ୍ର ଷ୍ଟୁଡ଼ିଓ ପାଇଁ ଦରଖାସ୍ତ କଲେ : ଯାହା ଏବେବି ସରକାରଙ୍କ ଏ ଟେବୁଲରୁ ସେ ଟେବୁଲ ଡିଆଁ ଡେଇଁ କରୁଛି । ୧୯୫୦ ମସିହାରେ 'ଓଡ଼ିଆ ଛବି ପାଇଁ ସିନେମା ଘରର ଆବଶ୍ୟକତା ସଂପର୍କରେ ସଚେତନ ହୋଇ ଟୁରିଂ ସିନେମା କଲେ ସାକ୍ଷୀଗୋପାଳ, ଡେଲାଂଗ, କୋଣାର୍କ, ଚନ୍ଦ୍ରଶେଖରପୁର ଆଦିରେ । ତା'ପରେ ୧୯୬୦ରେ ତାଙ୍କର ନିଜ ପ୍ରଯୋଜନା ଆରମ୍ଭ କଲେ । ହାତରେ ମୋଟା ଟଙ୍କା ନାହିଁ...ଖାଲି ନିଜର

କାରିଗରୀ ଅଭିଜ୍ଞତା ଓ ଦୃଢ଼ ଆତ୍ମବିଶ୍ୱାସ ନେଇ କାମରେ ଲାଗିଲେ । ନୂଆ ନାୟକ…ନୂଆ ନାୟିକା…ସଂଳାପ ରଚକ ସଂଗୀତ ନିର୍ଦ୍ଦେଶକ ସବୁ ନୂଆ । ବନ୍ଧୁ ଲୋକ ହତୋତ୍ସାହ କରେଇଲେ, ଏପରି ଏକ ବିପଦଜନକ ରିସ୍କ୍ ନନେବା ପାଇଁ…ବନ୍ଧୁ ଟାଣ୍ଡୁ ଟାପଗିର କୋରସ୍ ବି କାନରେ ବାଜିଲା । ହେଲେ ଶିବା ଷ୍ଟୁଡ଼ିଓ, ଶିବା ମୋଟା ଟଙ୍କା ଋଣ ସାହାଯ୍ୟରେ ଛବିଟି ଶେଷ ହେଲା ଓ ୧୯୬୬ ଜାନୁଆରୀରେ ପୁରୀ ଲକ୍ଷ୍ମୀ ଟକୀଜ୍‌ରେ ମୁକ୍ତିଲାଭ କଲା : ଅନେକ ଦର୍ଶକଙ୍କ ତାଳି, ଶୁଣୁଣୁ… ବାହାବାର କୋରସ୍ ଭିତରେ । ଦାଦାଙ୍କ ମୁହଁରେ ହସର ଫୁଲଝରି ! ଛବିଟି ନିର୍ମାଣ କରିବା ପାଇଁ ଯା'ଠୁ ପାଂଚଶ, ତା'ଠୁ ଛଅଶ, କାହଠୁ ଶହେ ପଚାଶ ଟଙ୍କା ଯୋଗାଡ଼ କରିବାକୁ ପଡ଼ିଛି,…ଖାଲି ପେଟରେ ବନ୍ଧୁଘରର ଓ୍ୱାସ୍ କରିପାରି ନଥିବା ଧୂଳି ଧୂସର କୋଟ୍ ପିନ୍ଧି ସହ-ନିର୍ଦ୍ଦେଶକ ହରିମିତ୍ରଙ୍କ ସଂଗେ କଲିକତା ଫୁଟପାଥରେ 'କମିଟ ସରିବ' ଆଲୋଚନା କରି ବୁଲିବାକୁ ପଡ଼ିଛି । ହେଲେ ଛବିଟି କୌଣସିମତେ ଶେଷ ହେଲା ଓ ରୂପେଲି ପର୍ଦ୍ଦା ଉପରକୁ ଆସିଲା । ଏଇ ସଂଘର୍ଷ ମୁହୂର୍ତ୍ତ ସବୁରେ ସେ କେବଳ ପାଇଥିଲେ 'ଉତ୍କଳ ଚଳଚ୍ଚିତ୍ର ପ୍ରତିଷ୍ଠାନ'ର କବିରାଜ କୃଷ୍ଣଚନ୍ଦ୍ର ତ୍ରିପାଠୀ ଶର୍ମାଙ୍କ ସହଯୋଗ । ଏତକ ବିଷୟକୁ ନନେଲେ ଶ୍ରୀଶ୍ରୀ ପତିତପାବନର ମୂଲ୍ୟାଙ୍କନ କରି ହୁଏନା । ଏକଲବ୍ୟ ପରି ଏକନିଷ୍ଠଭାବେ ଦାଦା ଲାଗିଛନ୍ତି ତାଙ୍କ ଆଗାମୀ ଚିତ୍ର 'ଡେଙ୍ଗ୍' ପାଇଁ । ଆଶା ଓଡ଼ିଆଏ ତାଙ୍କ କଥା ବୁଝିବେ…ନହେଲେ ଜଗନ୍ନାଥ ଭରସା !



# ଅଜ୍ଞାତ ନାୟକ

ମହାପାତ୍ର ଆନନ୍ଦଶଙ୍କର ମିଶ୍ର

ଚଳଚ୍ଚିତ୍ରରେ ବହୁସମୟରେ ଭୟଙ୍କର ଲୋମହର୍ଷଣ ଦୃଶ୍ୟମାନ ଦେଖିବାକୁ ମିଳେ । ହୁଏତ ନାୟକ ଜଣେ ବୈମାନିକ, ଆକାଶରେ ଚାରିପଟରୁ ତାଙ୍କୁ ଶତ୍ରୁ-ପକ୍ଷରୁ ବିମାନମାନେ ଘେରିଯାଉଛନ୍ତି, ସେମାନଙ୍କର ଗୁଳିମାଡ଼ରେ ନାୟକର ବିମାନଟି ଅଚଳ ହୋଇ ଘୂରି ଘୂରି ଭୂମିରେ ପଡ଼ି ଚୂରମାର୍ ହୋଇଯାଇଛି । କିନ୍ତୁ ସୌଭାଗ୍ୟ କ୍ରମେ ଆହତ ନାୟକ କୌଣସି ପ୍ରକାରେ ବଞ୍ଚିଯାଇଛି । କିମ୍ବା କୌଣସି ଘରେ ନିଆଁ ଲାଗିଛି ତିନିମହଲା ଉପରେ ଗୋଟିଏ କୋଠରୀରେ ନାୟିକା ରହିଯାଇଛି, ନିଆଁ ଲିଭାଳି ଦଳ କୌଣସି ପ୍ରକାରେ ତାଙ୍କୁ ଉଦ୍ଧାର କରି ପାରୁନାହାନ୍ତି, କାରଣ ସିଡ଼ି ଭାଙ୍ଗି ଯାଇଛି । ଶେଷରେ ବାଧ୍ୟହୋଇ ନାୟିକା ଝରକା ଦେଇ ତଳକୁ ଡେଇଁ ପଡ଼ିଲା ଏବଂ ନିଆଁ ଲିଭାଳୀ ଦଳ ଜାଲପାତି ତାଙ୍କୁ ରକ୍ଷାକଲେ ।

ସାଧାରଣତଃ ଦର୍ଶକମାନେ ଭାବନ୍ତି ସେମାନଙ୍କର ପ୍ରିୟ ନାୟକ ନାୟିକା-ମାନେ ନିଜ ଜୀବନକୁ ପାଣିଛଡ଼ା କରି କି ସୁନ୍ଦର ଅଭିନୟ ନ କରୁଛନ୍ତି ! କି ସାହସୀ ସେମାନେ, କିନ୍ତୁ ପ୍ରକୃତକଥା ଜାଣିଲେ ଅବାକ୍ ହେବାକୁ ପଡ଼େ ଯେ ଏହିସବୁ ବିପଜ୍ଜନକ ଦୃଶ୍ୟରେ ସାଧାରଣତଃ ନାୟକ ନାୟିକାମାନେ ଅଭିନୟ ନ କରି ସେମାନଙ୍କ ବଦଳରେ ଅନ୍ୟ ଦୁଃସାହସୀ ବ୍ୟକ୍ତି ନାୟକ ବା ନାୟିକାର ବେଶ-ପୋଷାକ ପିନ୍ଧି ଅଭିନୟ କରନ୍ତି ।

ଚଳଚ୍ଚିତ୍ର·ଭାଷାରେ ଏହି ଧରଣର ଦୃଶ୍ୟକୁ 'ଷ୍ଟାଣ୍ଟ ସିନ୍' ଏବଂ ଉକ୍ତ ଦୃଶ୍ୟରେ ଅଭିନୟ କରୁଥିବା ବ୍ୟକ୍ତିଙ୍କୁ 'ଷ୍ଟାଣ୍ଟ ମ୍ୟାନ' କୁହାଯାଏ । ସାଧାରଣତଃ ଦର୍ଶକଗଣ ଏମାନଙ୍କ ସମ୍ବନ୍ଧରେ ଜାଣିପାରନ୍ତି ନାହିଁ, ସେମାନେ ଖୁସି ହୁଅନ୍ତି ସେମାନଙ୍କର ପ୍ରିୟ ନାୟକ-ନାୟିକାଙ୍କ ଅଭିନୟ କୃତିତ୍ୱରେ, ସବୁ ପ୍ରଶଂସା ପାଆନ୍ତି ନାୟକ-ନାୟିକା ମାନେ, କିନ୍ତୁ ପ୍ରକୃତ ପ୍ରଶଂସା ପାଇବା ବ୍ୟକ୍ତି ଏଥିରୁ ବଞ୍ଚିତ ହୁଏ ।

ପୃଥିବୀର ସବୁଠାରୁ ଦୁଃସାହସୀ ଜଣେ ଷ୍ଟାଣ୍ଟ ମ୍ୟାନଙ୍କ ଅଭିନୟ କୃତିତ୍ୱ କଥା ଆଲୋଚନା କରାଯାଉଛି । ଆମେରିକାର ଏହି ଦୁଃସାହସୀ ଷ୍ଟାଣ୍ଟ ମ୍ୟାନ ହେଲେ ଡିକ୍ ଗ୍ରେସ୍ । ଚଳଚ୍ଚିତ୍ର ଦର୍ଶକଙ୍କ ଆନନ୍ଦପାଇଁ ସେ ବହୁବାର ମୃତ୍ୟୁ ସହିତ ଲଢ଼ାଇ କରିଛନ୍ତି । ଅବିଶ୍ୱାସ ହେଲେ ମଧ୍ୟ ଦେହରେ ଛବିଶଟି ଲୋମହର୍ଷକ ବିମାନ ଦୁର୍ଘଟଣାର କ୍ଷତ ଚିହ୍ନ ନେଇ ସେ ବଞ୍ଚିରହିଥିଲେ । ନ'ଥର ତାଙ୍କର ପଞ୍ଜରାହାଡ଼

ଭାଙ୍ଗି ଥିଲା, ଏକ ମାରାତ୍ମକ ଦୁର୍ଘଟଣାରେ ତାଙ୍କର ବେକ ଭାଙ୍ଗି ଯାଇଥିଲା; ମେରୁଦଣ୍ଡର ହାଡ ଖସି ଯାଇଥିଲା । ପ୍ରତି ଦୁର୍ଘଟଣାର ପରିସମାପ୍ତି ହୁଏତ ମୃତ୍ୟୁ ମଧ୍ୟରେ ହୋଇଥାନ୍ତା ।

ଆମେରିକାର ସିନେମା-ଜଗତ ହଲିଉଡର ଚଳଚ୍ଚିତ୍ରରେ ବିମାନ ଦୁର୍ଘଟଣାର ଦୃଶ୍ୟ ଦେଖାଇବା ପାଇଁ, 'ଡେଥ୍-ସ୍କୋୟାଡ୍ରନ' ନାମରେ ଏକ ବୈମାନିକଦଳ ସୃଷ୍ଟି କରାହୋଇଥିଲା ଯେଉଁମାନଙ୍କ ପାଖରେ ଜୀବନ ମୃତ୍ୟୁ ମଧ୍ୟରେ କୌଣସି ପ୍ରଭେଦ ନ ଥିଲା । ଏହି ବୈମାନିକ ଦଳର ନାୟକ ଥିଲେ ଡିକ୍ ଗ୍ରେସ ।

ପିଲାଦିନରୁ ଡିକ୍‌ଙ୍କର ଆକାଶରେ ଉଡ଼ିବାର ଆଗ୍ରହ ଥିଲା, ପକ୍ଷୀମାନଙ୍କୁ ଆକାଶରେ ଦେଖି ସେ ଭାବନ୍ତି କେବେ ବଡ ହୋଇ ସେ ପକ୍ଷୀମାନଙ୍କ ଭଳି ବିମାନ ନେଇ ଆକାଶରେ ଘୂରିବୁଲିବେ । ବାଲ୍ୟ କାଳରେ ବୈମାନିକ ହେବାର ଯେଉଁ ସଙ୍କଳ୍ପ ପ୍ରଥମ ମହାଯୁଦ୍ଧ ସମୟରେ ତାଙ୍କୁ ବୈମାନିକ ହେବାର ସୁଯୋଗ ଦେଲା । ଆମେରିକା ବିମାନ-ବାହିନୀରେ ସେ ଯୋଗଦେଇ ବିମାନ ଚାଳନାରେ ଦକ୍ଷତା ଅର୍ଜନ କଲେ ।

ଯୁଦ୍ଧ ସରିବା ପରେ କପର୍ଦ୍ଦକଶୂନ୍ୟ ଅବସ୍ଥାରେ ସେ ହଲିଉଡ ଆସନ୍ତି । ସେଠାରେ ଏକ ବନ୍ଧୁଙ୍କ ସହାୟତାରେ ଷ୍ଟୁଡିଓରେ ମାଲପତ୍ର ରକ୍ଷକର ଏକ ଚାକିରି ସେ ପାଆନ୍ତି ।

ଦିନେ ସେ ଦେଖିଲେ, ଜଣେ ଷ୍ଟାଣ୍ଟ୍ ମ୍ୟାନ୍ ୪୫ ଫୁଟ ଉଚ୍ଚରୁ ଏକ ଜାଲ ଉପରେ ଲମ୍ଫ ଦେଇ ପଡିବା ପାଇଁ ପ୍ରସ୍ତୁତ ହେଉଛି. ଏହି ଉତ୍ତେଜକ ଦୃଶ୍ୟ ଯୁବକ ଡିକ୍‌ଙ୍କ ମନ ମଧ୍ୟରେ ଚଞ୍ଚଳତା ସୃଷ୍ଟି କରେ । ଦୃଶ୍ୟଟି ତୋଳିବା ପାଇଁ ସବୁକିଛି ପ୍ରସ୍ତୁତ ହୋଇସାରିବା ପରେ ପରିଚାଳକ ଯେତେବେଳେ ଲମ୍ଫଦେବାପାଇଁ ନିର୍ଦ୍ଦେଶ ଦେଲେ ସେତେବେଳେ ଲୋକଟି ବିପଦ ଆଶଙ୍କାରେ ବିଚଳିତ ହୋଇ ପଡିଲା । ସେ କମ୍ପିତ କଣ୍ଠରୁ ହଠାତ୍ ଚିତ୍କାର କରି କହିଲା, ମୁଁ ପାରିବିନି ମୋତେ ଭୟ ଲାଗୁଛି ।

ଲୋକଟି ପାଇଁ ଗ୍ରେସଙ୍କ ମନରେ ଅନୁକମ୍ପା ଜାତ ହେଲା, ଏଥିପୂର୍ବରୁ ଯୁଦ୍ଧ ସମୟରେ ସେ ଦେଖିଛନ୍ତି ବହୁ ସୈନିକ ବିପଦ ଆଗରେ କିପରି ବିଚଳିତ ହୋଇ ଯାଆନ୍ତି । ଡିକ୍ ହଠାତ୍ ମନସ୍ଥ କଲେ ଏହି ଷ୍ଟାଣ୍ଟପାଇଁ ସେ ନିଜେ ଚେଷ୍ଟାକରି ଦେଖିବେ । ସିଡି ଦେଇ ଉପରକୁ ଉଠି ସେ ପରିଚାଳକଙ୍କ ଉଦ୍ଦେଶ୍ୟରେ ଚିତ୍କାରକରି କହିଲେ ଆପଣମାନେ ରେଡି ?

ସମସ୍ତେ ନବାଗତ ଲୋକଟିର କାଣ୍ଡ ଦେଖି ଅବାକ୍ ! ପରିଚାଳକ ମୁହୂର୍ତ୍ତେ ଦ୍ୱିଧାକରି କହିଲେ, ଜାଲ ଉପରେ ପଡ଼ିବା ପୂର୍ବରୁ ଶୂନ୍ୟରେ ଦୁଇଥର ଡିଗବାଜି ନେଇ ଘୂରିବାକୁ ପଡିବ । ପାରିବ ତୁମେ ?

—ହଁ । ଜ୍ୟାକ୍ ଗ୍ରେସ୍ ଉତ୍ତର ଦେଲେ । ଚଳଚ୍ଚିତ୍ରକୁ ଅନାଇ ସେ କେବଳ ଅସଂଖ୍ୟ ମୁଣ୍ଡ ଦେଖିବାକୁ ପାଇଲେ, ସମସ୍ତଙ୍କର ବିସ୍ଫାରିତ ଦୃଷ୍ଟି ତାଙ୍କ ଉପରେ ନିବଦ୍ଧ । ସେଇ ଲୋକଟା କିଛିଏ ଆଗରୁ ଭୟ ପାଇଥିଲା, ତାର ମାନସିକ ଅବସ୍ଥା ସେ ଉପଲବ୍‌ଧି କଲେ । ଭାବିଲେ, ଏ ଧରଣର ବିପଦର ଝୁଙ୍କି ନେବା ବୋଧହୁଏ ଉଚିତ ହୋଇନାହିଁ, କିନ୍ତୁ ବର୍ତ୍ତମାନ ଆଉ ପଛେଇଲେ ଚଳିବ ନାହିଁ ।

ଜ୍ୟାକ୍ ଚଳଚ୍ଚିତ୍ରକୁ କର୍ମ ଦେଲେ ।

—ଅପୂର୍ବ ! ପରିଚାଳକ ଆନନ୍ଦରେ ଚିତ୍କାର କରିଉଠିଲେ, ଏ ଧରଣର ସ୍ୱାଭାବିକ ପତନ ମୁଁ କେବେ ଦେଖିନାହିଁ ।

ସେହି ଦିନଠାରୁ ଜ୍ୟାକ୍ ଗ୍ରେସ୍ ହେଲେ ହଲିଉଡ୍‌ର ଷ୍ଟାଣ୍ଟ ମ୍ୟାନ୍ ।

ଶୀଘ୍ର ଦୁଃସାହସିକ କାର୍ଯ୍ୟରେ ସେ ଯଥେଷ୍ଟ ସୁନାମ ଅର୍ଜନ କଲେ । ତାଙ୍କର ଦୁଃସାହସିକ ଷ୍ଟାଣ୍ଟ ମଧ୍ୟରୁ ବେଶୀ ଲାଗିଥିଲା ବିମାନ ଚାଳନା ସଂପର୍କୀୟ । ଶୂନ୍ୟରେ ସବୁ ଧରଣର ଝୁଙ୍କି ନେବା ପାଇଁ ସେ ସର୍ବଦା ପ୍ରସ୍ତୁତ । କୌଶଳପ୍ରଦର୍ଶକ ବିମାନ ଚାଳନା, ପ୍ଲେନ୍ କ୍ରାସ୍, ବିମାନ ନେଇ ଆକାଶରେ ଘୂରି ଘୂରି ଡିଗବାଜି ଖାଇବା, ଘଣ୍ଟାରେ ୯୦ମାଇଲ ବେଗରେ ଯାଉଥିବା ଦୁଇଟି ବିମାନ ମଧ୍ୟରୁ ଗୋଟିକରୁ ଅନ୍ୟଟିକୁ ଡିଆଁ ମାରିବା, ପ୍ରବଳ ତୋଫାନ ମଧ୍ୟରେ ବିମାନ ଡେଣାରେ କସରତ୍‌ରେ ଝୁଲିବୁଲିବା— ଏହି ଧରଣର ସବୁ ଦୁଃସାହସିକ କାମ ଜ୍ୟାକ୍ ଚଳଚ୍ଚିତ୍ରପାଇଁ କରୁଥିଲେ ।

ଦିନେ ହଲିଉଡ୍‌ର ବିଖ୍ୟାତ ପରିଚାଳକ ଉଇଲିୟମ ଓ୍ୱେଲମେନଙ୍କ ପାଖରୁ ତାଙ୍କୁ ଡକରା ଆସିଲା । ଉଇଲିୟମ ସେତେବେଳେ 'ଉଇଙ୍ଗ୍‌ସ' ନାମକ ଏକ ଯୁଦ୍ଧ ଚିତ୍ର ନିର୍ମାଣ ଆରମ୍ଭ କରିଥାନ୍ତି ।

ସେ ଗ୍ରେସ୍‌ଙ୍କୁ କହିଲେ ଏହି ଫିଲ୍ମରେ ମୋର ଏପରି କେତୋଟି ପ୍ଲେନ୍ ଦୁର୍ଘଟଣା ଦେଖାଇବା ଦରକାର, ଯାହା ଏଥିପୂର୍ବରୁ ଆଉ କୌଣସି ଫିଲ୍ମରେ ଦେଖା ହୋଇନାହିଁ । ଏକାବେଳକେ ପ୍ରକୃତ ପ୍ଲେନ୍ ଦୁର୍ଘଟଣା ମୋର ଦରକାର ।

ପ୍ରଥମ ବିମାନ ଦୁର୍ଘଟଣାଟି ଘଟିବ ଦୁଇଟି ଜର୍ମାନ ବିମାନଙ୍କ ଗୁଳି ବର୍ଷଣ ଫଳରେ । 'ନୋ ମ୍ୟାନସ ଲେଣ୍ଡ'ରେ ଖସିପଡ଼ି ବିମାନଟି ଚୂର୍ଣ୍ଣ ବିଚୂର୍ଣ୍ଣ ହୋଇଯିବ । 'ନୋ ମ୍ୟାନସ ଲେଣ୍ଡ' ର ଦୃଶ୍ୟରେ ମଧ୍ୟ କୌଣସି ଫାଙ୍କି ରହିବ ନାହିଁ,— କଣ୍ଟାତାର ଆଉ ସେଲର ଗର୍ତ୍ତ ଚାରି ପାଖରେ ରହିବ । ତୁମ ପକ୍ଷରେ କାମଟା ସାଂଘାତିକ କଠିନ, କାରଣ ପ୍ଲେନ୍ ନେଇ ଉଡ଼ିବା ଆଗରୁ ତୁମକୁ ଏକ ସ୍ଥାନ ନିର୍ଦ୍ଦିଷ୍ଟ କରି ନେବାକୁ ପଡ଼ିବ ଏବଂ ସେହି ନିର୍ଦ୍ଦିଷ୍ଟ ସ୍ଥାନରେ ହିଁ ପ୍ଲେନ ନେଇ ପଡ଼ିବାକୁ ହେବ । କିଛିଏ ଏପଟ ସେପଟ ହେଲେ ଚଳିବ ନାହିଁ । କାରଣ ଚାରି ପାଖରେ କଣ୍ଟାତାର ପ୍ରଭୃତି ଥିବ । ଏହା ବ୍ୟତୀତ କ୍ୟାମେରାଠାରୁ ୫୦ ଫୁଟ ମଧ୍ୟରେ ରହିବାକୁ ପଡ଼ିବ ।

ଦୂରରେ ପଡ଼ିଲେ ଛବି ଭଲ ଉଠିବ ନାହିଁ, —ସମସ୍ତ ଫାଶ୍‌ଟା ବ୍ୟର୍ଥ ହୋଇଯିବ । ହିଁ ପଡ଼ିବା ସମୟରେ ପ୍ଲେନଟା କିନ୍ତୁ ଓଲଟି ଯିବ ଯେପରି ।

—ଅନ୍ୟ ଫାଶ୍ ଗୁଡ଼ିକ କି ଧରଣର ? —ଗ୍ରେସ୍ ପଚାରିଲେ ।

ଦ୍ୱିତୀୟଟା ହେଉଛି ପ୍ଲେନଟା ଯାଇ ଏକ ପକ୍‌କା କୋଠାରେ ଧକ୍‌କା ଦେବ ଏବଂ ତୃତୀୟଟା ହେଲା ପ୍ଲେନଟା ଭୂଇଁ ଉପରୁ ଆକାଶକୁ ଉଠିବା ମାତ୍ରେ ଖସି ପଡ଼ିବ । ଚତୁର୍ଥ ଏକ ଦୁର୍ଘଟଣା ମଧ୍ୟ ଛବିଟିରେ ରହିବ । ତେବେ ସେଟା କି ଧର-ଣର ହେବ, ସେକଥା ମୁଁ ଏବେ ସୁଦ୍ଧା ସ୍ଥିର କରିନାହିଁ ।

ଗ୍ରେସ୍ କିଛି ସମୟ ଚୂପ୍ କରି ରହିଲେ । ଶେଷରେ କହିଲେ, ଦୁର୍ଘଟଣା ଗୁଡ଼ିକ ଟିକିଏ କଠିନ । ମୁଁ ଟିକିଏ ଭାବି କହିବି ।

କହିବା ବାହୁଲ୍ୟ, ସେ ସମ୍ମତ ହୋଇଥିଲେ ଏ କାମରେ । ଭାବିବା ପାଇଁ ଯାହା ସମୟ ନେଇଥିଲେ, ତାହା ପାନ୍ଙ୍ଗ କରିବା, ଭୟ କଟାଇବା ପାଇଁ ନୁହେଁ । ସେ କାଳର ଯୁଦ୍ଧ ସମୟରେ ବିମାନର ଗଠଣି ସେ ଭଲ ଭାବରେ ପରୀକ୍ଷା କରି ଆଘାତର ସମ୍ଭାବନା କମାଇବା ପାଇଁ କିଛି କିଛି ଅଂଶ ବଦଳାଇ ଦେଲେ । ଉଦାହରଣ ସ୍ୱରୂପ ପେଟ୍ରୋଲ୍ ଟ୍ୟାଙ୍କିର ସ୍ଥାନକୁ ସେ ଘୁଞ୍ଚାଇଦେଲେ ନିଆଁ ଲଗିବା ସମ୍ଭାବନା ଏଡ଼ାଇବା ପାଇଁ ଏବଂ କକ୍‌ପିଟ୍ ବା ଚାଳକର କେବିନ ମଧ୍ୟରେ କିଛି ଇସ୍ପାତ ଟିଉବ ତିଆରିକରି ଲଗାଇଦେଲେ, ଯେପରି କି ଧକ୍‌କା ଫଳରେ ସେଟା ମୋଡ଼ିମାଡ଼ି ଚେପା ନ ହୋଇଯାଏ ।

ଏହି ଛବିର ଷ୍ଟାଣ୍ଟସିନ୍ ଗୁଡ଼ିକରେ ଅଭିନୟ କରିବା ଫଳରେ ତାଙ୍କୁ ଡାକ୍ତରଙ୍କ ପାଖକୁ ଯିବାକୁ ପଡ଼ିଥିଲା । ଡାକ୍ତର ପରୀକ୍ଷା କରି କହିଲେ ଯେ, ତାଙ୍କର ବେକ ଭାଙ୍ଗି ଯାଇଛି, ସରଳକାଳ ସ୍ପର୍ଶ ଦ୍ୱାରା ହସ୍ତ ହାଡ଼ଟି ଘୁଞ୍ଚି ଯାଇଛି । ଚିକିତ୍ସା ଶାସ୍ତ୍ର ଅନୁଯାୟୀ ତାଙ୍କର ମୃତ୍ୟୁ ହେବା ନିଶ୍ଚିତ ଥିଲା । ତାଙ୍କର ବଞ୍ଚି ରହିବା ହିଁ ଆଶ୍ଚର୍ଯ୍ୟ !

ଏ ଘଟଣା ପରେ ଗ୍ରେସ୍‌ଙ୍କୁ ଡାକ୍ତର ଅନ୍ୟ କୌଣସି ଷ୍ଟାଣ୍ଟସିନରେ ଅଭିନୟ ନ କରିବାକୁ ସାବଧାନ କରାଇ ଦଅନ୍ତି, କାରଣ ସାମାନ୍ୟ ଆଘାତରେ ତାଙ୍କର ମୃତ୍ୟୁ ଘଟି ପାରେ ।

ଗ୍ରେସ ଡାକ୍ତରଙ୍କ କଥାନୁଯାୟୀ କାମରୁ ଅବସର ଗ୍ରହଣ କରନ୍ତି । କିନ୍ତୁ ଶୀଘ୍ର କର୍ମହୀନ ଜୀବନର ପରିବେଶ ତାଙ୍କୁ ଅଧୈର୍ଯ୍ୟ କରି ତୋଳେ । ସେ ପୁଣି ହଲି-ଉଡ୍‌କୁ ଫେରିଯାଆନ୍ତି ଏବଂ ଷ୍ଟାଣ୍ଟମ୍ୟାନ ହିସାବରେ ଅନେକ ବିପଦ୍‌ଜନକ କାର୍ଯ୍ୟ ଗ୍ରହଣ କରନ୍ତି ।

ନିଆଁ ଲଗିବା ଦୃଶ୍ୟରେ ମଧ୍ୟ ଗ୍ରେସ୍‌ଙ୍କୁ କେତେଥର ବିପଦ ବରଣ କରିବାକୁ ପଡ଼ିଛି ।

ଅନ୍ୟ ଏକ ଜ୍ୱଳନ୍ତ କୋଠାର ପାଞ୍ଚ ମହଲା ଉପରେ ଥିବା ବାଲକୋନୀରୁ ତଳେ ନିଆଁ ଲାଗିଲା ; କର୍ମୀମାନେ ଧରିଥିବା ଜାଲକୁ ଡେଇଁ ପଡ଼ିବା ବେଳେ ସେ ଅଳ୍ପ କିଛିକ ପାଇଁ ବଞ୍ଚି ଯାଇଥିଲେ । କାମଟି ହେଲା ବେଳେ ବିଶେଷ ବିପଦର ଝୁଙ୍କିଅଛି ବୋଲି ଗ୍ରେଗଙ୍କର ମନେ ହୋଇଥିଲା । ଏକମାତ୍ର ଅସୁବିଧା ଯାହା ଥିଲା ତାହା ହେଉଛି କୋଠା ନିକଟରେ ଟେଲିଫୋନ ଖୁଣ୍ଟି ଓ ତାରର ଅବସ୍ଥାନ ।

କୋଠାଟା ଅବଶ୍ୟ ଷ୍ଟୁଡ଼ିଓ ମଧ୍ୟରେ ତିଆରି କରାହୋଇଥିବା ନକଲି କୋଠା । ସମସ୍ତ ଦୃଶ୍ୟଟିକୁ ଜୀବନ୍ତ କରିବା ପାଇଁ ଏବଂ ଅଗ୍ନିର ଲେଲିହାନ ଶିଖା ସୃଷ୍ଟି କରିବା ପାଇଁ ଏହି ନକଲି କୋଠା ମଧ୍ୟରେ ରଖାହୋଇଥିଲା ଗଦା ଗଦା କାଗଜ, ଗଣି ଗଣି ପୁରୁଣା ଫିଲ୍ମ ଓ ବହୁତିଏ କଳା ପାଉଡ଼ର । ଏସବୁ ପୁଣି ପେଟ୍ରୋଲରେ ଭିଜା ହୋଇଥିଲା ।

ଗ୍ରେଗ୍ ପାଞ୍ଚ ମହଲାର ବାଲକୋନୀ ଉପରେ ଠିଆହୋଇ ଇଙ୍ଗିତରେ ଜଣାନ୍ତି ଯେ ସେ ପ୍ରସ୍ତୁତ । ପରିଚାଳକ ଚିତ୍କାର କଲେ, ନିଆଁ ଲଗାଅ ।

ଜ୍ୱଳନ୍ତ ମଶାଲ ଦାହ୍ୟ ବସ୍ତୁଗୁଡ଼ିକ ଉପରେ କର୍ମୀମାନେ ଫିଙ୍ଗି ଦେଲେ । ସମସ୍ତଙ୍କର ଧାରଣା ଥିଲା ସମସ୍ତ କୋଠାଟି ଜଳି ଉଠିବାକୁ କେତେ ମିନିଟ ସମୟ ଲାଗିବ । କିନ୍ତୁ ସେମାନଙ୍କର ଧାରଣାକୁ ଭୁଲ୍ ପ୍ରମାଣିତ କରି ଅକସ୍ମାତ୍ ଏକ ବିସ୍ଫୋରଣ ହେଲା ଏବଂ ମୁହୂର୍ତ୍ତିକ ମଧ୍ୟରେ ସାରା କୋଠାଟି ଅଗ୍ନିର କରାଳ ଗ୍ରାସରେ ପଡ଼ିଲା ।

ଗ୍ରେଗ୍ ଅଗ୍ନି ଶିଖାରୁ ରକ୍ଷା ପାଇବା ପାଇଁ ଜାଳ ସହିତ ଭିଡ଼ି ଠିଆହେଲେ । ତାଙ୍କୁ ଘେରି ଅଗ୍ନି ଶିଖା ନୃତ୍ୟ କରୁଥାଏ । ଉତ୍ତାପ ଲାଗି ତାଙ୍କ ଦେହରେ ବଡ଼ ବଡ଼ ଫୋଟକା ହୋଇଗଲା ।

ଇତିମଧ୍ୟରେ ତଳେ ଯେଉଁମାନେ ଥିଲେ ପ୍ରାୟ ସମସ୍ତଙ୍କର ବୁଦ୍ଧିଭ୍ରଂଶ ହେଲାଣି । ନିଆଁ ଲିଭାଳି କର୍ମୀଗଣ ଏହି ଭୟଙ୍କର ଅଗ୍ନି ସହିତ ଲଢ଼ି ପାରୁ ନ ଥାନ୍ତି । ପ୍ରଚଣ୍ଡ ଉତ୍ତାପ ହେତୁ ସେମାନେ କୋଠାଟି ପାଖକୁ ଯାଇ କୌଣସି ପ୍ରକାରେ ଜାଲଟିକୁ ଠିକ୍ ଭାବରେ ଧରି ପାରୁ ନ ଥିଲେ ଯଦ୍ଦ୍ୱାରା ଗ୍ରେଗ୍ ଷାଠିଏ ଫୁଟ ଉପରୁ ଲମ୍ଫ ଦେବେ ।

ଦୁର୍ଭାଗ୍ୟ ସେମାନେ ଚେଷ୍ଟା କଲେ କିନ୍ତୁ ନିଆଁ ତେଜ ଯୋଗୁଁ ଦୁଇଥରଯାକ ସେମାନଙ୍କୁ ପଛେଇ ଆସିବାକୁ ହେଲା ।

ଡିକ୍ ଗ୍ରେଗ୍ ନିଜେ ତାଙ୍କର ଏକ ବହିରେ ଉକ୍ତ ଦୁର୍ଘଟଣାର ବର୍ଣ୍ଣନା ଦେଇଛନ୍ତି —

''କେତେ ମୁହୂର୍ତ୍ତ ଆଗର ଶାନ୍ତ ପରିବେଶ ମଧ୍ୟରେ ବର୍ତ୍ତମାନ ନରକର ନିଆଁ ଜଳିଉଠିଛି । ସ୍ତ୍ରୀଲୋକମାନେ କାନ୍ଦୁଥାନ୍ତି, ପୁରୁଷମାନେ ଚିତ୍କାର କରୁଥାନ୍ତି, ପର-

ସ୍ବଳକ ମଧ୍ୟ ତାଙ୍କର ମାନସିକ ସ୍ୱରସାମ୍ୟ ହରାଇଲେ, ମୁଁ ତାଙ୍କର ଅସହାୟ ଚତ୍କାର ଶୁଣିବାକୁ ପାଇଲି—ଈଶ୍ୱରଙ୍କ ଦୋହାଇ, ଜାଲଟା ଠିକ୍ ଜାଗାରେ ଧର । କିଛି ଗୋଟାଏ କର ।"

ଶେଷଥର ପ୍ରାଣପଣେ ଚେଷ୍ଟାକରି ଫାୟାର୍‌ମେନ୍‌ମାନେ ଜାଲଟା ପ୍ରାୟ ଠିକ୍ ଯାଗାରେ ଧରନ୍ତି । ଠିକ୍ ଟେଲିଫୋନ୍ ତାର ଗୁଡ଼ାକ ତଳେ । ସେ ଗୁଡ଼ିକ ଉନମହଲର ଝରକା ପାଖରେ ଥିଲି ! ଯାହାହେବ ହେଉ, ଏଇ ମୋର ଶେଷ ସୁଯୋଗ ।

"ମୁଁ ତଳକୁ ମଥା ନୁଆଁଇ ଡେଇଁଦେଲି । ଉପରେ ଶିହରଣ ଉଠିଲା ଯେତେ-ବେଳେ ଦେଖିଲି ମାଟି ମଧ୍ୟ ଯେପରି ଲମ୍ଫ ପ୍ରଦାନ କରି ମୋ ଆଡ଼କୁ ଆଗେଇ ଆସୁଛି । ଟେଲିଫୋନ୍ ତାର ପାଖଦେଇ ପଡ଼ିବା ସମୟରେ ହାତ ଦୁଇଟିକୁ ନୁଆଁଇ ଦେଇଥାଏ, ବାହୁର ମାଂସ ପେଶୀରେ ତାର ଘଷି ହିବାର ଅନୁଭବ କଲି । ପଲକ ପାଇଁ ମୋର ପତନ ବେଗ ତାର ଗୁଡ଼ିକ ଦ୍ୱାରା ସାମାନ୍ୟ ବାଧାପ୍ରାପ୍ତ ହୁଏ । ତାପରେ ତାର ଛିଣ୍ଡାଇ ଜାଲ ଉପରେ ଆସି ପଡ଼ିଲି । କେତେ ସେକେଣ୍ଡ ପରେ ଘରର କାନ୍ଥ ଭୁଷୁଡ଼ି ପଡ଼ିଲା ।

ଏ ଏକ ନିଦାରୁଣ ଅଭିଜ୍ଞତା । ତଥାପି ଡିକ୍ ଗ୍ରେସ ବାରମ୍ବାର ଏ ଧରଣର ମାରାତ୍ମକ ଦୃଶ୍ୟ ମାନଙ୍କରେ ଅଭିନୟ କରିବାକୁ ଭୟ ପାଇ ନାହାନ୍ତି, ଥରେ ଏକ ନାୟିକାର 'ଡବଲ' ତାଙ୍କୁ ସାଜିବାକୁ ପଡ଼ିଲା । ଗଳ୍ପରେ ଥିଲା ଗୋଟିଏ ନାଚ-ଘରେ ମଦ୍ୟପ ମାନଙ୍କ ମଧ୍ୟରେ ପିଟାପିଟି ଲାଗିବା ଫଳରେ ନାୟିକାର ପୋଷାକରେ ନିଆଁ ଲାଗିଯିବ । କାହାଣୀ ଲେଖକ ତ ଏହି ଧରଣର ଘଟଣା ଲେଖି ଖଲାସ, ତାଙ୍କୁ ଯଦି ଏଭଳି ଦୃଶ୍ୟରେ ଅଭିନୟ କରିବାକୁ ପଡ଼ିଥାନ୍ତା, ତା'ହେଲେ ଏ ପ୍ରକାରର ନାଟକୀୟ ଦୃଶ୍ୟ ସହଜରେ ସେ ଲେଖି ନ ଥାନ୍ତେ ।

ଡିକ୍ ନର୍ତ୍ତକୀ ପୋଷାକ ପିନ୍ଧି ସେଟ୍‌କୁ ଆସନ୍ତି । ସ୍ତ୍ରୀଲୋକ ଭଳି ଦେଖି-ବାକୁ ନହେଲେ ମଧ୍ୟ ଖୁବ୍ ଲମ୍ବା ନୁହଁନ୍ତି ବୋଲି ପରିଚାଳକ ତାଙ୍କ ଦ୍ୱାରା କାମ ଚଳାଇନେଇ ପାରିବେ । ଗଣ୍ଡଗୋଳ ଦୃଶ୍ୟରେ ଦର୍ଶକମାନେ ଧରିପାରିବେ ନାହିଁ ଯେ ନିଆଁ ଲାଗିଥିବା ଲୋକଟି ସ୍ତ୍ରୀ ନୁହେଁ ପୁରୁଷ ।

କର୍ମୀମାନଙ୍କ ମଧ୍ୟରୁ ଜଣେ ହଠାତ୍ ଜଳନ୍ତା କାଠି ଜାଳି ପରିଚାଳକଙ୍କ ନିର୍ଦ୍ଦେଶ ଅନୁଯାୟୀ ଡିକ୍‌ଙ୍କ ପତଳା ଘାଘରାରେ ନିଆଁ ଲଗାଇ ଦେଲେ । ଗୋଟିଏ ସେକଣ୍ଡ ମଧ୍ୟରେ ହୁ ହୁ କରି ନିଆଁ ଜଳି ଉଠିଲା, ଅଗ୍ନି ଶିଖା କିଛିକ୍ଷଣ ବାହାରକୁ ଚାଲିଗଲା । ପୁଣି ସବୁକିଛି ଗୋଳମାଳ ହୋଇଗଲା ।

ଉପରେ ସମସ୍ତଙ୍କର ନିଶ୍ୱାସ ରୁଦ୍ଧ ହୋଇଯାଏ, ସେତେବେଳେ ଗ୍ରେସ୍ ଚିତ୍କାର କରି ଉଠନ୍ତି...ବଞ୍ଚାଅ ! ମୋତେ ବଞ୍ଚାଅ, ପୋଡ଼ିଯାଉଛି ।

ଭିଡ଼ ମଧ୍ୟରେ ଥିବା ଜଣେ ସନ୍ଦକାର୍ଯ୍ୟ ପଶୁଗୃହକ ବିଚଳିତ ନହୋଇ ଦୌଡ଼ି-ଯାଇ ନୃଲନ୍ତ ଗ୍ରେସଙ୍କ ଗୋଡରେ ଠେଲି ଭୂଇଁରେ ପକାଇଦିଅନ୍ତି, ତାପରେ ଚିତ୍କାର କରନ୍ତି-ଜମ୍ବୁଳା ଆଣ !

ପପର୍ଟି-ଡ୍ରୁମଣ୍ଡ ଶୀଘ୍ର କେତୋଟି କମ୍ବଳ ଆଣି, ତାହାର ସାହାଯ୍ୟରେ ଗ୍ରେସଙ୍କୁ ସେ ସ୍ଥାନରୁ ଉଦ୍ଧାର କରିଯାଏ ।

ଏନ୍ଥ୍ୟାରଣର ଅସଂଖ୍ୟ ଦୁର୍ଘଟଣା ମଧ୍ୟରେ ମୃତ୍ୟୁ ସମ୍ମୁଖ ଲଢ଼ାଇକର ଅଭିନୟ କରନ୍ତି ହଲିଉଡ୍‌ର ସର୍ବଶ୍ରେଷ୍ଠ ଷ୍ଟାଣ୍ଟ୍ ମ୍ୟାନ ଡିକ୍ ଗ୍ରେସ୍ । ତାଙ୍କର ଜୀବନ କାହାଣୀର କିଛି ଅଂଶ ନେଇ ପରବର୍ତ୍ତୀ କାଳରେ ଏକ ଛବି ତୋଳାଯାଏ । ଛବିଟିର ନାମ ଥିଲା 'ଲଷ୍ଟ ସ୍କ୍ୱାଡ୍ରନ୍', ହଲିଉଡ୍‌ର ଏକ ବିଖ୍ୟାତ ତାରକା ଏଥିରେ ଅଭିନୟ କରନ୍ତି 'ବ' ଡିକ୍ ଗ୍ରେସ୍ ସ୍ୱୟଂ ଅଭିନୟରୁ ସମ୍ପୂର୍ଣ୍ଣ ଭାବେ ଅବସର ନେବା ପୂର୍ବରୁ ଏହି ଛବିର ଷ୍ଟାଣ୍ଟ୍-ସିନ୍ ଗୁଡ଼ିକ କରନ୍ତି ।

ନାୟକ ମାନଙ୍କୁ ଯଦି ତାରକା କୁହାଯିବ, ତା'ହେଲେ ଅଜ୍ଞାତନାମା ଡିକ୍ ଗ୍ରେସ୍‌ଙ୍କୁ କହିବା ଉଚିତ ଧୂମକେତୁ ।



---

# ବାଂଗଲାଦେଶ ଚଳଚ୍ଚିତ୍ରର ଅଗ୍ରଗତି

ଦୁଃଖ ଶ୍ୟାମ ମହାପାତ୍ର



ବାଂଗଲା ଦେଶର ଲୋକପ୍ରିୟ ଅଭିନେତ୍ରୀ
ଜାବେଦା ଚୌଧୁରୀ

ଉତ୍‌ଥାନ ପତନର ସ୍ତରଦେଇ ଉନ୍ନତିର ଗତି । ଗୋଷ୍ଠୀ, ବ୍ୟକ୍ତି, ସମାଜ, କୃଷ୍ଟି ଏସମସ୍ତର ଅଗ୍ରଗତି ଏହି ଉତ୍‌ଥାନ ପତନର ମାଧ୍ୟମରେ । ବାଂଗଲା ଦେଶର ଚଳଚ୍ଚିତ୍ର ଇତିହାସ ଅନୁଧ୍ୟାନ କଲେ ଆଜିର ଅବସ୍ଥିତି ସେହି ମାଧ୍ୟମଦେଇ ଆସିଥିବାର ସ୍ପଷ୍ଟଭାବେ ମନେହୁଏ । ସର୍ବଭାଷ ଉଦାଙ୍କର ଭଳି, ସ୍ପୃହା, କାହାଣୀ ଓ ଶିଳ୍ପ ଆଧୁନିକତାକୁ ଗ୍ରାସ କରିଛି । ସୁତରାଂ ଗୋଟିଏ ଦେଶର ଶିଳ୍ପାଧାର, ସାମାଜିକତା ଓ କୃଷ୍ଟି ଅନ୍ୟଦେଶରେ ରୂପାନ୍ତରିତ ହେଉଛି । ସାର୍ବଜନୀନ ବାସ୍ତବତା ପ୍ରତିଫଳିତ ହେଉଛି ସ୍ପୃହା, ଭଙ୍ଗୀ ଓ ଶିଳ୍ପ ମାଧ୍ୟମରେ ।

ବାଂଗଲାଦେଶରେ ପ୍ରଥମ ଚଳଚ୍ଚିତ୍ର ପ୍ରତିଷ୍ଠାନ ଆରମ୍ଭ ହୁଏ ଢାକା ସହରରେ ୧୯୫୬ ମସିହାରେ । ଏ ଜେ କାରଦାରଙ୍କର "ଜାଗୋହୁଆ ସବେରା" (୧୯୫୮-୫୯) ସର୍ବପ୍ରଥମ ସମ୍ପୂର୍ଣ୍ଣ ଚଳଚ୍ଚିତ୍ର । ତାହା ପରଠାରୁ ସେକ୍ ମୁଜିବୁର ରହମାନଙ୍କର ଅହିଂସା ଓ ଅସହଯୋଗ ଆନ୍ଦୋଳନ ପର୍ଯ୍ୟନ୍ତ ପ୍ରାୟ ୨୨୫ଟି ଚଳଚ୍ଚିତ୍ର ନିର୍ମିତ ହୋଇଛି ବାଂଗଲାଦେଶରେ । ତନ୍ମଧ୍ୟରୁ ୧୬୫ଟି ଚଳଚ୍ଚିତ୍ର ବଂଗଳା ଭାଷାରେ ଓ ଅନ୍ୟଗୁଡ଼ିକ ଉର୍ଦ୍ଦୁରେ ତିଆରି । ସୁତରାଂ ୧୯୬୫ ପର୍ଯ୍ୟନ୍ତ ବର୍ଷକୁ ହାରାହାରି ୧୭ଟି କରି ଏବଂ ପରବର୍ତ୍ତୀରେ ୩୫ କରି ଚଳଚ୍ଚିତ୍ର ନିର୍ମାଣ କରିବା ଗୋଟିଏ ଚଳଚ୍ଚିତ୍ର ପ୍ରତିଷ୍ଠାନ ପକ୍ଷରେ ବାସ୍ତବିକ ବିସ୍ମୟକର ଏବଂ ପୃଥିବୀର ସର୍ବପ୍ରଥମ ନିର୍ମାଣହାର ବୋଲି ମନେ ହୁଏ ।

ନିର୍ମିତ ଚଳଚ୍ଚିତ୍ର ଗୁଡ଼ିକ ମଧ୍ୟରେ ଅନେକ କ୍ଷତି ସହିଛନ୍ତି ଓ ଅନେକ ମଧ୍ୟ ଆଶାତୀତ ଲାଭ ପାଇ ପାରିଛନ୍ତି । ଗୋଟିଏ ବଙ୍ଗଳା ଚଳଚ୍ଚିତ୍ର ପାଇଁ ସାଧାରଣତଃ

୨ ଲକ୍ଷ ଓ ଊର୍ଦ୍ଧ୍ୱ ଚଳଚିତ୍ର ପାଇଁ ୩ ଲକ୍ଷ ଟଙ୍କା ଖର୍ଚ୍ଚ ହୁଏ । ଅଳ୍ପ କେତେବର୍ଷ ହେଲା ଜିନିଷର ଦରଦାମ ବୃଦ୍ଧି ଯୋଗୁଁ ଚଳଚିତ୍ର ନିର୍ମାଣଖର୍ଚ୍ଚ ପ୍ରାୟ ଶତକଡ଼ା ୫୦ ଭାଗ ବଢ଼ିଯାଇଛି ।

ଅବଶ୍ୟ ଏ ଛିତରେ ବାଙ୍ଗଲାଦେଶରେ 'ଫିଲ୍ମ ଡେଭଲପ୍‌ମେଣ୍ଟ କର୍ପୋରେ-ସନ ବ୍ୟତୀତ ଅନ୍ୟ କେତୋଟି ଶ୍ରେଷ୍ଠ ଧରଣର ଚଳଚିତ୍ର ନିର୍ମାଣ ପ୍ରତିଷ୍ଠାନ ମୁଣ୍ଡ ଟେକିଛି । ଆଜି ବାଂଗଲା ଦେଶରେ ପ୍ରାୟ ୧୨୫ଟି ପ୍ରେକ୍ଷାଳୟ ଅବସ୍ଥିତ । ଗଣ ଆନ୍ଦୋଳନପରେ ଏହାର ସଂଖ୍ୟା ଅପରିହାର୍ଯ୍ୟଭାବରେ ବଢ଼ିଯିବାର ଆଶା କରାଯାଏ ।

ଅବଦୁଲ ଜବାରଖାଁଙ୍କର "ମୁଖ ଓ ମୁଖୋଶ" (୧୯୫୬) ବାଂଗଲା ଦେଶର ପ୍ରଥମ ଚଳଚିତ୍ର । ତା'ପରେ କାରଦାରଙ୍କ 'ଜାଗୋ ହୁଆ ସବେରା' ମସ୍କୋର ଶିଶୁ-ଚଳଚିତ୍ର ପ୍ରଦର୍ଶନୀରେ ଏହା ସ୍ୱର୍ଣ୍ଣ ପଦକ ଲାଭକରେ । ଶିଶୁ ଗଳ୍ପର ଅନୁପ୍ରେରଣାର ସଂଗ୍ରହକ ଥିଲା ଏହି ପୁରସ୍କାର । ଚଳଚିତ୍ର ଇତିହାସର ... ଟି ବର୍ଷ ମଧ୍ୟରେ ସତ୍ୟଜିତ ରାୟଙ୍କର "ପଥେର ପାଞ୍ଚାଳୀ" ଅନୁକରଣରେ ଏହା ନିର୍ମିତ ।

ଢାକାରେ ଚଳଚିତ୍ର ନିର୍ମାଣକରିବା ଅର୍ଥ ପଶ୍ଚିମ ପାକିସ୍ତାନର ଚଳଚିତ୍ର ବ୍ୟବସାୟୀଙ୍କୁ ଆଘାତଦେବା । ସରକାରଙ୍କର ଏହାଥିଲା ନୀତି ଏବଂ ଉର୍ଦ୍ଦୁଭାଷୀ ଲୋକଙ୍କ ପକ୍ଷରେ ଏହାଥିଲା ଗର୍ହିତ । ସମସ୍ତ ନିର୍ମାତା, ଅଭିନେତା, ଅଭିନେତ୍ରୀ, ନିର୍ମାଣ କୌଶଳର ଅଭାବଥିଲା, ତଥାପି ଅନୁଷ୍ଠାନଟିଏ ମୁଣ୍ଡଟେକି ଠିଆ ହୋଇପାରିଥିଲା ଗୋଟିଏ ଲକ୍ଷ୍ୟନେଇ । ଲକ୍ଷ୍ୟଟି ହେଲା "ପଥେର ପାଂଚାଲୀ" ପରି ଚଳଚିତ୍ରଟିଏ ନିର୍ମାଣ କରିବା ।

ନ ଜିର ଅହମ୍ମଦ ଏଥିରେ ମୁଖ୍ୟଭାଗନେଇ ଆଧୁନିକ ଯନ୍ତ୍ରପାତିଭରା ପ୍ରତି-ଷ୍ଠାନର ଦାୟିତ୍ୱ ନେଲେ । ଲଣ୍ଡନର ଖ୍ୟାତନାମା ଫଟୋଗ୍ରାଫର୍ ୱାଲଟର ଲାସଲେ ତାଙ୍କୁ ସାହାଯ୍ୟକଲେ । ଫଳତଃ ଲେହାନ ଓ ମହମ୍ମଦିନଙ୍କୁ କାଂଗ୍ରୀମାଲ, ଷ୍ଟୁଡ଼ିଓ ଓ ଅର୍ଥ ମଧ୍ୟ ସାହାଯ୍ୟମିଳିଲା । ଚେଷ୍ଟା କରାଗଲା "ପଥେର ପାଂଚାଲୀ" ଅନୁକରଣରେ "ଜାଗୋ ହୁଆ ସବେରା" ନିର୍ମାଣ କରିବା । ମାଣିକ ବନ୍ଦୋପାଧ୍ୟାୟଙ୍କର "ପଦ୍ମାନଦୀର ମାଝୀ" ଉପନ୍ୟାସର କାହାଣୀ ସହିତ "ଜାଗହୁଆ ସବେରା"ର କାହାଣୀ ଅବିକଳ ମିଶିଯାଏ । ପଦ୍ମାନଦୀର ଗୋଟିଏ ସାଧାରଣ ମତ୍ସ୍ୟଜୀବୀର ଜୀବନକାହାଣୀ ଏହାର ମୂଳକାହାଣୀ । ଦୁର୍ଭାଗ୍ୟବଶତଃ କାରଦାର୍ ଏହାର ଲେଖକ ବୋଲି ଦର୍ଶାନ୍ତି ତାଙ୍କର ବନ୍ଧୁ ଉର୍ଦ୍ଦୁକବି ଫଇଜ୍ ଅହମ୍ମଦଙ୍କୁ ଏବଂ ସେ ମଧ୍ୟ ବିନାଦ୍ୱିଧାରେ ଏହି ଅପ୍ରାପ୍ୟ ପ୍ରଶଂସା ଗ୍ରହଣ କରନ୍ତି । ପ୍ରକୃତ ରଚନାକୁ ଅନେକ ଜାଗାରେ ସେ ଓଲଟ ପାଲଟ କରିଦେଇ ଅବାସ୍ତବରେ ପରିଣତ କରିଛନ୍ତି କାରଣ ବଙ୍ଗଳାର ଗ୍ରାମ୍ୟଜୀବନ ଓ ମତ୍ସ୍ୟଜୀବୀଙ୍କ ଜୀବନପ୍ରଣାଳୀ ବିଷୟରେ ତାଙ୍କର ଧାରଣା ନଥିଲା ।

କାରଦାରଙ୍କ "କସମ୍ ଉସ୍ ଓ୍ୟାକ୍ତକ" ଚଳଚ୍ଚିତ୍ରରେ ଏତେ ତ୍ରୁଟି ଯେ ତାଙ୍କ-ଦ୍ୱାରା "ଜାଗୋ ହୁଆ ସବେରା" ନିର୍ମିତହୋଇଥିବା ମନେ ହୁଏନା । ତା ପରେ ଫତେ ଲୋହାନି ବିଭୂତିଭୂଷଣଙ୍କର ଉପନ୍ୟାସ 'ଆଶୀଷ' ର କାହାଣୀ ନେଇ ଚଳଚିତ୍ର ରଚନା କରନ୍ତି । ଏହାଦ୍ୱାରା ସେ ସତ୍ୟଜିତଙ୍କ ପ୍ରତି ଆନୁଗତ୍ୟ ସ୍ୱୀକାର କରନ୍ତି । 'ଆଶୀଷ' (୧୯୬୦) ର ଦୃଶ୍ୟ ଗୁଡିକ ଅତି ଲମ୍ବା ନଚେତ୍ ଅତି ଛୋଟ । ସଂଳାପ ଗୁଡ଼ିକ ମଧ୍ୟ ସେତିକି ଉପଯୋଗୀ ନୁହେଁ । ମାତ୍ର ତାଙ୍କର ଧୈର୍ଯ୍ୟ ଦୃଢ଼ମନବଳ ଓ ସାଧୁ ଉଦ୍ୟମହିଁ ସଫଳତାର କାରଣ ! ମହମ୍ମଦ୍ ଦିନଙ୍କର 'ମାଟିର ପାହାଡ', ସଲ୍ଲା-ଉଦ୍ଦିନଙ୍କର 'ସେ ନଦୀ ମରୁ ପଥେ', ଫତେଲୋହାନିଙ୍କର 'ଆକାଶ ଆର ମାଟି' ଗୁଡ଼ିକ ଯେ ଭଲ ସୁନାମ ଅର୍ଜନ କରିବାକୁ ଅକ୍ଷମ ହୋଇଛନ୍ତି, ଏହାର ଅବସ୍ଥା ମଧ୍ୟ ତଦନୁରୂପ ।

ସଫଳତାରେ ମିଶ୍ରିତ ପ୍ରମାଣ ଯୁବ ନିର୍ଦ୍ଦେଶକ, ନିର୍ମାତା, ଏବଂ ଅର୍ଥ ଖଟାଉଥିବା ଲୋକେ ବଂଚିରହିବାକୁ ବହୁ ସଂଗ୍ରାମ କରିଚନ୍ତି । ସ୍ଥିର କଲେ, ନୂତନ ନିର୍ଦ୍ଦେଶନା ନୂତନ ଦୃଷ୍ଟିଭଙ୍ଗୀ ମାଧ୍ୟମରେ ତ୍ରୁଟିଗୁଡ଼ିକୁ ଦୂର କରିବାକୁ । ସଲ୍ଲାଉଦ୍ଦିନ୍ 'ସୂର୍ଯ୍ୟସ୍ନାନ' ଚଳଚିତ୍ର ଆରମ୍ଭ କଲେ । ସେ ପ୍ରେମ ଓ ଗୋଷ୍ଠୀ ସଂଘର୍ଷମୂଳକ ଏହି ଚଳଚ୍ଚିତ୍ରଟିକୁ ଅନେକ ବାଧାସତ୍ତ୍ୱେ ନିର୍ମାଣ କରିପାରିଲେ । ତାପରେ ଅନେକ ପରୀକ୍ଷାମୂଳକ ଚେଷ୍ଟା ହେଲା । ଯାହିର ରୈହାନ ଜଣେ ଯୁବ ଔପନ୍ୟାସିକ 'କଖନ ଆସେନି' (୧୯୬୦) ଚଳଚ୍ଚିତ୍ରଟିକୁ ରୂପ ଦେଲେ । ପୃଷ୍ଠଭୂମି ସହରତଳୀର ଏକ ଦୃଶ୍ୟ । ଜଣେ କଳାକାରର ଜୀବନ ନେଇ ଏହା ଗଢ଼ା । କଳାକାର ମନେକରେ ତାର କଳାର ଆତ୍ମମୁଖ୍ୟ କଳାର ସୃଷ୍ଟି । ଏହି ଚଳଚ୍ଚିତ୍ରଟି ସେତେ ଭଲ ସୁନାମ ନନେଲେ ମଧ୍ୟ ଅନ୍ୟ ଚଳଚ୍ଚିତ୍ରଠାରୁ ପୃଥକତା ଏହାର ବୈଶିଷ୍ଟ୍ୟ ବୋଲି ମନେ ହୁଏ ।

ଅଳ୍ପବର୍ଷରେ ଏତେ ସଫଳତା ବାସ୍ତବରେ ବାଂଗଲା ଦେଶର ଚଳଚ୍ଚିତ୍ର ଶିଳ୍ପ ଉପରେ ଅନାସକ୍ତର କାସ୍ଥା ଓ ଶ୍ରଦ୍ଧା ବିସ୍ତାର କଲା । ପ୍ରଶଂସା, କଳା ଓ ସ୍ମୃତିର ସ୍ୱପ୍ନରେ ବିହ୍ୱଳ ହୋଇ ଯାହିରରୈହାନ୍, ସଲ୍ଲାଉଦ୍ଦିନ୍ ପ୍ରମୁଖ ନିର୍ଦ୍ଦେଶକମାନେ ଚନ୍ତାକଲେ ବିଖ୍ୟାତ ଚିତ୍ର ନିର୍ମାଣ ବିଷୟରେ । ଫଳରେ ୧୯୬୬ରେ ଯାହିର "କାଂଚେର ଦେଆଲ" ନିର୍ମାଣ କଲେ । ଏବେ ମଧ୍ୟ ଚଳଚିତ୍ରଟି ଓ ଯାହିରଙ୍କର ସୁଖ୍ୟାତି ତାହାପାଇଁ ରହିଛି । ସମଗ୍ର ପାକିସ୍ଥାନରେ ଶ୍ରେଷ୍ଠ ନିର୍ଦ୍ଦେଶକ ଭାବରେ ଯାହିର ପରିଚିତ ହେଲେ । ଦର୍ଶକଙ୍କର ଗୃହିଦା ଆଖିରେ ରଖି ଏବଂ କଳାକୁ ଶ୍ରେଷ୍ଠ ସ୍ଥାନଦେଇ ଯାହିର୍ ଲେଖିଲେ ଏହାର କାହାଣୀ ।

କାହାଣୀଟି ଅନୂଢ଼ା ଏକ ବାଳିକାର ଜୀବନ ନେଇ । ପିତୃମାତୃହୀନା ଏହି ବାଳିକାଟି ପିଲାଦିନୁ ମାମୁଁଘରେ ବଢ଼େ । କେହି ତାହାପ୍ରତି ସହାନୁଭୂତିଶୀଳ

ଲୁହନ୍ତି । ଜୀବନର ଦୁଃଖ ମଧ୍ୟରେ ହଠାତ୍ ଜଣାପଡ଼େ ସେ ଏକ ବିରାଟ ସଂପତ୍ତିର ଉତ୍ତରାଧିକାରିଣୀ । କ୍ଷୁଦ୍ରକ ପରି ଆସେ ସାବଲୀଳ ଜୀବନରେ ପରିବର୍ତ୍ତନ । ଆଦର, ସୋହାଗ, ସାନ୍ନିଧ୍ୟ ତାକୁ ଅଜାଡ଼ି ହୋଇପଡ଼େ । ପାଦ ଦେବାକୁ ସ୍ଥାନ ପାଇଲା ପରେ ମାମୁଁ ଘର ସଙ୍କୀର୍ଣ୍ଣ ସଂସାରରେ ସେ ରହିବାକୁ ଚାହେନା ।

ସମୁଦାୟ ଚିତ୍ରଟି ତିନୋଟି କୋଠରୀରେ ସୁଟିଂ ହୁଏ । ସ୍ୱଳ୍ପ ଆଲୋକରେ ଆଧୁନିକ କ୍ୟାମେରାରେ ଅସାଧାରଣ କୋଣ ଗୁଡ଼ିକରୁ ଫଟୋଗ୍ରାଫି, ଅଭିନେତାଙ୍କଠାରୁ ନିଆହୁଏ ଦର୍ଶକଙ୍କ ମନରେ ସଙ୍କୀର୍ଣ୍ଣ ଦରିଦ୍ର ପରିବାରର ସୀମିତ ଜୀବନର ନଗ୍ନ ବାସ୍ତବତାକୁ ରୂପ ଦେବାକୁ ।

ଏଥିରେ ମୁଖ୍ୟକଳାକାରଙ୍କ ପ୍ରେମ ଅଭିନୟଗୁଡ଼ିକ ବାଧ୍ୟମୂଳକ ପରି ମନେହେଲେ ମଧ୍ୟ ଅକୃତ୍ରିମ ପରିବେଶର ପରିଛାପ ରଖିଯାଏ ଦର୍ଶକ ମନରେ । ଯାହାର ଏଥିରେ ଅଧିକ ଅଙ୍ଗସଜ୍ଜା ଓ ଦୁଇଟି ମାତ୍ର ସୁନ୍ଦର ସଂଗୀତ ଦଅନ୍ତି । ପ୍ରଥମ କେତେବର୍ଷ ଭଲ ନଚଳିଲେ ମଧ୍ୟ ୧୯୭୦ ପରଠାରୁ ଏହା ଅଧିକରୁ ଅଧିକ ଦର୍ଶକଙ୍କୁ ଆକୃଷ୍ଟ କରିପାରିଛି ଏବଂ ପ୍ରେକ୍ଷାଳୟ ଗୁଡ଼ିକ ଜନଗହଳି ହୋଇ ଉଠିଛି ।

ତାପରେ ଯାହାଙ୍କର 'ଜୀବନ ଥେକେ ନେୟା'' (୧୯୭୦)ରେ 'କାଂଚେର ଦେଓାଲ' ପରି ଭଲ ଅଙ୍ଗସଜ୍ଜା ଓ ଅନ୍ୟାନ୍ୟ ସୁନ୍ଦର ଭାବରେ ଫୁଟି ଉଠିଛି । କାରଣ ଆନ୍ତର୍ଜାତୀୟ ଅଙ୍ଗସଜ୍ଜା ଓ ଅଭିଲ ମୁଖର୍ଜୀ ବାଂଗଲା ଦେଶବାସୀଙ୍କର ଅଧିକ ଆଗ୍ରହ । ୧୯୫୨ ମସିହାରେ ଭାଷାସମସ୍ୟାର ରାଜନୀତି ଏଥିରେ ଅବତାରଣା କରାଯାଇଛି । ତାଛଡ଼ା ଫୁଟିଉଠିଛି ସଂଗୀତରେ ଦେଶାତ୍ମବୋଧକତାର ଅଗ୍ନିମୟୀ ଦୀପ୍ତି । ଏହି ସଂଗୀତ ଗୁଡ଼ିକ ତାଙ୍କ ସରକାର ଏବେ ମଧ୍ୟ ବ୍ୟାନ୍ କରିଛନ୍ତି ।

ଚଳଚ୍ଚିତ୍ରରେ ଦୃଶ୍ୟଗୁଡ଼ିକ ଥିଏଟର ମଣ୍ଡପ ଭଳି ମନେ ହେଲେ ସୁଦ୍ଧା ଜାତୀୟତାର ପ୍ରେରଣା ଉତ୍ସ, ଆୟୁବ ଖାଁଙ୍କର ଦମନ ଲୀଳାର ପରିରୂପ, ବାସ୍ତବରେ ଲୋକଙ୍କୁ ଆକୃଷ୍ଟ କରି ପାରିଛି ଏବଂ ଏହାହିଁ ହେଲା ସଫଳତାର କାରଣ । ଏବଂ ଜାତୀୟଜୀବନର ପୃଷ୍ଠଭୂମିରେ ଚଳଚ୍ଚିତ୍ର ଅବଗତ ଏହା ବାଂଗଲା ଦେଶର ଏକ ବଳିଷ୍ଠ ଅଭିଯାନ ।

ସେହିଭଳି ଅନ୍ୟ ଭଲ ଚଳଚ୍ଚିତ୍ର ମଧ୍ୟରୁ ସଲାହୁଦ୍ଦିନଙ୍କର 'ଧାରା ପାତ' (୧୯୬୩) ସୁଭାଷଦତ୍ତଙ୍କର 'ଶତରଙ୍ଗ' (୧୯୬୪) ଏବଂ 'ଆଇନା' (୧୯୬୭), ସୁଦେଶଖାଁଙ୍କର "ନଦୀ ଓ ନାରୀ" (୧୯୬୬), ବେହରାଇସଲାମଙ୍କର "କ,ଖ,ଗ,ଘ,ଙ" (୧୯୭୦) ଏବଂ ରେବେକାଙ୍କର "ବନ୍ଦୁ ଥେକେ ବୃତ୍ତ" (୧୯୭୦) ପ୍ରଧାନ । ଏ ସବୁଥିରେ ସଂଳାପ ଓ କୌଶଳର ଅଭାବ ଥିଲେ ମଧ୍ୟ ଭବିଷ୍ୟତ ଯେ ଏହାର ଉଜ୍ଜ୍ୱଳ ମଧୁମୟ ଏଥିରେ ସନ୍ଦେହ ନାହିଁ ।

———






## ଶ୍ରୀଯୁକ୍ତ କୃଷ୍ଣଚନ୍ଦ୍ର ତ୍ରିପାଠୀ ଶର୍ମା

ଓଡ଼ିଆ ଚଳଚ୍ଚିତ୍ର ଜଗତରେ 'ଉତ୍କଳ ଚଳଚ୍ଚିତ୍ର ପ୍ରତିଷ୍ଠାନ' ଏକ ପୁରୁଣା ସଂସ୍ଥା । ଉତ୍କଳ ଚଳଚ୍ଚିତ୍ର ପ୍ରତିଷ୍ଠାନ ଅନୁକୂଲ୍ୟରେ ମହାଲକ୍ଷ୍ମୀ ପୂଜା, କଂସ (ଡ଼ବିଂ), ପରିଣାମ, ଦସ୍ୟୁରତ୍ନାକର, ନାଗପୂଜା (ଡ଼ବିଂ), ଜୟ ଜଗନ୍ନାଥ ଚିତ୍ର ନିର୍ମିତ ହୋଇଛି । ଏହି ସଂସ୍ଥାରେ ୧୧ଜଣ ଡ଼ାଇରେକ୍ଟର ଏବଂ ଶ୍ରୀ ଶର୍ମା ମ୍ୟାନେଜିଂ ଡ଼ାଇରେକ୍ଟର ଅଛନ୍ତି । ଶ୍ରୀ ଶର୍ମା ଜଣେ ବିଶିଷ୍ଟ ଆୟୁର୍ବେଦିକ ଚିକିତ୍ସକ । ସଂପ୍ରତି ସେ ଓଡ଼ିଶା ଆସେମ୍ବ୍ଲିର ସଦସ୍ୟ । ଅବସ୍ଥାନ ଆସ୍କା ।

●



## ଶ୍ରୀ ଧୀରେନ୍ଦ୍ର ନାଥ ବିଶ୍ୱାଳ

ତାଙ୍କୁ ଅନେକ ଜାଣିଥିବେ ହାସ୍ୟରସ ଅଭିନେତା ଭାବେ, କେତେକ ଜାଣିଥିବେ ଆଇନଜୀବୀ ଭାବେ ଆଉ କେତେକ ଜାଣିଛନ୍ତି ପ୍ରଯୋଜକ ଓ ସଙ୍ଗଠକ ରୂପରେ । ପଞ୍ଚସଖା ପିକଚର୍ସର ସେ ମୁଖ୍ୟ କର୍ଣ୍ଣଧାର । ଇଚ୍ଛା ହେଲେ ଦେଲେବେଲେ ଧନିଆ ଚିତ୍ର କରିବା ପାଇଁ ଚେଷ୍ଟା କରନ୍ତି । କିନ୍ତୁ ବର୍ତ୍ତମାନ ସକ୍ରିୟ ରଙ୍ଗମଞ୍ଚଠାରୁ ଦୂରରେ ଅଛନ୍ତି । ସେ ଓଡ଼ିଆ ଚଳଚ୍ଚିତ୍ର ପତ୍ରିକା ମଧ୍ୟ ଏକଦା ପ୍ରକାଶ କରିଥିଲେ । ବର୍ତ୍ତମାନ ଓଡ଼ିଶା ମୋସନ ପିକ୍‌ଚର୍ସ ଆସୋସିଏସନର ସେକ୍ରେଟେରୀ । ଅବସ୍ଥାନ ଭଗତପୁର, କଟକ ।

●



## ରାମକୃଷ୍ଣ ତ୍ରିପାଠୀ

'ପଞ୍ଚସଖା ପିକଚରସ୍'ର ସତ୍ତ୍ୱପତି ଶ୍ରୀ ରାମକୃଷ୍ଣ ତ୍ରିପାଠୀ । ଓଡ଼ିଶାର ଏକ ଶୀର୍ଷସ୍ଥ କାଚ ବ୍ୟବସାୟ ସଂସ୍ଥା ଗ୍ଲାସ-ହାଉସର ସେ ସର୍ବୋଚ୍ଚ କର୍ତ୍ତା । ଅବସ୍ଥାନ ମଣିସାହୁ ଛକ, କଟକ ।



## ଶ୍ରୀ ବାବୁଲାଲ ଦୋଷୀ

'ଗ୍ରୁପ୍ତାବାଣୀ ପ୍ରତିଷ୍ଠାନ' ଚଳଚ୍ଚିତ୍ର ଜଗତରେ ଏକ ଜଣାଶୁଣା ନାମ । ଅମଡ଼ାବାଟ, ଅଭିନେତ୍ରୀ, ମାଟିର ମଣିଷ, ଅଶ୍ୱମେଧ ୪ଟି ଉଚ୍ଚକୋଟିର ଚିତ୍ର ନିର୍ମାଣ କରି ସେ ସମସ୍ତଙ୍କର ଦୃଷ୍ଟି ଆକର୍ଷଣ କରିପାରିଛନ୍ତି । ମାଟିର ମଣିଷ ଆନ୍ତର୍ଜାତିକ କ୍ଷେତ୍ରରେ ସୁନାମ ଅର୍ଜନ କରିଛି । ଓଡ଼ିଆର ନାଟ୍ୟକଳା କ୍ଷେତ୍ରରେ କଳାବିକାଶ କେନ୍ଦ୍ରର ଭୂମିକା ଯେଉଁମାନେ ଜାଣିଥିବେ ସେମାନେ ଶ୍ରୀ ବାବୁଲାଲ ଦୋଷୀଙ୍କର ଅବଦାନ ଭୁଲି ପାରିବେ ନାହିଁ । ଓଡ଼ିଶାର କଳାସଂସ୍କୃତି ପ୍ରତି ତାଙ୍କର ଅବଦାନ ଉଲ୍ଲେଖଯୋଗ୍ୟ । ଅବସ୍ଥାନ ଓଡ଼ିଆ ବଜାର, କଟକ ।

## ଗୌରପ୍ରସାଦ ଓ ପାର୍ବତୀ ଘୋଷ

ଗୌରପ୍ରସାଦଙ୍କ ନିଜ ସଂସ୍ଥା ନାମରେ ମାଁ ଓ ଲକ୍ଷ୍ମୀ ନିର୍ମିତ । ମାତ୍ର ତା ପରେ ପରେ ନିଜର ଅଭିନେତ୍ରୀ ପତ୍ନୀ ପାର୍ବତୀ ଘୋଷଙ୍କ ନାମରେ କା, ସ୍ତ୍ରୀ, ସଂସାର ତିଆରି କରାଯାଇଛି । ଏକାଦିକ୍ରମେ ୫ଟି ଚିତ୍ର ନିର୍ମାଣ କରିବା ଓଡ଼ିଆ ଚିତ୍ର ଜଗତରେ ନିଶ୍ଚୟ ଅଭିନନ୍ଦନୀୟ । ଫକୀରମୋହନ ସେନାପତିଙ୍କର 'ଛ'ମାଣ ଆଠଗୁଣ୍ଠ' ନିର୍ମାଣ କରିବା ପାଇଁ ବମ୍ବେ ଫିଲ୍ମ ଫାଇନାନ୍ସ କର୍ପୋରେସନରୁ ଋଣ ପାଇବା ପାଇଁ ସଚେଷ୍ଟିତ ହୋଇଛନ୍ତି ।





## ଶ୍ରୀଯୁକ୍ତ ଶ୍ରୀନିବାସ ପାଇକରାୟ

ଦେବାଶୀଷ ପିକଚର୍ସର ଜନ୍ମଦାତା ଶ୍ରୀନିବାସ ପାଇକରାୟଙ୍କର ଜୀବନସାଥୀ ଏକ ସୁ ପ୍ରଯୋଜିତ ଓଡ଼ିଆ ଚିତ୍ର । ସେ ମଧ୍ୟ ପଞ୍ଚସଖା ପିକଚର୍ସର ଅନ୍ୟତମ ଧିଶା । ସେ ଜଣେ ଅଭିନେତା, କଳା-ପ୍ରେମୀ ତଥା ଶିଳ୍ପପତି । ଅବସ୍ଥାନ: ନାରଣଗଡ଼, କେଓଁଝର ।



## ଶ୍ରୀ ଗୋକୁଳଚନ୍ଦ୍ର କାନ୍‌ନଗୋ

ଶ୍ରୀ ଗୋକୁଳ କାନୁନ୍‌ଗୋ କେବଳ ପ୍ରଯୋଜକ ଭାବରେ ନୁହେଁ ପ୍ରେକ୍ଷାଳୟର ପ୍ରଦର୍ଶକ ରୂପେ ଓଡ଼ିଶାରେ ସୁପରିଚିତ । କଟକର ପାଟଣା, କେନ୍ଦ୍ରାପଡ଼ା, ଆନନ୍ଦପୁର, ସାଲେପୁର ସୁରଜ ସିନେମା ସହିତ ସେ ବ୍ୟବସାୟ ସୂତ୍ରରେ ଜଡ଼ିତ । ରୂପରାଗ ପ୍ରାଇଭେଟ୍ ଲିମିଟେଡ୍ ଏକ ଚଳଚ୍ଚିତ୍ର ସଂସ୍ଥା ଗଠନ କରି ୧୯୭୦ରେ ଶ୍ରୀଲୋକନାଥ ଚିତ୍ର ନିର୍ମାଣ କରିଥିଲେ । ତାହା ପ୍ରଥମଥର ପାଇଁ ସର୍ବଭାରତୀୟ ସ୍ତରରେ ରାଷ୍ଟ୍ରପତି ପୁରସ୍କାର ପାଇଲା । ସେ ଅନ୍ୟାନ୍ୟ ବ୍ୟବସାୟ ସଂସ୍ଥା ସହିତ ସଂଯୁକ୍ତ । ଅବସ୍ଥାନ : ସାଆନ୍ତ ସାହି, କଟକ ।

●



## ଶ୍ରୀ ଚିନ୍ମୟ ପଟ୍ଟନାୟକ

'ଭାଇ ଭଉଜ' ଚିତ୍ର ନିର୍ମାଣ ପାଇଁ ରୂପାଞ୍ଜଳୀ ସଂସ୍ଥାକୁ ରୂପ ଦେଲେ । ଭାଇଭଉଜ ଏକ ସଫଳ ଚିତ୍ର । ସେ ବିଶିଷ୍ଟ ପଟ୍ଟନାୟକ ପରିବାରର ଜ୍ୟେଷ୍ଠ ଭ୍ରାତା ସ୍ୱର୍ଗତଃ ରାମକୃଷ୍ଣ ପଟ୍ଟନାୟକ ।ଆଇ.ପି.ଏସ.ଙ୍କର ୪ମ ପୁତ୍ର । ଚଳଚ୍ଚିତ୍ର ପରିବେଷକ ସଂସ୍ଥା ଦାସ ଏଣ୍ଡ କୋ ମଧ୍ୟ ତାଙ୍କର ପରିଚାଳନାରେ ଅବସ୍ଥାପିତ । ସେ ଅନ୍ୟାନ୍ୟ ବ୍ୟବସାୟ ସହିତ ମଧ୍ୟ ସଂପୃକ୍ତ ଅବସ୍ଥାନ ଝୋଲିଆ ସାହି, କଟକ ।

●

## ଶ୍ରୀ ନିରଞ୍ଜନ ପଟ୍ଟନାୟକ



ରାଜଶ୍ରୀ ଫିଲମ୍ସର ମୁଖ୍ୟ ବ୍ୟବସ୍ଥାପକ ରୂପେ ସେ ପରିଚିତ । ତାଙ୍କର ପ୍ରଥମ ଚିତ୍ର 'ବଂଧନ । ଆକାଶବାଣୀରେ ଚାକିରି କରିଥିବା ହେତୁ ସେ ନିଜ ପତ୍ନୀ ଶ୍ରୀମତୀ ସ୍ୱର୍ଣ୍ଣ ପଟ୍ଟନାୟକଙ୍କ ନାମରେ



ବଂଧନ ଚିତ୍ର ନିର୍ମାଣ କରିଥିଲେ । କାଳନ୍ଦୀଚରଣ ପାଣିଗ୍ରାହୀଙ୍କର 'ମାଂସର ଗୋଲାପ' ଗଳ୍ପକୁ ଚଳଚ୍ଚିତ୍ର ରୂପ ଦେଉଛନ୍ତି ଶ୍ରୀ ପଟ୍ଟନାୟକ । ତାହା ଖୁବ୍ ଶୀଘ୍ର ଆରମ୍ଭ ହେବ ।



## ଶ୍ରୀ ଧୀରେନ ପଟ୍ଟନାୟକ

କନକପ୍ରଭା ପ୍ରଡ଼କସନ୍ର ପ୍ରଥମ ଚିତ୍ର ଅରୁନ୍ଧତୀ । ପ୍ରଯୋଜକ ଶ୍ରୀ ଧୀରେନ ପଟ୍ଟନାୟକ ରାଜନୀତି ବିଜ୍ଞାନରେ ଏମ.ଏ ପାସ କରି ଚଳଚ୍ଚିତ୍ର ନିର୍ମାଣରେ ମନ ଦେଲେ । ଅରୁନ୍ଧତୀରେ ପ୍ରଥମଥର ପାଇଁ ବମ୍ବେର ବିଶିଷ୍ଟ କଣ୍ଠଶିଳ୍ପୀମାନେ କଣ୍ଠଦାନ କରିଥିଲେ । ଶ୍ରୀ ପଟ୍ଟନାୟକ ବର୍ତ୍ତମାନ ଭୁବନେଶ୍ୱରରେ ଅବସ୍ଥାନ କରୁଛନ୍ତି ।





## ଶ୍ରୀ ସୁକୁମାର ଗାଂଗୁଲି

ମାତ୍ର ଅତି ଅଳ୍ପ ଟଙ୍କାରେ/ କିପରି ଚଳଚିତ୍ର ନିର୍ମାଣ ହୋଇପାରେ ଶ୍ରୀଶ୍ରୀ ପତିତପାବନ ତା'ର ଜ୍ୱଳନ୍ତ ନିଦର୍ଶନ । ପ୍ରଯୋଜକ ଶ୍ରୀ ଗାଙ୍ଗୁଲି ଜଣେ ଫଟୋଗ୍ରାଫର । ସୁନ୍ଦର ଜୀବନ୍ତ ଦୃଶ୍ୟନେଇ ସେ ଶ୍ରୀଶ୍ରୀ ପତିତପାବନ ନିର୍ମାଣ କରିଥିଲେ । ତାଙ୍କର ଆଗାମୀ ଚିତ୍ର 'ଢେଉ' ନିର୍ମାଣପଥେ ।

●

## ଉମା ବାନାର୍ଜୀ



ଆଜି ଓଡ଼ିଆ ଚିତ୍ରରେ ଉମା ବାନାର୍ଜୀ ଅଭିନୟ କରିଥିଲେ ଦର୍ଶକ ବିଶ୍ୱାସ ହୁଏତ କରିବେ ନାହିଁ । କିନ୍ତୁ ସେ ଓଡ଼ିଆ ଚିତ୍ର ଲଳିତାର ନାୟିକା ଭୂମିକାରେ ଅଭିନୟ କରିଥିଲେ । ସେ ଚିତ୍ରର ନାୟକ ଥିଲେ ବର୍ତ୍ତମାନର ରାଜ୍ୟସଭା ସଦସ୍ୟ

ଶ୍ରୀ ଲୋକନାଥ ମିଶ୍ର । ଶ୍ରୀ ଜ୍ୟୋତିଷଚନ୍ଦ୍ର ଚକ୍ରବର୍ତ୍ତୀଙ୍କର କନ୍ୟା ଉମା ଦେବୀଙ୍କ ବିବାହ ୧୯୩୪ ବର୍ଷରେ ଶ୍ରୀ ମାଖନଲାଲ ବାନାର୍ଜୀଙ୍କ ସହ ହୋଇଗଲା । କୌତୂହଳର ବିଷୟ ମାଖନଲାଲ ପ୍ରଥମ ଓଡ଼ିଆ ଚିତ୍ରର ନାୟକ ।

ଉମା ଦେବୀ ୧୯୧୬ ଦୁର୍ଗାଷ୍ଟମୀରେ ଜନ୍ମଲାଭ କରିଥିଲେ । ଲଳିତାରେ ଅଭିନୟ କରିବା ପୂର୍ବରୁ ସେ କେତେଗୋଟି ନାଟକରେ ଅବଶ୍ୟ ଅଭିନୟ କରିଥିଲେ । ୧୯୪୫ ଠାରୁ ୧୯୬୧ ପର୍ଯ୍ୟନ୍ତ କଲିକତାର ଷ୍ଟାର ଥିଏଟରରେ ସେ ମାସିକ ସୁବିଶାଳ ଟଙ୍କା ବେତନରେ କାମ କରୁଥିଲେ । ସେ ସମସ୍ତ ମଧ୍ୟରେ ବହୁ ଲୋକପ୍ରିୟ ନାଟକରେ ଅଭିନୟ କରି ସେସମସ୍ତଙ୍କର ଦୃଷ୍ଟି ଆକର୍ଷଣ କରିଥିଲେ । ଲଳିତା ଚିତ୍ର ପାଇଁ ସେ ଆଠହଜାର ଟଙ୍କା ସେସମୟରେ ପାରିଶ୍ରମିକ ପାଇଥିଲେ । ସେ ପ୍ରାୟ ୩୦ଟି ବଙ୍ଗଳାଚିତ୍ର ଏବଂ ପାଞ୍ଚଟି ହିନ୍ଦୀ ଚିତ୍ରରେ ଅଭିନୟ କରିଛନ୍ତି । 'କମଳା'ରେ ଉତ୍ତମକୁମାରଙ୍କ ସହ, 'ଦେବୀଚୌଧୁରାଣୀ'ରେ ପ୍ରଦୀପକୁମାରଙ୍କ ସହ ଅଭିନୟ କରିଛନ୍ତି । ଅନ୍ୟାନ୍ୟ ଚିତ୍ର ମଧ୍ୟରେ ସ୍ୱୟଂସିଦ୍ଧା (୧୯୪୭), କୁରୁକ୍ଷେତ୍ର ମୁକ୍ତିର ବନ୍ଧନ, [illegible] ପ୍ରମୁଖ କେତୋଟି ।

ସମ୍ପ୍ରତି ସେ କଟକରେ ତାଙ୍କ ପୁଅ ସହିତ ଅଲିଶା ବଜାରରେ ଅବସ୍ଥାନ କରୁଛନ୍ତି

## ସୁମନ୍ତ ଦେବୀ

ଅଭିନେତ୍ରୀ ସୁମନ୍ତା ଦେବୀଙ୍କ କଣ୍ଠ ଅନେକ ଆକାଶବାଣୀ କଟକରୁ ଶୁଣିଥିବେ । ସେ ପ୍ରଥମେ କାଳୀ ପଟ୍ଟନାୟକଙ୍କର ଓଡ଼ିଶା ଥିଏଟରସ୍‌ରେ ଅଭିନୟ ଆରମ୍ଭ କଲେ । ୧୯୪୦ଠାରୁ ୧୯୫୦ ପର୍ଯ୍ୟନ୍ତ ସେ ଅଭିନୟ କରୁଥିଲେ । ସେ ଓଡ଼ିଆ ଚିତ୍ର 'ଲଳିତା'ରେ ମାଆ ଭୂମିକାରେ ଅଭିନୟ କରିଥିଲେ ଏବଂ ଗୀତ ମଧ୍ୟ ଗାଇଥିଲେ । ସେ ଏକାଧାରରେ କଣ୍ଠଶିଳ୍ପୀ, ଅଭିନେତ୍ରୀ, ନର୍ତ୍ତକୀ ମଧ୍ୟ ।

ସମ୍ପ୍ରତି ସେ ଖୋର୍ଦ୍ଧା ହେଡ଼ରେ ସଙ୍ଗୀତ ଶିକ୍ଷୟିତ୍ରୀ ଅଛନ୍ତି ।

## ଅଭିନେତ୍ରୀ ଝର୍ଣ୍ଣା ଦାସ



ମନରେ ମୋର ଅନେକ ସ୍ୱପ୍ନ ଆଜି ବାସ୍ତବ ରୂପ ନେଇଛି । ମୁଁ ଆଜି ଚଳଚ୍ଚିତ୍ର ନାୟିକା ! କିନ୍ତୁ କି ଅଦ୍ଭୁତ, ନିର୍ଦ୍ଦେଶକ ବତାଇ ଦେଇ କହୁଛନ୍ତି ଆଖିରେ କଜଳ ଲଗାଇବାକୁ ହେବ ନାହିଁ, ଓଠରେ ଲିପଷ୍ଟିକ ବାରଣ, ଏ କେମିତି କଥା । ବିନା ମେକଅପ୍‌ରେ ମୁଁ କ ଦିଶିବିନ୍ ? ତା'ଛଡ଼ା ମୁଁ ଆଖିରେ କଜଳ ନଲଗାଇଲେ ମୋ ଭାବ ପ୍ରକାଶ କରି ପାରିବି ନାହିଁ ।

ଅସମ୍ଭବ ଜିଦ୍‌ଖୋର ଝିଅ ଏ ଝରଣା ! ନିତାଇ ଦା ବୋଧହୁଏ ମନେ ମନେ ଭାବୁଥିଲେ । ତଥାପି ଧୀରଷ୍ଟିର ମନରେ ସେ ଆଉଟଡୋର ସୁଟିଂ ହେଉଥିବା ଗାଁର ସବୁ ଝିଅ ବୋହୂଙ୍କ ଘରକୁ ନେଇ ମୋତେ ବୁଲାଇ ଦେଖାଇଲେ ! ସତେ ତ ! ତାହାର ଆଖିରେ କଜଳ ଗାର ନାହିଁ । ମୋର ବିଶ୍ୱାସ ହେଲା । ମୁଁ କଲେଜର ନାମ୍ୟମସ୍ତ ଛନ୍ଦ ଚପଳା ଛାତ୍ରୀ ନୁହେଁ ଏକ ଅଖ୍ୟାତ ଗ୍ରାମ୍ୟ ଝିଅ ସତେ । ଦେହରେ ସାଧାରଣ ଏକ ମୋଟା ଶାଢ଼ୀ, ଗାଉଁଲି ଅଳଙ୍କାର ଏହା ଥିଲା ମାଲଜହ୍ନ ଚଳଚ୍ଚିତ୍ର ଗୋଟିଏ ଦୃଶ୍ୟ ।

ଅଭିନେତ୍ରୀ ଥିଲେ ଝରଣା ଦାସ ..
ନିର୍ଦ୍ଦେଶକ ନିତାଇ ପାଲିତ···

ଝରଣା ଦାସ ୧୯୪୬ ସାଲରେ କଲିକତାରେ ଜନ୍ମଗ୍ରହଣ କରିଥିଲେ । ପିଲାଦିନେ ସେ ନୃତ୍ୟଗୁରୁ ଦେବପ୍ରସାଦ ଦାସଙ୍କ ନିକଟରେ କଥକ ନୃତ୍ୟ ଶିକ୍ଷା କରୁଥିଲେ । ମାତ୍ର ଗୁରୁ ଦେବପ୍ରସାଦ ଇନ୍ଦ୍ରାଣୀ ରହମନଙ୍କୁ ନୃତ୍ୟଶିକ୍ଷା ଦେବାପାଇଁ ଚାଲିଯିବା ଫଳରେ ତାଙ୍କର ନୃତ୍ୟଶିକ୍ଷାରେ ଡୋର ବନ୍ଧା ହେଲା । ତଥାପି କଲେଜ ଜୀବନରେ ସେ ଯୁବମହୋତ୍ସବରେ ଧର୍ମ୍ମ ଘର ଓଡ଼ିଶୀ ଓ ଲୋକନୃତ୍ୟରେ ଓଡ଼ିଶାର ପ୍ରତିନିଧିତ୍ୱ କରିଥିଲେ । ଅନ୍ତଃକଲେଜ ଯୁବମହୋତ୍ସବରେ ପ୍ରଥମସ୍ଥାନ ଅଧିକାର କରିଥିଲେ ମଧ୍ୟ ।

ଝରଣା ଯେ ନାଟକରେ ଅଭିନୟ କରିପାରିବ ! ଏକଥା କାହାର ମନକୁ ଆସି ନଥିଲା । ଆକାଶବାଣୀର ଶିଶୁସଂସାର କାର୍ଯ୍ୟକ୍ରମରେ ମୁକ୍ତାକାଶ ରଙ୍ଗମଞ୍ଚରେ ସେ ଫକୀରମୋହନ ସେନାପତିଙ୍କର 'ରେବତୀ' ଗଳ୍ପରେ ରେବତୀ ମା ଭୂମିକାରେ ପ୍ରଥମ ଅଭିନୟ କରିଥିଲେ । ତାଙ୍କର ଅଭିନୟ କ୍ଷେତ୍ରରେ ଆବିର୍ଭାବ ପାଇଁ ଅଭିନେତା ଅକ୍ଷୟ ମହାନ୍ତିଙ୍କର ପ୍ରେରଣା ଉଲ୍ଲେଖଯୋଗ୍ୟ । ତାଙ୍କରି ଉଦ୍ୟମ ଓ ପ୍ରେରଣାରେ ସେ ଚଳଚ୍ଚିତ୍ର ଜଗତରେ ପାଦଦେଲେ । ସୃଜନୀ ସଂସ୍ଥାର ନାଟକ ବନହଂସୀରେ ସେ ମୁଖ୍ୟ ନାୟିକା ଭୂମିକାରେ ଅଭିନୟ କରି ଦର୍ଶକଙ୍କର ଦୃଷ୍ଟି ଆକର୍ଷଣ କରି ପାରିଥିଲେ ।

ତାଙ୍କ ମତରେ ଓଡ଼ିଆ ଚିତ୍ରର ନିର୍ଦ୍ଦେଶକ ଓଡ଼ିଆ ହେବା ଉଚିତ । ମାତ୍ର ପ୍ରାୟ ଦେଶୀ ଭାଗ ଓଡ଼ିଆ ଚିତ୍ରର ନିର୍ଦ୍ଦେଶକ ବଙ୍ଗାଳୀ । ସେମାନେ ଓଡ଼ିଆ ଝିଅ ବୋହୂଙ୍କର ଚାଲିଚଳନ ସମ୍ବନ୍ଧରେ ସଂପୂର୍ଣ୍ଣ ଅଜ୍ଞ ବା ସଚେତନ ନୁହନ୍ତି । ଅନେକ ଚିତ୍ରରେ ପ୍ରସାଧନ, ପୋଷାକପତ୍ରର ଅସାମଞ୍ଜସ୍ୟତା ପାଇଁ ନିର୍ଦ୍ଦେଶକମାନେ ଦାୟୀ ।

ସେ ମାଲଜହ୍ନ, ଅମଡ଼ାବାଟ, ଅଭିନେତ୍ରୀ, ନବଜନ୍ମ, ଅଦିନମେଘରେ ଅଭିନୟ କରିଛନ୍ତି । ମାଲଜହ୍ନ ଚିତ୍ରପାଇଁ ରାଷ୍ଟ୍ରପତି ରୌପ୍ୟପଦକ ପାଇଛନ୍ତି । ୧୯୬୮ରେ କ୍ୟାମେରାମ୍ୟାନ ଦୀପକ ଦାସଙ୍କ ସହିତ ବିବାହ ହୋଇଯାଇଛି । ଶ୍ରୀଦାସ

ଓଡ଼ିଆରେ, ମଲଜନ୍ମ ଓ ବଂଧନରେ ଚଳଚ୍ଚିତ୍ରୋଲନ କରିଛନ୍ତି । ତାଙ୍କର ବର୍ତ୍ତମାନର ବଂଗଳା ଚିତ୍ର ଆବେଗ, ସୁରେର ଆଗୁନ, ମହାବିପ୍ଳବ ଥରବନ୍ଧ ।

ଶ୍ରୀମତୀ ଦାସ ୧୯୫୭ ଠାରୁ ବେତାର ନାଟକରେ ଅଂଶ ଗ୍ରହଣ କରୁଛନ୍ତି । ସଂପ୍ରତି ସେ ଆକାଶବାଣୀରେ ଷ୍ଟାଫ ଆର୍ଟିଷ୍ଟ ଭାବରେ କାର୍ଯ୍ୟ କରୁଛନ୍ତି ।

●

## ଅଭିନେତ୍ରୀ ଚନ୍ଦନା : ପ୍ରଯୋଜିକା ପାର୍ବତୀ ଘୋଷ



ଶ୍ରୀ ଜଗନ୍ନାଥ ଚିତ୍ରରେ କୃଷ୍ଣ ଭୂମିକାରେ ଯେଉଁ ଝିଅ ଜଣକ ଅଭିନୟ କରି ଚିତ୍ରପ୍ରେମୀଙ୍କର ଦୃଷ୍ଟି ଆକର୍ଷଣ କରିଥିଲେ ସେ ଯେ ଓଡ଼ିଆ ଚଳଚ୍ଚିତ୍ରର ଜଣେ ଏକ ବିଶିଷ୍ଟ ଅଭିନେତ୍ରୀ ତଥା ପ୍ରଯୋଜିକା ହେବେ ଏହା କୋଡ଼ିଏ ବର୍ଷ ତଳେ କେହି ଆଶା କରିନଥିଲେ । ମାତ୍ର ୧୬ ବର୍ଷ ବୟସରେ ସେ ଗୌରପ୍ରସାଦ ପ୍ରଯୋଜିତ ଭାଇଭାଇ ଚିତ୍ରରେ ଅଭିନୟ କଲେ । ତାପରେ ଅଭିନେତା ପ୍ରଯୋଜକ ଗୌରପ୍ରସାଦଙ୍କ ଜୀବନାକାଶରେ ନାୟିକା ଭାବରେ ମଧ୍ୟ ଦେଖା ଦେଲେ । ଅମର ଗାଁ ଝିଅ, ମା, ଲକ୍ଷ୍ମୀ, ସ୍ତ୍ରୀ, ଜ, ସଂସାର ରେ ମୁଖ୍ୟ ଭୂମିକାରେ ଅଭିନୟ କରିଛନ୍ତି । ଲକ୍ଷ୍ମୀ, କା, ସ୍ତ୍ରୀ, ଚିତ୍ରର ପ୍ରଯୋଜିକା ଶ୍ରୀମତୀ ପାର୍ବତୀ ଘୋଷହିଁ ଅଭିନେତ୍ରୀ ଚନ୍ଦନା । ଏହି ଙ୍କିଟି ଚିତ୍ର ରାଷ୍ଟ୍ରୀୟ ପୁରସ୍କାର ପାଇଛି । ସ୍ତ୍ରୀ ଚିତ୍ରର କାହାଣୀ ମଧ୍ୟ ସେ ରଚନା କରିଛନ୍ତି । ସଂସାର ଚିତ୍ରର ମଧ୍ୟ ସେ ନିର୍ଦ୍ଦେଶନା ଦେଇଛନ୍ତି ।

ଚନ୍ଦନାଙ୍କର ଜନ୍ମ ଏକ କଳାକାର ପରିବାରରେ । ପିତା ସ୍ୱର୍ଗତଃ ବାସୁଦେବ ନାୟକ ଗାଁ ଯାତ୍ରା, ଥିଏଟରରେ ଅନେକ ଅଭିନୟ କରିଛନ୍ତି । ବଡ ଭାଇ ସାରଦା ପ୍ରସନ୍ନ ନାୟକ, ଜଣେ ବିଶିଷ୍ଟ ନାଟ୍ୟକାର, ଚିତ୍ର ନିର୍ଦ୍ଦେଶକ । ତାଙ୍କର ପ୍ରଭାବରେ ଚନ୍ଦନା ପ୍ରଭାବିତ । ଅନ୍ୟ ଭାଇ ସ୍ୱରୂପ ନନ୍ଦନ ମଧ୍ୟ ଜଣେ ଚିତ୍ର ଅଭିନେତା ।

ତାଙ୍କ ମତରେ "ବର୍ତ୍ତମାନ ଓଡ଼ିଆ ଚଳଚ୍ଚିତ୍ର ଶିଶୁ ଅବସ୍ଥାରେ! ହେଉଛି କେବଳ ସରକାରୀ ସାହାଯ୍ୟ ଏହାକୁ ପ୍ରଗତିପଥରେ ଆଗେଇ ନେବ। ପ୍ରାଚୀସ୍ତୁ ଚିତ୍ରର, ବଜାର, ଯାମିନୀ ଏବଂ କଟକ ଚଳଚ୍ଚିତ୍ର ପ୍ରଦର୍ଶନର ଏକମାତ୍ର କେନ୍ଦ୍ର ଯେଉଁଠାରେ ପ୍ରଯୋଜକର ସ୍ୱାର୍ଥ ନିୟନ୍ତ୍ରିତ ହୁଏ। ତଥାପି ଚିତ୍ର ନିର୍ମାଣ ପାଇଁ ଉପଯୁକ୍ତ ଷ୍ଟୁଡିଓ, ଉପକରଣ ନ ଥାଇ ମଧ୍ୟ ୩୬ଟି ଚିତ୍ର ନିର୍ମାଣ ଏକ ଉଲ୍ଲେଖଯୋଗ୍ୟ କୃତିତ୍ୱ। ଅଧିକାଂଶଙ୍କୁ କଲିକତାର ଷ୍ଟୁଡିଓ ଓ ଟେକ୍ନିସିଆନଙ୍କ ଉପରେ ନିର୍ଭର କରିବାକୁ ପଡ଼ୁଥାଏ ଏବଂ ତାହାଦ୍ୱାରା ନିର୍ମାଣ ଖର୍ଚ୍ଚ ୩୦ ଭାଗ ଅଧିକା ବଢ଼ିଯାଏ।

ଏକାଧାରରେ ବନ୍ଦନା ଓଡ଼ିଆ ଚିତ୍ର ଅଭିନେତ୍ରୀ, ପ୍ରଯୋଜିକା, କାହାଣୀ ଲେଖିକା ଏବଂ ନିର୍ଦ୍ଦେଶିକା ମଧ୍ୟ।

●



ମିନତି

ଅଭିନେତ୍ରୀ

ମିନତି ମାଡ୍ରାଜର କଳାକ୍ଷେତ୍ରରୁ ନୃତ୍ୟରେ ସର୍ବୋଚ୍ଚଶିକ୍ଷା ଶେଷ କରି ଜର୍ମାନୀରେ ପି.ଏଚ.ଡ଼ି ଡ଼ିଗ୍ରୀ ଲାଭ କରିଛନ୍ତି। କୌଣସି ଓଡ଼ିଆ ଝିଅ ଏ ପର୍ଯ୍ୟନ୍ତ ଏ ସମ୍ମାନର ଅଧିକାରୀ ହୋଇନାହାନ୍ତି। ଓଡ଼ିଶା, ଭାରତ ଓ ଭାରତ ବାହାରେ ଓଡ଼ିଶୀ ନୃତ୍ୟ ପ୍ରଦର୍ଶନ କରି ସେ ଭୂରିଭୂରି ପ୍ରଶଂସା ଲାଭ କରିଛନ୍ତି। ଜୟଦେବ ଚିତ୍ରରେ ତାଙ୍କର ନୃତ୍ୟ ପ୍ରଦର୍ଶନ କରିଛନ୍ତି। ସାଧନା, ସୂର୍ଯ୍ୟମୁଖୀ, ଜୀବନସାଥୀ, ଅରୁନ୍ଧତୀର ନାୟିକା ଭୂମିକାରେ ଅଭିନୟ କରିଛନ୍ତି। ସେ ପି.ଏମ୍. ଏକାଡେମୀ ସ୍କୁଲର ହେଡମାଷ୍ଟର ସ୍ୱର୍ଗତଃ ବସନ୍ତ କୁମାର ଦାସଙ୍କର କନ୍ୟା। ସମ୍ପ୍ରତି ଡ଼ାଃ ମିନତି ରାଜ୍ୟସରକାରଙ୍କର ଭୁବନେଶ୍ୱରସ୍ଥ ନୃତ୍ୟସଙ୍ଗୀତ ମହାବିଦ୍ୟାଳୟର ଅଧ୍ୟକ୍ଷା ଅଛନ୍ତି।

●



# ଅଭିନେତ୍ରୀ ଗୀତସୁଧା

ଅଭିନେତ୍ରୀ ଗୀତସୁଧା ପରିଣାମ ଚିତ୍ରରେ ମୁଖ୍ୟନାୟିକା ଭୂମିକାରେ ଅଭିନୟ କରିଥିଲେ। ମେଡ଼ିକାଲ କଲେଜରେ ଅଧ୍ୟୟନ କରିବା କାଳରେ ସେ ତୃତୀୟ ଥର ଶ୍ରେଷ୍ଠ ଅଭିନେତ୍ରୀ ରୂପେ 'ମେଘର ମୁଖାର୍ଜୀ ସ୍ମୃତି କପ୍' ପାଇଥିଲେ ଯାହା କେତେବେଳେ କେହି ପାଇ ନାହାନ୍ତି ବା ପାଇବା ମଧ୍ୟ ସମ୍ଭବପର ନୁହେଁ। ସେ ପରିବାର ନିୟୋଜନ ବିଷୟରେ

## ଡଃ ସୁଧାରାଣୀ ଜେନା

ଚଳଚ୍ଚିତ୍ର ରୂପେ ନିଜର ସୁକାର୍ଯ୍ୟ ଯୋଗୁଁ ୧୯୬୮-୬୯ ପାଇଁ ଭାରତ ସରକାରଙ୍କର ଜାତୀୟ ପୁରସ୍କାର ଲାଭ କରିଛନ୍ତି। ପୁନଶ୍ଚ ରାଜ୍ୟସରକାରଙ୍କ ଦ୍ୱାରା ୧୯୬୮-୬୯ ଓ ୧୯୬୯-୭୦ ପାଇଁ ମଧ୍ୟ ପୁରସ୍କୃତ ହୋଇଛନ୍ତି।

ଜୀବନର ସବୁକ୍ଷେତ୍ରରେ ଏକ ସଫଳ ନାୟିକା ରୂପେ ଡଃ ସୁଧାରାଣୀ ଜେନା ସମ୍ପ୍ରତି ମୟୂରଭଞ୍ଜ ଜିଲ୍ଲାର ରାଇରଙ୍ଗପୁର ହସ୍ପିଟାଲର ସହକାରୀ ଚିକିତ୍ସକ।

●

ପାର୍ଶ୍ୱ ଅଭିନେତ୍ରୀ

## ଶାନ୍ତଲତା ବଳ (ଡଲି)



୧୯୫୦ ମସିହାରେ କଟକର ଦରଘା ବଜାରରେ ପାର୍ଶ୍ୱ ଅଭିନେତ୍ରୀ ଡଲିଙ୍କର ଜନ୍ମ। ପିଲାଦିନୁ ଅଭିନୟ ପ୍ରତି ପ୍ରବଳ ଆକର୍ଷଣ ଥିଲା। ତାଙ୍କର ପ୍ରଥମ ନାଟକ ଅଭିନୟ ଜଗତସିଂହପୁରରେ ସମାଧି ନାଟକର ପାନ୍ଥା ଭୂମିକାରେ। ତାଙ୍କର ପ୍ରଥମ ଚଳଚ୍ଚିତ୍ର ଜୀଏ କାହାର। 'ବନ୍ଧନ'ରେ ମଧ୍ୟ ସେ ଅଭିନୟ କରିଛନ୍ତି। ମାତ୍ର ଦୁଇଟି ଚିତ୍ରର

ଅଭିନୟ କରିଥିଲେ ମଧ୍ୟ ଦର୍ଶକମାନଙ୍କ ମନରେ ସେ ବେଶ୍ ପ୍ରଭାବ ସୃଷ୍ଟି କରି-ପାରିଛନ୍ତି । ମଞ୍ଚ ଅଭିନୟରେ ମଧ୍ୟ ସେ ସୁନାମ ଅର୍ଜନ କରିଛନ୍ତି ।

ସଙ୍ଗୀତ ଗାଇ ପାରନ୍ତି ନାହିଁ ମାତ୍ର ନାଚ ପାରନ୍ତି । ଶାନ୍ତିଲତା ବଳ ଗତବର୍ଷ ବିବାହ କରିଛନ୍ତି ।

●

## ଅଭିନେତ୍ରୀ ଗୀତାଞ୍ଜଳୀ



କୁମାରୀ ଗୀତାଞ୍ଜଳୀ ଷଡ଼ଙ୍ଗୀ, ବନ୍ଧନ ଚିତ୍ରର ନାୟିକା । ବାପା ଷ୍ଟେସନ ମାଷ୍ଟର ଶଶୀଭୂଷଣ ଷଡ଼ଙ୍ଗୀ ଢେଙ୍କାନାଳରେ ଅବସ୍ଥାପିତ । ତାଙ୍କ ନାଚୀ କଲ୍ପନା ନୂଆବୋଉ ଚିତ୍ରରେ ଅଭିନୟ କରିଥିଲେ । ଶୈଳବାଳା ମହିଳା କଲେଜରେ ବି.ଏସ୍‌ସି ପଢ଼ୁଥିବା-ବେଳେ ବନ୍ଧନ ଚିତ୍ରରେ ଅଭିନୟ କରିବାର ସୁଯୋଗ ପାଆନ୍ତି ନାୟିକା ଭୂମିକାରେ । ବର୍ତ୍ତମାନ ସେ ପ୍ରଧାନାଧ ଟ୍ରେନିଂ କଲେଜରେ ବି.ଏଡ୍ ପଢ଼ୁଛନ୍ତି ।

●



## ଭାନୁମତୀ

ଭାନୁମତୀ କେବଳ ଜଣେ ଦକ୍ଷ ମଞ୍ଚ-ଶିଳ୍ପୀ ନୁହଁନ୍ତି ଚିତ୍ର ଅଭିନେତ୍ରୀ ମଧ୍ୟ । ଅନ୍ନପୂର୍ଣ୍ଣା 'ଏ' ଗ୍ରୁପ ସହିତ ଆଜନ୍ମରୁ ଜଡ଼ିତ । ମାଟିର ମଣିଷ ଏବଂ କାହାର ଭୂମିକା ପାଇଁ ଦର୍ଶକଙ୍କ ମନରେ ସେ ବିଶେଷ ପ୍ରଭାବ ପକାଇ ପାରିଛନ୍ତି ।

●



ଓଡ଼ିଆ ଚିତ୍ରର ପ୍ରଥମ ନାୟକ :

## ମାଖନ୍ ଲାଲ ବାନାର୍ଜୀ

ପ୍ରଥମ ଓଡ଼ିଆ ଚିତ୍ର ସୀତାବିବାହର ନାୟକ ସ୍ୱର୍ଗତଃ ମାଖନ୍ ଲାଲ ବାନାର୍ଜୀ ୧୯୦୪ ସାଲରେ କଟକର ଦାନ୍ଦିନକାରରେ ଜନ୍ମଗ୍ରହଣ କରିଥିଲେ । ସେ ପ୍ରଥମେ ସେଣ୍ଟ୍ରାଲ କୋଅପରେଟିଭ୍ ବ୍ୟାଙ୍କରେ ହେଡ୍‌କ୍ଲର୍କ ଥିଲେ । ସୌଖୀନ ପ୍ରକୃତିର ମାଖନ ବାବୁଙ୍କର ଥିଏଟର ଦେଖିବା ନିଶା ଖୁବ୍ ଥିଲା । ସେଥିପାଇଁ ପ୍ରତି ଶନିବାର ରାତିରେ କଲିକତା ଯାଇ ରବିବାର ସେଠାରେ ଥିଏଟର ଦେଖି ସୋମବାର କଟକରେ ପହଞ୍ଚି ଅଫିସ କାମରେ ଯୋଗ ଦେଉଥିଲେ । ସେ ସାହାଜାହାନ, କୋଣାର୍କ, ମାଇଁପୁଅ, କର୍ଣ୍ଣାର୍ଜ୍ଜୁନ, ସୀତା, ବେହୁଲା ପ୍ରଭୃତି ଅନେକ ନାଟକରେ ଅଂଶ ଗ୍ରହଣ କରିଥିଲେ । ସେ ଅନେକ ସଂଗୀତ ସଭା, ରବୀନ୍ଦ୍ର ସଂଗୀତ ଉଚ୍ଚାଙ୍ଗ ସଂଗୀତ ପ୍ରଭୃତି କଟକରେ ଆୟୋଜନ କରିଥିଲେ ।

କଟକର ବର୍ତ୍ତମାନର ବୀଣାପାଣି କ୍ଲବର ସେ ପ୍ରଧାନ ପୃଷ୍ଠପୋଷକ ଥିଲେ । ଶ୍ରୀ ନରେଶ ମିତ୍ର, ଶିଶିର ଭାଦୁଡ଼ି, ଅହୀନ୍ଦ୍ର ଚୌଧୁରୀ, ଦୁର୍ଗାଦାସ ବାନାର୍ଜୀ ପ୍ରଭୃତିଙ୍କ ଦ୍ୱାରା ପ୍ରଶଂସିତ ହୋଇଥିଲେ । ତାଙ୍କର ଉଦ୍‌ଯୋଗରେ ୧୯୩୬ ସାଲରେ ଆନନ୍ଦ ନାମରେ ଏକ ମଞ୍ଚ ଓ ସିନେମା ପତ୍ରିକା ପ୍ରକାଶ ପାଇଥିଲା । ତାହାର ସମ୍ପାଦକ ଆଇ.ଏ ଏସ୍. ତଥା ଲେଖକ ଶ୍ରୀ ଶରତଚନ୍ଦ୍ର ମୁଖାର୍ଜୀ ଥିଲେ । ତାହା ହେଉଛି ପ୍ରଥମ ମଞ୍ଚ ଓ ଚିତ୍ର ଓଡ଼ିଆ ପତ୍ରିକା ।

ମୋହନସୁନ୍ଦର ଦେବଗୋସ୍ୱାମୀଙ୍କର ପ୍ରଥମଚିତ୍ର 'ସୀତା ବିବାହ'ରେ ପୂର୍ବାଚାରେ ଗୋଟିଏ ମାସ ରିହର୍ସାଲରେ ଯୋଗ ଦେଇ ଚିତ୍ର ସୁଟିଂ ପାଇଁ କଲିକତା ଯାଇଥିଲେ । ତାହା କଲିକତାର କାଳୀଫିଲ୍ମ ଷ୍ଟୁଡିଓରେ ନିର୍ମିତ ହୋଇଥିଲା । ତିନିମାସ ପାଇଁ ତିନିହଜାର ଟଙ୍କା ଚୁକ୍ତିରେ ସେ ସୀତା ବିବାହରେ ଅଭିନୟ କରିଥିଲେ ।

୧୯୪୬ ଶ୍ୟାମାପୂଜାରେ ତାଙ୍କର ଜୀବନଦୀପ ଲିଭିଗଲା ।

## ଅଭିନେତା ଗୌରପ୍ରସାଦ

ଗତ କୋଡ଼ିଏ ବର୍ଷ ତଳେ ଶ୍ରୀଜଗନ୍ନାଥରେ ଶତ୍ରୁଘ୍ନର ଭୂମିକାରେ ଯେଉଁ ଯୁବକଟି ଅଭିନୟ କରିଥିଲା କିଏ ଜାଣିଥିଲା ଓଡ଼ିଆ ଚଳଚ୍ଚିତ୍ରରେ ସେ ଅଭିନେତା, ପ୍ରଯୋଜକ କ୍ଷେତ୍ରରେ ପ୍ରତିଷ୍ଠା ପାଇବ ? ଅଭିନେତା ଗୌରପ୍ରସାଦ ଶ୍ରୀ ଅତୁଲ୍ୟ ଘୋଷଙ୍କର ତୃତୀୟ ସନ୍ତାନ । ୧୯୪୭ରେ ସେ ଏମ୍. ଏକାଡ଼େମୀରୁ ମେଟ୍ରିକ୍ୟୁଲେସନ୍ ପାସ କରି ସିଟି ବୁକିଂ ଅଫିସରେ ଏକ କିରାଣୀ ଭାବେ ଯୋଗ ଦେଇଥିଲେ । ରେଭେନ୍ସା କଲେଜରେ ଆଇ.ଏ. ପଢ଼ୁଥିବା ସମୟରେ ରୂପ ଭାରତୀ କମ୍ପାନୀରେ ଯୋଗଦେଇଥିଲେ । ଅନ୍ନପୂର୍ଣ୍ଣା ବି ଗ୍ରୁପ୍‌ର ମନୋରଞ୍ଜନ ଦାସଙ୍କର ଅଗ୍ନିଶିଖା ନାଟକରେ ଅମର ଭୂମିକାରେ ପ୍ରଥମ ଅଭିନୟ କରିଥିଲେ ।

୧୯୫୧ ସାଲରେ ପୃଥ୍ୱୀରାଜ କପୁରଙ୍କ ପୃଥ୍ୱୀ ଥିଏଟରସ୍‌ରେ କଳା-ନିକେତନରେ ଅଭିନୟ ଶିକ୍ଷା ଆରମ୍ଭ କରିଥିଲେ । ସେତେବେଳେ ହିନ୍ଦୀଚିତ୍ର 'ସଦମା'ରେ ମଧ୍ୟ ଗୋଟିଏ ଶ୍ରେଷ୍ଠ ଭୂମିକାରେ ଅଭିନୟ କରିଥିଲେ । ଶ୍ରୀ ଜଗନ୍ନାଥ ପରେ ଆମଗାଁ ଝିଅ, ଭାଇଭାଇ, କେଦାରଗୌରୀ, ମା, ଲକ୍ଷ୍ମୀ, କା, ସ୍ତ୍ରୀ, ସଂସାରରେ ଅଭିନୟ କରିଛନ୍ତି । ଭାଇଭାଇ, ଲକ୍ଷ୍ମୀ ତାଙ୍କ ଦ୍ୱାରା ପ୍ରଯୋଜିତ । ତାଙ୍କ ସ୍ତ୍ରୀ ପାର୍ବତୀ ଘୋଷଙ୍କର ନାମଅନୁସାରେ ପାର୍ବତୀ ଘୋଷ ପିକ୍‌ଚର୍ସ ପ୍ରତିଷ୍ଠାନ ଆନୁକୂଲ୍ୟରେ କା, ସ୍ତ୍ରୀ, ସଂସାର ନିର୍ମିତ ହୋଇଛି ।

ଓଡ଼ିଆ ଚଳଚ୍ଚିତ୍ରର ଲୋକପ୍ରିୟ ଅଭିନେତ୍ରୀ ଚନ୍ଦନା ଶ୍ରୀ ଗୌରପ୍ରସାଦଙ୍କର ପତ୍ନୀ । 'ଆଗାମୀ ବର୍ଷ ଫକୀରମୋହନଙ୍କର ଛ'ମାଣ ଆଠଗୁଣ୍ଠ' ନିର୍ମାଣ କରିବେ ।

●

## ଅଭିନେତା ଭୀମ ସିଂହ

ଖୁବ୍ କମ ଚଳଚ୍ଚିତ୍ରରେ ଅଳ୍ପ ସମୟ ପାଇଁ ଅଭିନୟ କରି ଯେଉଁମାନେ ଦର୍ଶକଙ୍କ ମନରେ ପ୍ରଭାବ ପକାଇଛନ୍ତି ସେମାନଙ୍କ ମଧ୍ୟରେ ଭୀମସିଂହ ଅନ୍ୟତମ । 'ମଲାଜହ୍ନ'ରେ ଗୌଣ ଭୂମିକା, 'କିଏ କାହାର'ରେ ଏକ ହାସ୍ୟରସ ଭୂମିକା ତଥା ବଂଧନର ଶିକ୍ଷକ ଭୂମିକାରେ ତାଙ୍କର ଅଭିନୟ ବାସ୍ତବିକ୍ ଉଲ୍ଲେଖଯୋଗ୍ୟ । ଚଳଚ୍ଚିତ୍ର ନିର୍ଦ୍ଦେଶନା, ସଂଗଠନ କ୍ଷେତ୍ରରେ ମଧ୍ୟ ତାଙ୍କର ଗୁରୁତ୍ୱପୂର୍ଣ୍ଣ ଭୂମିକା ରହିଛି । ନିର୍ଦ୍ଦେଶକ ନିତାଇ ପାଲିତଙ୍କର ସମସ୍ତ ଚିତ୍ରରେ ସେ ଏକ ବିଶ୍ୱସ୍ତ ସହକାରୀ ।

ଶ୍ରୀ ଭୀମ ସିଂହ ସଂପ୍ରତି ଜୀବନବୀମା କର୍ପୋରେସନର କଟକ ଡିଭିଜନ ଅଫିସରେ ଅବସ୍ଥାପିତ ।

●

# ଶରତ ପୂଜାରୀ

ସୁପରିଚିତ ଅଭିନେତା ଶରତ ପୂଜାରୀଙ୍କର ଜନ୍ମ ଅଗଷ୍ଟ ୩୦ ତାରିଖ ନୟାଗଡ଼ ଟାଉନରେ । ବାପାଥିଲେ ତତ୍କାଳୀନ ପଲିଟିକାଲ ଏଜେଣ୍ଟ । ଏଲହାବାଦ ବିଶ୍ୱବିଦ୍ୟାଳୟରୁ ଅର୍ଥନୀତିରେ ଏମ୍.ଏ ପାସ କରିଛନ୍ତି ।

୧୯୬୦ରେ ବରଗଡ଼ ପଞ୍ଚାୟତ କଲେଜରେ ନିଯୁକ୍ତ । ତାପରେ ୧୯୬୩ ରୁ ୧୯୬୬ ପର୍ଯ୍ୟନ୍ତ ଅଧ୍ୟକ୍ଷ ଦାୟିତ୍ୱ ଗ୍ରହଣ କରନ୍ତି । ତାଙ୍କର ପ୍ରଥମ ଅଭିନୟ ଏନ୍.ସି.ସି କ୍ୟାମ୍ପରେ । ତାପରେ ୧୯୪୩ ମସିହାରେ ରେଭେନ୍ସା କଲେଜ ବାର୍ଷିକ ଉତ୍ସବରେ ଉପେନ୍ଦ୍ର ଭଞ୍ଜ ନାଟକରେ ହାସ୍ୟରସ ଭୂମିକାରେ ଅଂଶ ଗ୍ରହଣ କରନ୍ତି । ୧୯୫୯ ରେ ଓଡ଼ିଶା ସଙ୍ଗୀତ ନାଟକ ଏକାଡ଼େମୀ ତରଫରୁ ୧ମ ଶ୍ରେଷ୍ଠ ଅଭିନେତା ରୂପେ ପୁରସ୍କୃତ । ତାଙ୍କର ପ୍ରଥମ ଛବି ମହାଲକ୍ଷ୍ମୀ ପୂଜା । ତା ପରେ ସେ ଦସ୍ୟୁ ରତ୍ନାକର, ନୂଆବୋଉ, ଜୀବନ ସାଥୀ, ସାଧନା, ନବଜନ୍ମ, ସ୍ତ୍ରୀଭଉଜ, ମାଟିର ମଣିଷ, ଅରୁନ୍ଧତୀ, କଏକାହାର ଛବିରେ ଅଭିନୟ କରିଛନ୍ତି ।

ତାଙ୍କ ଛବିର ନାୟିକା କ୍ରମାନ୍ୱୟରେ ଶେଫାଳୀ ନାୟକ, ଶାନ୍ତି, ପଦ୍ମା, ଗୀତା, ମନିଉ, ଉର୍ବଶୀ, ପ୍ରଭାତୀ, ଝିନୁମଣୀ, ମିନତି, ସୌଦାମିନୀ ।

ତାଙ୍କର ପାଞ୍ଚ ଭାଇ ଓ ଦୁଇ ଭଉଣୀ ।

ଯେଉଁ ଲରମ୍ବା ସ୍କୁଲରୁ ୧୯୪୯ ରେ ସେ ମାଟ୍ରିକ ପାସ କରିଥିଲେ ସମ୍ପ୍ରତି ସେଠାର କଲେଜର ସେ ଅଧ୍ୟକ୍ଷ ।

ଅଭିନେତା ଶରତ ପୂଜାରୀ ଏକାଧାରରେ ଅଭିନେତା, ଶିଳ୍ପୀ, ଲେଖକ ଶିକ୍ଷାବିତ୍ ।

●

# ରଜନୀକାନ୍ତ

ସ୍କୁଲ ତଥା କଲେଜ ଜୀବନରେ ଅନେକ ନାଟକରେ ଅଭିନୟ କରିଛନ୍ତି । ମାତ୍ର ୧୯୬୨ ଓ ୧୯୬୪ ରେ 'ପାଷାଣର ପ୍ରତୀକ୍ଷା' 'ଅଭିଶପ୍ତ' ନାଟକରେ ଶ୍ରେଷ୍ଠ ଅଭିନେତା ରୂପେ ବିବେଚିତ ହେବା ପରେ ନାଟ୍ୟ ଜଗତର ଦୃଷ୍ଟି ଆକର୍ଷଣ କରିଥିଲେ ରଜନୀକାନ୍ତ । ୧୯୫୮ରୁ ଶ୍ରୀ ମହାନ୍ତି କଟକ ବେତାର କେନ୍ଦ୍ରରେ ବେତାର ଶିଳ୍ପୀ ରୂପେ ବହୁ ନାଟକରେ ଅଂଶ ଗ୍ରହଣ କରିଛନ୍ତି । ଓଡ଼ିଆ ଚିତ୍ର ଅଭିନେତ୍ରୀ ଓ କିଏ କାହାରରେ ସେ ଅଭିନୟ କରିଛନ୍ତି ।

ସେ କଟକର ବରିଷ୍ଠ ଆଡ଼ଭୋକେଟ ଶ୍ରୀ ଶ୍ରୀକାନ୍ତ ମହାନ୍ତିଙ୍କର ଜ୍ୟେଷ୍ଠ ପୁତ୍ର । ସମ୍ପ୍ରତି ଶ୍ରୀ ମହାନ୍ତି ରାଜ୍ୟ ସରକାରଙ୍କ ଅଧୀନରେ ଚିକିତ୍ସକ ରୂପେ କାର୍ଯ୍ୟ କରୁଛନ୍ତି ।

●

# ସାମୁଏଲ ସାହୁ (ବାବା)



ଓଡ଼ିଆ ମଞ୍ଚ ଓ ଚିତ୍ର ଜଗତର ସବାପେକ୍ଷା ଲୋକପ୍ରିୟ ଅଭିନେତା ସାମୁଏଲ ସାହୁଙ୍କୁ ଜାଣେ କିଏ ? ଅନ୍ନପୂର୍ଣ୍ଣା 'ବି' ଗ୍ରୁପ ସହିତ ଗତ କୋଡ଼ିଏ ବର୍ଷରୁ ଊର୍ଦ୍ଧ୍ୱ ସେ ଅଭିନେତା ଓ ନିର୍ଦ୍ଦେଶକ ଭାବରେ ଜଡ଼ିତ । ଆକାଶବାଣୀ କଟକର ମଧ୍ୟ ଏକ ସୁରୁଣା ଶିଳ୍ପୀ । ସେ ଓଡ଼ିଆ ଚିତ୍ର ଭାଇ-ଭାଇ, ଶ୍ରୀଲୋକନାଥ, ଲକ୍ଷ୍ମୀ, ମାଣିକଯୋଡ଼ି, ସାଧନା, ଜୀବନସାଥୀ, ଅଭିନେତ୍ରୀ, ଭାଇଭାଉଜ, କିଏ-କାହାର, ବନ୍ଧନ, ଅଦିନମେଘ, ଘରବାହୁଡ଼ା ପ୍ରଭୃତି ଚିତ୍ରରେ ଗୁରୁତ୍ୱପୂର୍ଣ୍ଣ ଭୂମିକାରେ ଅଭିନୟ କରିଛନ୍ତି । ମୁଖ୍ୟ ଗୌଣ ସମସ୍ତ ଭୂମିକାରେ ତାଙ୍କର କୃତିତ୍ୱ ରହିଛି ।

●



## ଅନନ୍ତ ମହାପାତ୍ର

ଶ୍ରୀ ଅନନ୍ତ ମହାପାତ୍ର ଅବସରପ୍ରାପ୍ତ ବିଚାରପତି ଶ୍ରୀ ହରିହର ମହାପାତ୍ରଙ୍କର ପୁତ୍ର । ସେ ଜଣେ ମଞ୍ଚ, ଚିତ୍ର ଅଭିନେତା ତଥା ନାଟକ ନିର୍ଦ୍ଦେଶକ । ଓଡ଼ିଶାର ନାଟ୍ୟ-ଆନ୍ଦୋଳନକୁ ନୂତନ ରୂପ ଦେଇଥିବା 'ସୃଜନୀ' ସଂସ୍ଥା ସହିତ ସେ ଜଡ଼ିତ । ଅମୃତସ୍ୟ ପୁତ୍ର ତାଙ୍କର ନବତମ ନିର୍ଦ୍ଦେଶିତ ନାଟକ । ସେ ମହାଯୋଦ୍ଧା, ସୂର୍ଯ୍ୟମୁଖୀ, ସାଧନାରେ ଅଭିନୟ କରିଛନ୍ତି ।



## ଅକ୍ଷୟ ମହାନ୍ତି

କଣ୍ଠଶିଳ୍ପୀ ଅକ୍ଷୟ ମହାନ୍ତି ନୁହଁନ୍ତି ଅଭିନେତା ଅକ୍ଷୟ ମହାନ୍ତି । ପିଲାଦିନେ ସ୍କୁଲରେ ସେ ନାଟକରେ ଅଭିନୟ କରୁଥିଲେ । ୧୯୫୪ରେ ରେଭେନ୍‌ସା କଲେଜିଏଟ ସ୍କୁଲରୁ ମାଟ୍ରିକ୍ୟୁଲେସନ ପାସ କରିଥିଲେ । ଜୀବନବୀମା କର୍ପୋରେସନରେ ଚାକିରି କରିବା ସମୟରେ ବିଭିନ୍ନ ନାଟକରେ ଅଭିନୟ ତଥା ନିର୍ଦ୍ଦେଶନା ଦେଇଥିଲେ । ସେ ଶ୍ରୀଲୋକନାଥ, ମାଣିକଯୋଡ଼ି, ଅମଡ଼ାବାଟ, ନଦନଦୀ, ମଲ୍ଲିକନ୍ଧ୍ର, ସଂସାରରେ ଅଭିନୟ କରିଛନ୍ତି । ସେ ଜଣେ କୁଶଳୀ ମଞ୍ଚ ନିର୍ଦ୍ଦେଶକ । ଜୀବନ ବୀମା କର୍ପୋରେସନର ଅଫିସର ଶ୍ରୀ କୃଷ୍ଣଚରଣ ଦାସଙ୍କର ଜ୍ୟେଷ୍ଠ ପୁତ୍ର ।



## ପରୀକ୍ଷିତ ଜେନା



ଶ୍ରୀ ଜେନା କଏକାହାର, ସ୍ତ୍ରୀ, ବନ୍ଧନରେ ଗୌଣ ଭୂମିକାରେ ଅଭିନୟ କରିଛନ୍ତି । ସେ ଆକାଶବାଣୀର ଜଣେ କଳାକାର । ଓଡ଼ିଆ ଚଳଚ୍ଚିତ୍ର ପତ୍ରିକା ବାଣୀଚିତ୍ର ସହ ମଧ୍ୟ ଜଡ଼ିତ । ବର୍ତ୍ତମାନ ସେ ଓଡ଼ିଆ ସରକାରଙ୍କ ସରେଜ ବିଭାଗରେ ଅବସ୍ଥାପିତ ।



## ଜତୀନ ଦାସ

ଖବର ପଢ଼ୁଛନ୍ତି ଜତନ ଦାସ......। ଏ ସ୍ୱର ଶର ସହିତ ସମସ୍ତ ଶ୍ରୋତା ପରିଚିତ। ଦିଲ୍ଲୀ ଆକାଶବାଣୀର ସମ୍ବାଦ ପାଠକରୁଥିବା ସେଇ ଜତନ ଦାସ ଜଣେ ମଞ୍ଚ ଓ ଚିତ୍ର ଅଭିନେତା ମଧ୍ୟ। ୧୯୨୦ ନଭେମ୍ବର ୨୨ ତାରିଖରେ ଭଦ୍ରକ ସବ୍‌ଡିଭିଜନ ଅନ୍ତର୍ଗତ ଅନ୍ଧାରି ଗ୍ରାମରେ ଜନ୍ମ। ୧୯୪୭ଠାରୁ ଆକାଶବାଣୀ କଟକରୁ କର୍ମମୟ ଜୀବନ ଆରମ୍ଭ। ୧୯୪୯ରେ ଦିଲ୍ଲୀ ସ୍ଥାନାନ୍ତରିତ। ତାଙ୍କର ଦୁଇଟି ବେତାର ଏକାଙ୍କିକା ସଂଗ୍ରହ, ବେତାର ରଚନା, ମୁକ୍ତି ପ୍ରକାଶ ପାଇଛି। ବଂଗଳା ଚିତ୍ର ସାଥୀ ଓ ପରଅପର ତଥା ଓଡ଼ିଆ ଚିତ୍ର ମାଣିକଯୋଡ଼ିରେ ସେ ଅଭିନୟ କରିଛନ୍ତି। ସମ୍ପ୍ରତି ଅବସ୍ଥାନ ଦିଲ୍ଲୀ।



## ପ୍ରଶାନ୍ତ ନନ୍ଦ

ରଥ ଯା ଘୂରିଯା ଚକ ଗଡ଼ିଯା...ଗୀତ ଯେଉଁ ପିଲାଟି ବୋଲିଥିଲା ନୂଆବୋହୂ ଚିତ୍ରରେ ଆପଣ ତାହା ଭୁଲି ନଥିବେ। ସେ ଦିନର ସେଇ ପିଲାଟି ଆଜିର ଅଭିନେତା ପ୍ରଶାନ୍ତ।

ମାଟିର ମଣିଷ, ବନ୍ଧନ, ଅଦିନମେଘ କେତୋଟି ଚିତ୍ରରେ ସେ ମୁଖ୍ୟ ଭୂମିକାରେ ଅଭିନୟ କରିଛନ୍ତି। ଶ୍ରୀ ପ୍ରଶାନ୍ତ ନନ୍ଦ ରାଜନୀତି ବିଜ୍ଞାନରେ ଉତ୍କଳ ବିଶ୍ୱବିଦ୍ୟାଳୟରୁ ଏମ.ଏ ପାସ କରି ସଂପ୍ରତି କଟକରେ କ୍ରମ୍ପଟନ କମ୍ପାନୀରେ କାର୍ଯ୍ୟ କରୁଛନ୍ତି।



## ପ୍ରିୟନାଥ ମିଶ୍ର

ଓଡ଼ିଶାର ରଙ୍ଗମଞ୍ଚକୁ ଶ୍ରୀ ପ୍ରିୟନାଥ ମିଶ୍ରଙ୍କ ଦାନ ଅନେକ। ଡାକ ନାମ ପୀର। ଅନ୍ନପୂର୍ଣ୍ଣା 'ବି' ଗ୍ରୁପର ବିଶିଷ୍ଟ ଅଭିନେତା ତଥା ନିର୍ଦ୍ଦେଶକ। ସେ ନବଜନ୍ମ, ମଲ୍ଲିଜହ୍ନ, କିଏ କାହାର, ସଂସାର ପ୍ରଭୃତି ଚିତ୍ରର ଗୁରୁତ୍ୱପୂର୍ଣ୍ଣ ଭୂମିକାରେ ଅଭିନୟ କରିଛନ୍ତି। ଶତାଧିକ ନାଟକରେ ଅଭିନୟ କରିବା ବ୍ୟତୀତ ବହୁ ନାଟକର ନିର୍ଦ୍ଦେଶକ ମଧ୍ୟ। ସେ ଜଣେ ବେତାର ଶିଳ୍ପୀ। ସେ ବର୍ତ୍ତମାନ କଟକରେ କାଲଫ ବଜାରରେ ଅବସ୍ଥାନ କରୁଛନ୍ତି।

## ହିମାଂଶୁ



ହାସ୍ୟରସ ଅଭିନେତା ହିମାଙ୍କ ସ୍ୱର ସମସ୍ତେ ଆକାଶବାଣୀର କୃଷି ବନ୍ଧୁଗଣରେ ଶୁଣୁଥିବେ । ସେ ଶ୍ରୀଲୋକନାଥ, ନୂଆବୋଉ, ନବଜନ୍ମ ପ୍ରଭୃତି ଛବିରେ ଅଭିନୟ କରିଛନ୍ତି । ସମ୍ପ୍ରତି ଆକାଶବାଣୀ କଟକ କେନ୍ଦ୍ରରେ ଅବସ୍ଥାପିତ ।



## ଶ୍ୟାମଲେନ୍ଦୁ

ହାସ୍ୟରସ ଭୂମିକାରେ ଶ୍ୟାମଲେନ୍ଦୁ ଅଳ୍ପ ବୟସରେ ବେଶ ସୁନାମ ଅର୍ଜନ କରିଛନ୍ତି । କିଏ କାହାର, ସ୍ତ୍ରୀ, ଅଦିନ ମେଘରେ ତାଙ୍କର ଅଭିନୟ ଉଲ୍ଲେଖ-ଯୋଗ୍ୟ । ଚଳଚ୍ଚିତ୍ର ପ୍ରଦର୍ଶନୀ ଓ ସଂଗଠନରେ ମଧ୍ୟ ତାଙ୍କର ଭୂମିକା ରହିଛି ।

---



---






## କୁକୁମୀନା ମହାନ୍ତି



ମହାଜନ୍ମ ଓ ସ୍ୱୀ ଚନ୍ଦର ନୃତ୍ୟଶିଳ୍ପୀ କୁକୁମିନା ଆଜ ଓଡ଼ିଶାରେ ନୁହେଁ ଭାରତ ତଥା ଆମେରିକା, ଜାପାନରେ ମଧ୍ୟ ପରିଚିତ । ପ୍ରଥମ ଗୁରୁ କେଳୁଚରଣ ଓ ବର୍ତ୍ତିମାନ ଗୁରୁ ରଘୁନାଥ ଦତ୍ତ । ସୁଶ୍ରୀ କୁମାରୀ କୁକୁମୀନା ମହାନ୍ତି ଆକାଶବାଣୀର ଶ୍ରୀ ମାଧବାନନ୍ଦ ମହାନ୍ତିଙ୍କର କନ୍ୟା । ଗତ କେତେମାସ ତଳେ ସେ ଆମେରିକାରେ ଓଡ଼ିଶୀ ନୃତ୍ୟ ପରିବେଷଣ କରି ଫେରିଛନ୍ତି । କୁମାରୀ କୁକୁମୀନା ଆଗାମି ଯୁଗର ଏକ ଉଜ୍ଜ୍ୱଳ ନୃତ୍ୟଶିଳ୍ପୀ ହେବେ ।

## ସଂଯୁକ୍ତା ପାଣିଗ୍ରାହୀ



୧୯୪୪ ଅଗଷ୍ଟ ମାସରେ ଶିଳ୍ପୀ ସଂଯୁକ୍ତାଙ୍କର ଜନ୍ମ ଭକ୍ତଭୂମି ଗଞ୍ଜାମରେ । ଜନ୍ମଦାତ୍ରୀ ଶ୍ରୀମତୀ ଶକୁନ୍ତଳା ମିଶ୍ରଙ୍କର ପ୍ରେରଣା ତାଙ୍କୁ ଏକ ସଫଳ ନୃତ୍ୟଶିଳ୍ପୀ ରୂପେ ପ୍ରତିଷ୍ଠା ଆଣିଦେଇଛି ।

ଓଡ଼ିଶା ସରକାରଙ୍କ ବୃତ୍ତି ପାଇ ମାନ୍ଦ୍ରାଜର କଳାକ୍ଷେତ୍ରରେ ରୁକ୍ମିଣୀ ଦେବୀ ଅରୁଣ୍ଡେଲଙ୍କ ଅଧ୍ୟକ୍ଷତାରେ ଛ ବର୍ଷ ନୃତ୍ୟ ଶିକ୍ଷା କରନ୍ତି । ୧୯୫୯ରେ ସେ ନୃତ୍ୟ-

ବେଣୀ ଉପାଧିରେ ଭୂଷିତା ହୁଅନ୍ତି । ମାନ୍ଦ୍ରାଜ ଅବସ୍ଥାନ କାଳରେ ସଂଯୁକ୍ତା ସିନେଟର ମେଟ୍ରିକ ପରୀକ୍ଷାରେ କୃତିତ୍ୱ ସହ ଉତ୍ତୀର୍ଣ୍ଣ ହୁଅନ୍ତି ।

୧୯୬୦ରେ ତାଙ୍କର ବିବାହ ହୁଏ ବିଶିଷ୍ଟ ସଙ୍ଗୀତଜ୍ଞ ରଘୁନାଥ ପାଣିଗ୍ରାହୀଙ୍କ ସହିତ । ବମ୍ବେ, ହାଇଦ୍ରାବାଦ, ଦିଲ୍ଲୀ, କଲିକତା ପ୍ରଭୃତି ସ୍ଥାନରେ ଓଡ଼ିଶୀ ନୃତ୍ୟ ପରିବେଷଣ କରି ଓଡ଼ିଶୀ ନୃତ୍ୟର ଶାସ୍ତ୍ରୀୟତା ଓ ବଳିଷ୍ଠ ପରମ୍ପରା ପ୍ରସାର କରିବାରେ ସାହାଯ୍ୟ କରିଛନ୍ତି । ସେ କିଛିକାଳ ଉତ୍କଳ ସଙ୍ଗୀତ ମହାବିଦ୍ୟାଳୟରେ ଅଧ୍ୟାପିକା ଥିଲେ ।

୧୯୬୭ମସିହାରେ ସାଂସ୍କୃତିକ ବିନିମୟ କାର୍ଯ୍ୟକ୍ରମର ଭାରତୀୟ ସାଂସ୍କୃତିକ ଦଳର ସଦସ୍ୟା ଭାବରେ ରଘୁନାଥ ପାଣିଗ୍ରାହୀ ଓ ନୃତ୍ୟଗୁରୁ କେଳୁଚରଣଙ୍କ ସହ ରୁଷ ଯାତ୍ରା କରିଥିଲେ । ଜାପାନରେ Expo-70ରେ ମଧ୍ୟ ନୃତ୍ୟ ପରିବେଷଣ କରିଥିଲେ ।

ସେ ମହାଲକ୍ଷ୍ମୀପୂଜା, ଭାଇ ଭାଉଜ ଚଳଚ୍ଚିତ୍ରରେ ନୃତ୍ୟ ପରିବେଷଣ କରିଛନ୍ତି ।



## ରୀତାମିଶ୍ର



ସେ ବିଶିଷ୍ଟ ମଞ୍ଚ ଅଭିନେତା ପ୍ରିୟ-ନାଥ ମିଶ୍ରଙ୍କର କନ୍ୟା । ମଞ୍ଚାଭିନୟରେ ନାଚୁଥିଲେ । ସମ୍ପ୍ରତି ଡାଃ ବିଶ୍ୱାଳଙ୍କୁ ବିବାହ କରିଛନ୍ତି ।










## ରଘୁନାଥ ପାଣିଗ୍ରାହୀ

ଶିଳ୍ପୀଙ୍କ ପିତାଙ୍କ ନାମ ନୀଳମଣି ପାଣିଗ୍ରାହୀ । ବାପାଙ୍କ ଠାରୁ ଗୀତ ଗୋବିନ୍ଦ ଓ ଭଜନ ପ୍ରଭୃତି ଶିକ୍ଷା କରିବାର ସୁଯୋଗ ପାଆନ୍ତି । ଗୁଣପୁର ହାଇସ୍କୁଲରେ ଅଧ୍ୟୟନ ସମୟରେ ଅଭିନୟ ଓ ସଙ୍ଗୀତ ନିର୍ଦ୍ଦେଶନାର ସୁଯୋଗ ଲାଭ କରନ୍ତି । ହନୁମାନଙ୍କ ମନ୍ଦିରରୁ ସ୍ୱରରାଗିଣୀ ଶିକ୍ଷା କରିଥିବାରୁ ସେ ତାଙ୍କର ପରମଗୁରୁ ।

୧୯୪୬ ବ୍ରହ୍ମପୁର ସଂଗୀତ ସମ୍ମିଳନୀ ଓ ୧୯୪୭ ପୁରୀ କଟକ ଓ ସଂଗୀତ ପ୍ରତିଯୋଗିତାରେ ପ୍ରଥମ ସ୍ଥାନ ଅଧିକାର କରନ୍ତି । ୧୯୪୮ଠାରୁ କଟକ ବେତାର କେନ୍ଦ୍ରରୁ ସଙ୍ଗୀତ ବ୍ରଡ଼କାଷ୍ଟିଂ ହେଉଛି ।

୧୯୫୬ ସାଲରେ ମାନ୍ଦ୍ରାଜ ସଙ୍ଗୀତ ଏକାଡେମୀର ନିମନ୍ତ୍ରଣକ୍ରମେ ସେଠାରେ ଗୀତଗୋବିନ୍ଦ ପରିବେଷଣ, ତାପରେ ଏ. ଭି. ଏମ୍‌ର 'ସଂଗମ', ଲତାଙ୍କରେ

କଣ୍ଠଧାନ କରନ୍ତି । ତାପରେ ଆନ୍ତ୍ରେକାଓ୍ୱାଲୀ, ବାଙ୍ଗାରୁଭୂମ୍, ଅମର ସନ୍ଦେଶମ ପ୍ରଭୃତି ତେଲଗୁ ଛବିରେ ତାଙ୍କର ସଙ୍ଗୀତ ପରିବେଷଣ ।

ବମ୍ବେରେ ସଙ୍ଗୀତ ନିର୍ଦ୍ଦେଶକ ଶ୍ରୀ ବସନ୍ତ ଷାର୍ଟ-ଦେଶାଇଙ୍କ ଠାରୁ ସଙ୍ଗୀତ ନିର୍ଦ୍ଦେଶନା ଶିକ୍ଷା କରିବା ସମୟରେ ନୃତ୍ୟ ପଟ୍ଟୟସୀ ସଂଯୁକ୍ତାଙ୍କ ସହ ପରିଣୟ ହୁଏ ।

ସେ କେତେକ ଓଡ଼ିଆ ଚିତ୍ରରେ ମଧ୍ୟ କଣ୍ଠଦାନ କରିଛନ୍ତି । ଭାରତ ବାହାରେ ତାଙ୍କର ସୁନାମ ହୋଇଛି । ଗୀତଗୋବିନ୍ଦର ସୁର ପାଇଁ ସେ ବିଶେଷ ପରିଚିତ । ସଂପ୍ରତି ଅବସ୍ଥାନ ଭୁବନେଶ୍ୱର ।

●

## ଅକ୍ଷୟ ମହାନ୍ତି



କଣ୍ଠରେ ଅନେକ କୋହ, ହସ, କାନ୍ଦ, ଜୀବନ ଯୌବନ ସବୁ କିଛି… କୁଳୋଲ (କେନ୍ଦ୍ରାପଡ଼ା)ର ଶ୍ରୀ ବିଚିତ୍ରାନନ୍ଦ ମହାନ୍ତିଙ୍କର ପୁତ୍ର ଶ୍ରୀ-ଅକ୍ଷୟ ମହାନ୍ତି ଯେ ଏକ ବିଶିଷ୍ଟ କଣ୍ଠ ଶିଳ୍ପୀ ହେବେ ତାହା କେହି ଭାବି ନ ଥିଲେ । ଷ୍ଟୁଆର୍ଟ କଲେଜରୁ ଆଇ. ଏସ୍.ସି. ରେଭେନ୍ସାରୁ ବି.ଏ. ତାପରେ ମଧୁସୂଦନ ଆଇନ କଲେଜରେ ଆଇନ ଶିକ୍ଷା । ବୟସ ସେ କହିବାକୁ ନାରାଜ କାରଣ ଅଭିନେତା ଅଭିନେତ୍ରୀ ତ ବୟସ କହନ୍ତି । କିନ୍ତୁ ସେତ ତାଙ୍କଠାରୁ ଅଧିକ ବଡ ନାୟକ ।

୧୯୫୫ ଠାରୁ ସେ [illegible] । ପ୍ରଥମ ରେକର୍ଡ଼ଓ ଗୀତ କାଳୀପଟ୍ଟନାୟକଙ୍କର ମଧ୍ୟ ଫଳଭରେ ଭମର…… । ୧୯୫୬ରୁ [illegible] ଦକ୍ଷୀରେ ତାଙ୍କ ପରିଗୃଳିତ ସମ୍ବେତ [illegible] ଅଧିକାର କରେ । ବର୍ତ୍ତମାନ ସୁଦ୍ଧା ସେନୋଲ କମ୍ପାନୀ ଓ ଏଚ. ଏମ. ଭି. କମ୍ପାନୀ ଦ୍ୱାରା ୪୬ଟି ଗୀତ ରେକର୍ଡ଼ ହୋଇ ବଜାରରେ ବିକ୍ରୀ ହେଉଛି । [illegible]ଙ୍କର ୭୦ଟି ରେକର୍ଡ ପ୍ରସ୍ତୁତ ହୋଇଥିବା ସ୍ଥଳେ ଅକ୍ଷୟ ବାବୁଙ୍କର କମ ବୟସ ମଧ୍ୟରେ ୪୬ଟି ରେକର୍ଡ଼ ହୋଇ ପାରିଛି, ବଙ୍ଗଳାରେ ଗୋଟିଏ ଗୀତ ରେକର୍ଡ଼ ଖୁବ୍ ନାଁ କରିଛି ।

ସେ ମଲ୍ଲଜନ୍ମ, କଏ କାହାର, ସଂସାର, ଘର ବାହୁଡ଼ାର ସଂଗୀତ ନିର୍ଦ୍ଦେଶକ, ଗୀତ ଗାଇଛନ୍ତି ମା, କା, ସ୍ତ୍ରୀ ସଂସାର, ଅମଡ଼ାବାଟ, ଅଭିନେତ୍ରୀ, ମାଟିର ମଣିଷ, ଅଭିନ-ମେଘ, ମାଣିକ ଯୋଡ଼ି, କଏ କାହାର, ବନ୍ଧନ, କଂସ, ପରିଣାମ, ମଲ୍ଲଜନ୍ମ, ସ୍ୱର୍ଗ, ଘର ବାହୁଡ଼ାରେ । ସେ ଗୀତ ରଚନା କରିଛନ୍ତି ସୁନାର ଦୁନିଆ ତୋରୁ (ପରିଣାମ) ଝୁମି ଝୁମି ଆସେ ଅଖି ···ରଙ୍ଗ ସେ ଦେଖେ ବନ୍ଧୁ...( ସ୍ତ୍ରୀ ) ଚକୋଇ ଚକୋଇ......ବଂଧନର ସାତସାତ ..... ଏବଂ ସ୍ୱର୍ଗର-ସବୁ ଗୀତ ।

ସେ ୧୯୬୭ ରାଷ୍ଟ୍ରପତି ପୁରସ୍କାର ପ୍ରାପ୍ତ ଶ୍ରୀ ଫିଲ୍ମିସର ମଲ୍ଲଜନ୍ମର ପ୍ରଯୋଜକ । ତାଙ୍କର ବଡ଼ ଭଉଣୀ ସୁଲକ୍ଷଣା ପଟ୍ଟନାୟକ ଜଣେ ବିଶିଷ୍ଟ କଣ୍ଠ ଶିଳ୍ପୀ ତାଙ୍କ ଦ୍ୱାରା ଶ୍ରୀମନ୍ଦାକ୍ରି ପ୍ରଭାବିତ ।

ତାଙ୍କର ଗୋଟିଏ ଗୀତ କବିତା ବହି ପ୍ରକାଶ ପାଇଛି । ସେ ଜଣେ ଆଧୁନିକ ଗଳ୍ପ ଲେଖକ ମଧ୍ୟ । ଓଡ଼ିଶାରେ ଓ ଓଡ଼ିଶା ବାହାରେ ଶତାଧିକ ଅନୁଷ୍ଠାନରେ ସଙ୍ଗୀତ ପରିବେଷଣ କରିଛନ୍ତି । ତାଙ୍କୁ ଭବିଷ୍ୟତ ସମ୍ପର୍କରେ ପଚାରି ଉତ୍ତର ଦେଇ କହିଲେ ଅନ୍ଧାର । ସମ୍ପ୍ରତି ଅବସ୍ଥାନ ମାନସିଂହ ପାଟଣା, କଟକ—୮ ।



## ମହମ୍ମଦ ସିକନ୍ଦର ଆଲମ



କଟକର କେଶରପୁରରେ କଣ୍ଠଶିଳ୍ପୀ ମହମ୍ମଦ ସିକନ୍ଦର ଆଲମ ଜନ୍ମଗ୍ରହଣ କରି-ଥିଲେ । ତାଙ୍କର ପିତା ମହମ୍ମଦ ଶାହିଦ ଆଇ. ପି.ଏସ ଥିଲେ । ୧୯୫୮ରେ ଆକାଶବାଣୀ କଟକ କେନ୍ଦ୍ରରେ ପ୍ରଥମ ସଂଗୀତ ପରି-ବେଷଣ କରନ୍ତି ।

ପ୍ରଥମ ଚଳଚ୍ଚିତ୍ର ସଂଗୀତ ପରିବେଷଣ କରନ୍ତି ଲକ୍ଷ୍ମୀରେ । ତାପରେ ନୂଆବୋଉ, ମାଣିକ ଯୋଡ଼ି, ନବଜନ୍ମ, ସୂର୍ଯ୍ୟମୁଖୀ, ଜୀବନ-ସାଥୀ, ଅମଡ଼ା ବାଟ, ଅଭିନେତ୍ରୀ, ବନ୍ଧନ, ଓ ଅଭିନମେଘ ।

• ଘୁଣିଆ ଝାଡ଼ିଲେ ଡାହାଣୀ ..,ସାଗରେ ଅଧୀର ନୀଳ ତରଂଗ, ଯାନ୍ତ୍ରାବୃନ୍ଦ କହିଲେ କଥା ବୁଝିବେନା..,... ପ୍ରଭୃତି ଗୀତର ଝଙ୍କାର ଶ୍ରୋତାମାନଙ୍କ ନିକଟରେ ଅସମ୍ଭବ ଭାବେ ଆଦୃତ ହୋଇପାରିଛି ।

ସେ ଶାସ୍ତ୍ରୀୟ ସଙ୍ଗୀତରେ ଡିଗ୍ରୀଲାଭ କରିଛନ୍ତି । ବିଶିଷ୍ଟ ସଙ୍ଗୀତଜ୍ଞ ବାଳକୃଷ୍ଣ ଦାସ ଓ ଭୁବନେଶ୍ୱର ମିଶ୍ର ତାଙ୍କର ଗୁରୁ ।

ସମ୍ପ୍ରତି ଓଡ଼ିଶା ସରକାରଙ୍କ ଭୁବନେଶ୍ୱରସ୍ଥ କୃଷି ନିର୍ଦ୍ଦେଶାଳୟରେ କାର୍ଯ୍ୟ କରୁଛନ୍ତି ।

●

## ପ୍ରଣବ କିଶୋର ପଟ୍ଟନାୟକ



ପିତା ଲଲମୋହନ ପଟ୍ଟନାୟକ ଖୁବ ସଂଗୀତ ପ୍ରିୟ ଥିଲେ । ଛ ବର୍ଷ ବୟସରେ ଶିଶୁ ସଂସାର ରେ ଗୀତ ଗାଇ ସେ ହାଇଦ୍ରାବାଦରେ ୨ ବର୍ଷ ଶାସ୍ତ୍ରୀୟ ସଂଗୀତ ଶିକ୍ଷା କରି-ଥିଲେ ଏବଂ କଟକର ନ୍ୟାସନାଲ ମ୍ୟୁଜିକ ଆସୋସିଏସନରୁ ମଧ୍ୟ ୩ବର୍ଷ ଅସ୍ଥାୟୀ ସଂଗୀତ ଶିକ୍ଷା କରିଥିଲେ । ୧୯୫୫ରୁ ଆକାଶବାଣୀର ଶିଳ୍ପୀ । ଦିଲ୍ଲୀର ଜାତୀୟ କାର୍ଯ୍ୟକ୍ରମ ତଥା କଲିକତା ବମ୍ବେରେ ମଧ୍ୟ ଗୀତ ଗାଇଛନ୍ତି । କା ଓ ଅରୁନ୍ଧତୀରେ ସେ କଣ୍ଠଦାନ କରିଛନ୍ତି । ହିନ୍ଦୀ ଚିତ୍ର ଚିମ୍ନି-ନକା ଧୂଆଁ ରେ ମଧ୍ୟ ଗାଇଛନ୍ତି ।

ଶ୍ରୀ ପଟ୍ଟନାୟକ ଜଣେ ଲୋକପ୍ରିୟ କଣ୍ଠଶିଳ୍ପୀ ।

●

## ଗୀତା ପଟ୍ଟନାୟକ



ଷଷ୍ଠ ଶ୍ରେଣୀରୁ ବାପା ଓ ଅପାଙ୍କର ପ୍ରେରଣାଫଳରେ ସେ କଣ୍ଠ ସଂଗୀତରେ ଉତ୍ସାହିତ ହୁଅନ୍ତି । ୧୯୬୫ କିଶୋର ଚକ୍ରରେ ଯୋଗଦାନ ପରେ କଳା ବିକାଶ କେନ୍ଦ୍ରରେ ନିୟମିତ ସଂଗୀତ ଶିକ୍ଷା ଆରମ୍ଭ ହୁଏ ଛ ବର୍ଷ । ୧୯୬୭ରେ ସେ ଭକ୍ତ ଜୟନ୍ତୀରେ ରୌପ୍ୟ ଫଳକ ଲାଭକରନ୍ତି । ନଭେମ୍ବର ୧୯୭୦ରେ ଆକାଶବାଣୀ କଟକରୁ ତାଙ୍କ ଗୀତ ପରି-ବେଷଣ ହେଉଛି । ସେ ବର୍ତ୍ତମାନ କ୍ଷିତୀଶଚନ୍ଦ୍ର ମୈତ୍ରଙ୍କଠାରୁ ଶାସ୍ତ୍ରୀୟ ସଂଗୀତ ଶିକ୍ଷା କରୁଛନ୍ତି ।

କୁମାରୀ ଗୀତା ଭଦ୍ରକ କଲେଜ, ବାଣୀ ବିହାର, ଫେରୋକ୍ରମ ପ୍ରୋଜେକ୍ଟ, ରାଉରକେଲା ସାରକାରଖାନାର ବିଭିନ୍ନ ଉତ୍ସବରେ ଗୀତଗାଇ ଶ୍ରୋତା ମାନଙ୍କ ଠାରେ ଆଦୃତ ହୋଇଛନ୍ତି ।

ପୂଜା ଉପଲକ୍ଷେ ତାଙ୍କର ବଜନେ ବଜାଇ ବେଣୁ, ପରଦେଶୀଆରେ ଭରସା ନାହିଁ, ତୋ ବହିଣୀ ସୁନ ମୋର ଭରସା ନାହିଁ, କହଲେ ଚଉଲ ଲୁଣବୋଲି ଯା'ର ନାଁ ଟି ରେକର୍ଡ଼ ଏଚ.ଏମ.ଭି ରେକର୍ଡ଼ କମ୍ପାନୀ ଦ୍ୱାରା ପ୍ରସ୍ତୁତ ହୋଇଛି । ଭଜନ ଓ ଆଧୁନିକ ଗୀତ ଗାଇବାକୁ ଭଲପାଆନ୍ତି । ଗୀଟାର ତାଙ୍କର ପ୍ରିୟ ବାଦ୍ୟଯନ୍ତ୍ର ।

ସେ ୧୯୫୩ ଜୁଲାଇ ମାସରେ କଟକରେ ଜନ୍ମଲାଭ କରିଥିଲେ । ପିତା ଶ୍ରୀ ସୁରେନ୍ଦ୍ର ଚନ୍ଦ୍ର ପଟ୍ଟନାୟକ ସରକାରୀ ଚାକିରିରୁ ଅବସର ନେଇଛନ୍ତି । କୁମାରୀ ଗୀତା ପଟ୍ଟନାୟକ ବର୍ତ୍ତମାନ ଶୈଳବାଳା ମହିଳା କଲେଜ ଶେଷବର୍ଷ ଉପାଧି ଶ୍ରେଣୀର ଛାତ୍ରୀ ।

●

## ପ୍ରଫୁଲ୍ଲ କର



“କମଳା ଦେଶ ରାଜକୁମାର” ପ୍ରଫୁଲ୍ଲ କର ବି. ଏ. ଏଲ୍. ଏଲ୍. ବି ପାଶ୍ କରିଛନ୍ତି । ସଙ୍ଗୀତରେ ପୁନାରୁ “ସଙ୍ଗୀତ ବିଶାରଦ” ଯୋଗ୍ୟତା ମଧ୍ୟ ହାସଲ କରିଛନ୍ତି । ବେତାର କଣ୍ଠଶିଳ୍ପୀ ରୂପେ ସୁପରିଚିତ । ନିଜେ ସ୍ୱର ସଂଯୋଜନା କରନ୍ତି । “ଝରଣା” ଚିତ୍ରରେ ବମ୍ବେର ଦସ୍ତାଗିର୍ଙ୍କ ସହକାରୀ ଭାବେ କାର୍ଯ୍ୟ କରିଛନ୍ତି । ମାତ୍ର ଚିତ୍ରଟି ଅଧା ତିଆରି ଅବସ୍ଥାରେ ରହିଯାଇଛି । ସେ ନିଜେ ଜଣେ ଗୀତିକାର ମଧ୍ୟ । ସମୟୋପଯୋଗୀ ବିଷୟକୁ ବିଶିଷ୍ଟ ଶୈଳୀରେ ପ୍ରକାଶ କରି ଶାସ୍ତ୍ରୀୟ ଓ ପଲ୍ଲୀ ସଙ୍ଗୀତର ସମନ୍ୱୟରେ ସ୍ୱର ସଂଯୋଜନା କରି ଗାଇବା ତାଙ୍କର ବିଶେଷତ୍ୱ । “ଶ୍ରୀ ଶ୍ରୀ ପତିତପାବନ”ରେ ସେ କଣ୍ଠଦାନ କରିଛନ୍ତି । ଏଚ. ଏମ. ଭି କୃତ ତାଙ୍କର ପ୍ରତ୍ୟେକ ରେକର୍ଡ଼ ଲୋକପ୍ରିୟ ହୋଇପାରିଛି । ସଂପ୍ରତି ଅବସ୍ଥାନ ବେପାରି ସାହି, କଟକ ।

●

# ତୃପ୍ତି ଦାସ



ନାଁ ସହିତ ଚେହେରାର ଅବିକଳ ସାମଞ୍ଜସ୍ୟ । ହସହସ ମୁହଁ । ଡାକ ନାଁ ତାନି······ସା ରେ ଗା ମା ପା ଧା ନି ତେଣୁ ସଂଗୀତର ଝଙ୍କାର ଆଜନ୍ମରୁ । କୁମାରୀ ତୃପ୍ତିଙ୍କ ଜନ୍ମ କଳାହାଣ୍ଡିର ଭବାନୀପାଟଣାରେ ୧୯୫୬ ସାଲରେ । ତାଙ୍କର ବାପା ମା, ଭାଇ ଭଉଣୀ ସମସ୍ତେ ସଂଗୀତ ପ୍ରିୟ, ଶିଳ୍ପୀ । ବଡ଼ ଭଉଣୀ ଜ୍ୟୋତ୍ସ୍ନା ଦାସଙ୍କ ପ୍ରେରଣାରେ ସେ ଗୀତ ଶିକ୍ଷା କରନ୍ତି । ସେ ଲଘୁ ସଂଗୀତ ଶିକ୍ଷା କରନ୍ତି ଈଶ୍ୱର ରାୟଙ୍କ ଠାରୁ । ସେ ପ୍ରଥମେ ଶିଶୁସଂସାରରେ ୫ମ ଶ୍ରେଣୀରେ ଗାଇବା ଆରମ୍ଭ କଲେ । ସ୍ତୁତକଳା ମଣ୍ଡପ ଓ ପରେ କଳାବିକାଶ କେନ୍ଦ୍ରରୁ ସଂଗୀତଶ୍ରୀ ଉପାଧି ପାଇଛନ୍ତି ।

ସଂଗୀତ ସାଧନ ଓ ଶିକ୍ଷାରେ ଅକ୍ଷୟ ମହାନ୍ତି, ବାଳକୃଷ୍ଣ ଦାଶ, ନବୀନ ପଟ୍ଟନାୟକ, କ୍ଷିତୀଶଚନ୍ଦ୍ର ମୈତ୍ର (ଶାସ୍ତ୍ରୀୟ ସଂଗୀତ) ସାହାଯ୍ୟ ସହଯୋଗ କରିଛନ୍ତି । ବୁର୍ଲା ଇଞ୍ଜିନିୟରିଂ କଲେଜ, କୁମାର ଉତ୍ସବ କେନ୍ଦ୍ରାପଡ଼ା, ରାଉରକେଲା, ଭଦ୍ରଖ ପ୍ରଭୃତି ଅନେକ ସ୍ଥାନରେ ଗୀତ ପରିବେଷଣ କରି ପ୍ରଶଂସିତ ।

ଏତେ ଅଳ୍ପ ବୟସରେ ତାଙ୍କର ୪ଟି ରେକର୍ଡ଼ ଯୋଡ଼ିଯୋଡ଼ି ବଶୀ, ବନବୁ ପକ୍ଷୀ ସେଁଭ, ମନ ମଧୁମତୀ, ଅଳ୍ପ ଦନ ମାଙ୍ଗେ ତୋର ପ୍ରୀତ...ହୋଇପାରନ୍ତି । ଅଦନ ମେଘ, ସଂସାର, ଘର ବାହୁଡ଼ାରେ ଯେ ଗୀତ ଗାଇଛନ୍ତି । ତୃତୀୟ ଶ୍ରେଣୀ ଠାରୁ ଛ'ବର୍ଷଧର ସେ ରେଭେନ୍ସା ବାଳିକା ବିଦ୍ୟାଳୟରେ ଲଘୁ ସଂଗୀତରେ ପ୍ରଥମ ପୁରସ୍କାର ପାଇଛନ୍ତି । ୧୯୭୨ରେ ମାଟ୍ରିକ୍ୟୁଲେସନ ପରୀକ୍ଷା ଦେବେ ।

ପିତା ଅବସରପ୍ରାପ୍ତ ଆସିଷ୍ଟାଣ୍ଟ ସେଟେଲମେଣ୍ଟ ଅଫିସର ଶ୍ରୀ ବଂଶୀମୋହନ ଦାସ । ଅବସ୍ଥାନ ନିମସାହି, କଟକ ।



## ବୀଣା ଦେବୀ

ବର୍ତ୍ତମାନ କଣ୍ଠଶିଳ୍ପୀ ଭାବେ ପରିଚିତ ସମସ୍ତ ଗାୟକ ଗାୟିକାଙ୍କର ବ ସେ ବୀଣା ନାନୀ । କାରଣ ଆକାଶବାଣୀ କଟକରେ ସେ ଜଣେ ବରିଷ୍ଠ କଣ୍ଠଶିଳ୍ପୀ । କେଦାରଗୌରୀ, ଜୟଦେବ ପ୍ରଭୃତି ଓଡ଼ିଆ ଚିତ୍ରରେ କଣ୍ଠଦାନ କରିଛନ୍ତି । ତାଙ୍କର ୫ଟି ଉପନ୍ୟାସ ଓ କ୍ଷୁଦ୍ର ଗଳ୍ପ ସଙ୍କଳନ ପ୍ରକାଶ ପାଇଛି । ସମ୍ପ୍ରତି ଆକାଶବାଣୀ କଟକ କେନ୍ଦ୍ରର ସହକାରୀ ପ୍ରଯୋଜକ । ଅବସ୍ଥାନ ଚନ୍ଦନତେଲେଙ୍ଗା ବଜାର, କଟକ ।




## ସଂଗୀତ ନିର୍ଦ୍ଦେଶକ : ବାଳକୃଷ୍ଣ ଦାଶ

ପୁରୀଜିଲ୍ଲା ବାଳକାଟି ଗାଁରେ ୧୯୨୫ ମସିହାରେ ଏକ ମଧ୍ୟବିତ୍ତ ନୈଷ୍ଠିକ ବ୍ରାହ୍ମଣ ପରିବାରରେ ଜନ୍ମ । ସେ ଗୀତ ବୋଲିବାର ପ୍ରଥମ ପ୍ରେରଣା ପାଇଥିଲେ ସ୍ୱର୍ଗତଃ କୃଷ୍ଣଚନ୍ଦ୍ର ମହାନ୍ତିଙ୍କ ଠାରୁ । ନାମରେ ଗୋକୁଳଚନ୍ଦ୍ର ଶ୍ରୀଚନ୍ଦନ ତାଙ୍କୁ କଲିକତା ନେଇଗଲେ । ଇତିମଧ୍ୟରେ ସେ ଲକ୍ଷ୍ମୀକାନ୍ତ ସଙ୍ଗୀତ ବିଦ୍ୟାଳୟରେ ଦୁଇ ବର୍ଷ ଶିକ୍ଷା ଶେଷ କରିଥିଲେ । କଲିକତାରେ ବରିଷ୍ଠ ସଂଗୀତ ନିର୍ଦ୍ଦେଶକ ଶ୍ରୀ ରାଇଚାନ୍ଦ ବଡ଼ାଲଙ୍କ ଘରେ ରହି ନୂତନ ଜୀବନ ଆରମ୍ଭ ହେଲା । ସେଠାରେ ଓସ୍ତାଦ୍ ବଡ଼େ ଗୁଲାମ ଅଲ୍ଲୀ, ଧୀରେନ୍ଦ୍ରଚନ୍ଦ୍ର ମିତ୍ରଙ୍କଠାରେ ଶାସ୍ତ୍ରୀୟ ସଂଗୀତ ଶିକ୍ଷା କଲେ ।

କିଛିକାଳ ଆକାଶବାଣୀ କଲିକତା କେନ୍ଦ୍ରରେ ଓଡ଼ିଆ ବିଭାଗରେ କଣ୍ଠଦାନ କରିଥିଲେ । ତାଙ୍କର ପ୍ରଥମ ରେକର୍ଡ 'ବୋଲ ବୋଲ ସଜନୀରେ' । ୧୯୪୮ରେ କଟକ ରେଡ଼ିଓ ଷ୍ଟେସନରେ ସଂଗୀତ ସଂଯୋଜକ ହେଲେ । ପ୍ରଥମେ ସେ ସଂଗୀତ ପରିଚାଳନାରେ ରଞ୍ଜିତ ରାୟଙ୍କ 'ଶ୍ରୀଜଗନ୍ନାଥ' ଛବିରେ ସାହାଯ୍ୟ କରିଥିଲେ । ଶ୍ରୀ ବାଳକୃଷ୍ଣ ଦାଶ ସର୍ବାଧିକ ଓଡ଼ିଆ ଛବିରେ ସଂଗୀତ ନିର୍ଦ୍ଦେଶନା ଦେଇଛନ୍ତି । ନୂଆବୋହୂ, ଲକ୍ଷ୍ମୀ, ଦସ୍ୟୁ ରତ୍ନାକର, ଅମଡ଼ାବାଟ, ଅଭିନେତ୍ରୀ ପ୍ରଭୃତି ।

ଶ୍ରୀ ବାଳକୃଷ୍ଣ ଦାଶ ଓଡ଼ିଶାରେ ଶ୍ରେଷ୍ଠ ସଂଗୀତ ଶିଳ୍ପୀ ରୂପେ ସୁପ୍ରତିଷ୍ଠିତ ।



# ସଙ୍ଗୀତ ନିର୍ଦ୍ଦେଶକ : ଭୁବନେଶ୍ୱର ମିଶ୍ର



ବିଶିଷ୍ଟ ସଙ୍ଗୀତ ନିର୍ଦ୍ଦେଶକ ଭୁବନେଶ୍ୱର ମିଶ୍ର ଜଣେ ବିଶିଷ୍ଟ ବାୟଲିନ ବାଦକ । ସେ ଓଡ଼ିଆଚିତ୍ର ମା, ପରିଣାମ, କା, ସ୍ତ୍ରୀ, ବନ୍ଧନର ସଙ୍ଗୀତ ନିର୍ଦ୍ଦେଶକ । ବାଳକୃଷ୍ଣ ଦାଶଙ୍କ ସହ ଶ୍ରୀଜ-ଶ୍ରୀଜର ସଂଗୀତ ନିର୍ଦ୍ଦେଶନାରେ ସହଯୋଗିତା କରିଥିଲେ । ୧୯୭୦ ଜୁନ ମାସରେ ସେ ରୁଷିଆ, ଯୁଗୋସ୍ଲାଭିଆ ପ୍ରଭୃତି ଦେଶମାନଙ୍କରେ କଳା ଓ ପ୍ରାଦେଶିକ ନୃତ୍ୟ ସଂଗୀତ ପ୍ରଚଳନ ପାଇଁ ଭ୍ରମଣ କରିଥିଲେ । ସଂପ୍ରତି କଟକରେ ଆକାଶବାଣୀର ସଙ୍ଗୀତ ବିଭାଗର ପ୍ରଯୋଜକ ।

●

# ନିର୍ଦ୍ଦେଶକ : ଲେଖକ : ଗୀତକାର ସାରଦା ପ୍ରସନ୍ନ ନାୟକ



୧୯୨୬ ସାଲରେ ଧୁଲେଶ୍ୱର ଠାରେ ଜନ୍ମଗ୍ରହଣ କରିଥିଲେ । ଏମ୍. ଏ., ବି. ଇଡ଼ି ପରେ ଜୀବନର ବିଭିନ୍ନ କର୍ମକ୍ଷେତ୍ର ପରେ ସଂପ୍ରତି ଆକାଶବାଣୀର ଶିକ୍ଷାବିଭାଗର ସହକାରୀ ପ୍ରଯୋଜକ ।

୧୯୪୭ ଠାରୁ ବିଧିବଦ୍ଧ ଭାବରେ ନାଟ୍ୟ ନିର୍ଦ୍ଦେଶନା, ଅଭିନୟ କରିଛନ୍ତି । ୧୯୫୧ରେ ତାଙ୍କର ନାଟକ ସୁନାମାଟି ଅଶ୍ରୁପୂର୍ଣ୍ଣା ବ' ରୂପରେ ପ୍ରଦର୍ଶିତ ହୁଏ । ପରିଶୋଧ, ସଙ୍ଗୀତ ନାଟକ ରଚନା କରିଛନ୍ତି । ତା ବ୍ୟତୀତ ଶତାଧିକ ନାଟକର ନିର୍ଦ୍ଦେଶକ । ୧୯୫୭ରେ ଚିତ୍ର ଜଗତରେ ପ୍ରବେଶ । ଜୟଦେବ ଚିତ୍ରର ଗଳ୍ପ, ଚିତ୍ରନାଟ୍ୟ ତଥା ସହନିର୍ଦ୍ଦେଶକ ମଧ୍ୟ । ଲକ୍ଷ୍ମୀ, କା, ସ୍ତ୍ରୀ'ସଂସାରର ଚିତ୍ରନାଟ୍ୟ, ଗୀତକାର, ନିର୍ଦ୍ଦେଶନା ବ୍ୟତୀତ ପ୍ରଯୋଜନା ସଙ୍ଗଠନରେ ମଧ୍ୟ ସଂପୃକ୍ତ । ପାର୍ବତୀ ଘୋଷଙ୍କର ଆଗାମୀ ଚିତ୍ର ଛମାଣଆଠଗୁଣ୍ଠର ଚିତ୍ରନାଟ୍ୟ ମଧ୍ୟ ଲେଖିଛନ୍ତି ।

ଲକ୍ଷ୍ମୀ ଓ ସ୍ତ୍ରୀରେ ଅଭିନୟ ମଧ୍ୟ କରିଛନ୍ତି । ଅଭିନେତା, ପ୍ରଯୋଜକ ପାର୍ବତୀଙ୍କର ସେ ବଡ଼ଭାଇ ।

●

## ସଂଳାପ ଲେଖକ : ଗୋପାଳ ଛୋଟରାୟ



ଗୋପାଳ ଛୋଟରାୟ ନାଟ୍ୟକାର ଭାବରେ ପରିଚିତ କିନ୍ତୁ ସେ ମଧ୍ୟ ଅଧିକାଂଶ ଓଡ଼ିଆ ଚିତ୍ରର ସଂଳାପ ଲେଖକ । ସେ ଶ୍ରୀଜଗନ୍ନାଥ, ମା, ନୂଆବୋଉ, ଅମଡାବାଟ, ଅଭିନେତ୍ରୀ, ମନ୍ଦିର ମସଜିଦ, ଭାଇ ଭାଇ କାହାର ପ୍ରଭୃତି ଚିତ୍ରର ସଂଳାପ ଲେଖିଛନ୍ତି । ଶ୍ରୀ ଛୋଟରାୟ ଅନେକ ବେତାର ନାଟକର ମଧ୍ୟ ରଚୟିତା । ସମ୍ପ୍ରତି ସେ ଆକାଶବାଣୀର ନାଟକ ବିଭାଗରେ କାର୍ଯ୍ୟ କରୁଛନ୍ତି ।

ଅବସ୍ଥାନ, ଆଲମଚାନ୍ଦ ବଜାର, କଟକ ।

●

## ସଂଗଠକ ଗୋପାଳ ଘୋଷ

ଶ୍ରୀ ଗୋପାଳ ଘୋଷ ଓଡ଼ିଆ ଚିତ୍ର ଜଗତରେ ଜଣେ ଜଣାଶୁଣା ବ୍ୟକ୍ତି । ଯେଉଁମାନେ ଶ୍ରୀ ଘୋଷଙ୍କୁ ଆଜି ଚଳଚିତ୍ର ପରିବେଷକ, ପ୍ରଯୋଜକ, ସଂଗଠକ ଭାବରେ ଜାଣିଛନ୍ତି ସେମାନେ ଆଶ୍ଚର୍ଯ୍ୟ ହେବେ ଯେ ସେ ମଧ୍ୟ ଶ୍ରୀ ଜଗନ୍ନାଥ, ଆମରି ଗାଁ ଝିଅ ପ୍ରଭୃତି ଚିତ୍ରରେ ଅଭିନୟ କରିଛନ୍ତି । ପରିବେଷକ ସଂସ୍ଥା ଶ୍ରୀଲୋକନାଥ ଚଳଚିତ୍ର ପରିବେଷକ କର୍ତ୍ତା ବ୍ୟତୀତ ସେ ଓଡ଼ିଆ ଚିତ୍ର ଲକ୍ଷ୍ୟସ୍ଥାନ ନିର୍ମାଣ ପାଇଁ ଉଦ୍ୟୋଗ କରୁଛନ୍ତି ।

●

## ଚିତ୍ର ନିର୍ଦ୍ଦେଶକ ନିତାଇ ପାଲିତ



ଓଡ଼ିଆ ଚିତ୍ର ନିର୍ଦ୍ଦେଶକ ଭାବେ ଶ୍ରୀ ପାଲିତଙ୍କ ଭୂମିକା ଗୁରୁତ୍ୱପୂର୍ଣ୍ଣ । କେଦାରଗୌରୀ, ଭାଇଭାଇ, ମା', ମଲ୍ଲଜହ୍ନ, ଭାଇ କାହାର, ବଂଧନର ନିର୍ଦ୍ଦେଶକ ଭାବେ ସେ ଚଳଚିତ୍ର ପ୍ରେମୀଙ୍କ ନିକଟରେ ପରିଚିତ । ମଲ୍ଲଜହ୍ନ ଏକ ଉତ୍କୃଷ୍ଟ ଚିତ୍ର ରୂପେ ସମସ୍ତଙ୍କର ଦୃଷ୍ଟି ଆକର୍ଷଣ କରେ । ଅନ୍ୟ ଦିଗରେ ଭାଇ କାହାର ଏକ ଲୋକପ୍ରିୟ ବ୍ୟବସାୟରେ ସଫଳ ଚିତ୍ର ରୂପେ ରେକର୍ଡ଼ ସୃଷ୍ଟି କରିଛି । ଭାଇ କାହାର ଚିତ୍ରନାଟ୍ୟ କାହାଣ...

ମଧ୍ୟ ଶ୍ରୀ ପାଲଙ୍କ ରଚନା କରନ୍ତି । ଅଗାମୀ ଓଡ଼ିଆ ଚିତ୍ର ଧରିତ୍ରୀ । ମନ ଅଂଶୀରେ କାହାଣୀ ଲେଖକ ଓ ନିର୍ଦ୍ଦେଶକ ମଧ୍ୟ ଶ୍ରୀ ନିତାଇ ପାଲଙ୍କ , ବର୍ତ୍ତମାନ ସେ ଜୀବନବୀମା କର୍ପୋରେସନର ଜଣେ ଦାୟିତ୍ୱପୂର୍ଣ୍ଣ କର୍ମଚାରୀ । ଅବସ୍ଥାନ—ଭଗତପୁର, କଟକ ।

●

## ସଂଳାପକାର ମନୋରଞ୍ଜନ ଦାସ



ବିଶିଷ୍ଟ ନାଟ୍ୟକାର ରୂପେ ଶ୍ରୀ ମନୋରଞ୍ଜନ ଦାସ ସୁପରିଚିତ । ଶ୍ରୀ ଦାସ କେଦାର ଗୌରୀ, ଚିତ୍ରର ସହଯୋଗୀ ନିର୍ଦ୍ଦେଶକ । ଆମରି ଗାଁ ଝିଅର ସଂଳାପ ଲେଖକ ମଧ୍ୟ । ପରୀକ୍ଷା ମୂଳକ ନାଟକ ଅରଣ୍ୟ ଫସଲ, ବନହଂସୀ, ଅମୃତସ୍ୟପୁତ୍ରାଃ ତାଙ୍କର ଚିନ୍ତାଶୀଳ ସୃଷ୍ଟି । ସମ୍ପ୍ରତି ସେ ଆକାଶବାଣୀ କଟକ କେନ୍ଦ୍ରର ନାଟକ ବିଭାଗରେ ମୁଖ୍ୟ । ଅବସ୍ଥାନ ପଥଗ୍ରସ୍ଥା, କଟକ-୩ ।

●

## ଗୀତିକାର ନାରାୟଣପ୍ରସାଦ ସିଂ

ଆକାଶବାଣୀର ସଙ୍ଗୀତ କାର୍ଯ୍ୟକ୍ରମରେ ପ୍ରତିଦିନ ଶ୍ରୀ ସିଂଙ୍କ ନାମ ଶୁଣାଯାଏ । କାରଣ ଏତେ ସଂଖ୍ୟକ ଗୀତ କାହାର ପରିବେଷଣ ହୋଇନାହିଁ । ସେହିପରି ଚଳଚ୍ଚିତ୍ରରେ ସର୍ବାଧିକ ସଂଗୀତର ରଚୟିତା ଶ୍ରୀ ନାରାୟଣ ପ୍ରସାଦ ସିଂ । ନୂଆବୋହୂ, ଅମଡ଼ାବାଟ, ନବଜନ୍ମ, ଅଭିନେତ୍ରୀ, ଭାଇଭାଉଜ ପ୍ରଭୃତି ଚିତ୍ରରେ ଗୀତିକାର ସେ । ସଂପ୍ରତି ରାଜ୍ୟ ସରକାରଙ୍କର ମନ୍ତ୍ରୀ ସ୍ତରରେ ଅବସ୍ଥାପିତ ।

## ସଂଗଠକ ଶ୍ରୀ ସୁରେନ୍ଦ୍ର ନାଥ ଦାସ

ଶ୍ରୀ ଦାସଙ୍କୁ ଓଡ଼ିଆ ଚିତ୍ର ଜଗତର ପ୍ରତିଷ୍ଠାତା କହିଲେ ଅତ୍ୟୁକ୍ତି ହେବନାହିଁ । କାରଣ 'ଶ୍ରୀ ଜଗନ୍ନାଥ' ପରି ଲୋକପ୍ରିୟ ଓଡ଼ିଆ ଚିତ୍ର ଆଜି ମଧ୍ୟ ଏକ ବିସ୍ମୟ । ଆଜିକୁ ଏକୋଇଶି ବର୍ଷ ତଳେ ସେ ଚିତ୍ର କଟକରେ ଶତାଧିକ ରଜନୀ ଚାଲିଥିଲା । ଶ୍ରୀ ଜଗନ୍ନାଥ ନିର୍ମାଣ ସଂସ୍ଥା ରୂପଭାରତୀ ଲିମିଟେଡ଼ର ମ୍ୟାନେଜିଂ ଡ଼ାଇରେକ୍ଟର ଥିଲେ ଶ୍ରୀ ସୁରେନ୍ଦ୍ର ନାଥ ଦାସ, ସେ ବନ୍ଧୁ ମହଲରେ 'ସୁରିବାବୁ' ନାମରେ ପରିଚିତ । ତାଙ୍କର ହାସ୍ୟରସମୂଳକ ସଙ୍ଗୀତ ରୂପକ ଆକାଶବାଣୀରୁ ପ୍ରଚାରିତ ହୁଏ । ଶ୍ରୀ

ଜଗନ୍ନାଥର ଲୋକପ୍ରିୟ ଗୀତ...ତୁମେ ଲେଉଟିଲ ନାହିଁ...ତାଙ୍କର ରଚନା । ସଂପ୍ରତି ଶ୍ରୀ ଦାସ ଓଡ଼ିଶା କୋଅପରେଟିଭ ଇନସ୍ୟୁରେନ୍ସ ସୋସାଇଟିର ସେକ୍ରେଟେରୀ ଏବଂ ଲାଇମ ଷ୍ଟୋନ କମ୍ପାନୀର ମ୍ୟାନେଜିଂ ଡାଇରେକ୍ଟର ।

●

## ଗୀତିକାର ନରସିଂହ ମହାପାତ୍ର

୧୯୨୬ ମସିହାରେ ଭଦ୍ରଖର କୋରଣ୍ଡ ଗ୍ରାମରେ ଜନ୍ମଗ୍ରହଣ କରିଥିଲେ । ସେ ଅନେକ ବେତାର ନାଟିକା, ଗୀତିକବିତା ରଚନା କରିଛନ୍ତି । ତାଙ୍କ ଲିଖିତ ଉଚ୍ଚକୋଟିର ନାଟିକା ଭାବରେ ଘରଠାକୁର, ଇନ୍‌କିଲାବ, ଅଳସୀ କୁସୁମ, ସଞ୍ଜ ସକାଳ, ବନ୍ଧନ, ବାଉଁଶରାଣୀ ପ୍ରଧାନ । ମା, ଜୟଦେବ, ନୂଆବୋଉ, ଅମଡ଼ାବାଟ, ନବଜନ୍ମ, କା, ଅରୁନ୍ଧତୀ, ପ୍ରଭୃତିର ଅନେକ ଗୀତ ରଚନା କରିଛନ୍ତି, ସଂପ୍ରତି ଆକାଶବାଣୀ ନାଟକ ବିଭାଗରେ ଅବସ୍ଥାପିତ ।

●

## ସଂଗୀତ ନିର୍ଦ୍ଦେଶକ ଶାନ୍ତନୁ ମହାପାତ୍ର

ଶ୍ରୀ ମହାପାତ୍ର ସୂର୍ଯ୍ୟମୁଖୀର ଗୀତରଚନା କରିବା ସଙ୍ଗେ ସଙ୍ଗେ ସଙ୍ଗୀତ ନିର୍ଦ୍ଦେଶନା ଦେଇଛନ୍ତି । ଅରୁନ୍ଧତୀର ମଧ୍ୟ ସଙ୍ଗୀତ ନିର୍ଦ୍ଦେଶକ । ବିଶେଷତ୍ୱ ଏହା ଯେ ତାଙ୍କର ନିର୍ଦ୍ଦେଶନାରେ ଲତା ମଙ୍ଗେସକର, ମାନ୍ନାଡେ, ମହମ୍ମଦରଫି ଆଶା ଓ ଉଷା ମଙ୍ଗେସକର ଗୀତ ଗାଇଛନ୍ତି ଏବଂ ୨ଟି ଚଳଚ୍ଚିତ୍ରର ରେକର୍ଡିଂ ବମ୍ବେରେ ହୋଇଛି । ସଂପ୍ରତି ଶ୍ରୀ ମହାପାତ୍ର ଭୁବନେଶ୍ୱରରେ ଖଣି ବିଭାଗର ଡେପୁଟି ଡାଇରେକ୍ଟର ।

●

# ଚଳଚିତ୍ର ଦୃଶ୍ୟ ପ୍ରତିଯୋଗିତା



ଏହି ଚିତ୍ରଟି ଓଡ଼ିଆ ଚଳଚିତ୍ରର ଗୋଟିଏ ଦୃଶ୍ୟ । ଦୁଇଜଣ ଅଭିନେତା ଅସ୍ପଷ୍ଟ । ପାଠକ ପାଠିକା ଯେକେହି ଚଳଚିତ୍ରର ନାମ ଏବଂ ଅଭିନେତା ଦୁଇଜଣଙ୍କର ନାମ ସଠିକ୍ ଉତ୍ତର ଦେଇ ୫୦ ପଇସାର ଡାକଟିକେଟ ସହ ନିମ୍ନରେ ଦିଆଯାଇଥିବା କୁପନ ଜାନୁଆରୀ ୩୦ ତାରିଖ ମଧ୍ୟରେ **'ଚଳଚିତ୍ର ଦୃଶ୍ୟ ପ୍ରତିଯୋଗିତା' ମାର୍ଫତ ସମ୍ପାଦକ ଜୀବନରଂଗ, ଷ୍ଟେସନରୋଡ, କଟକ—୨** ଠିକଣାରେ ପଠାଇବା ପାଇଁ ହେବ । ଡାକଟିକେଟ ଓ କୁପନ ନଥିଲେ ତାହା ବିଚାରକୁ ନିଆଯିବ ନାହିଁ । ସଫଳ ପ୍ରତିଯୋଗୀଙ୍କୁ ଟ୧୦.୦୦ ପୁରସ୍କାର ଦିଆଯିବ । ବିଚାରକ ମଣ୍ଡଳୀର ନିଷ୍ପତ୍ତି ଚୂଡ଼ାନ୍ତ ହେବ ।

ଚଳଚିତ୍ରର ନାମ ..........................................................

ଅଭିନେତା (ବାମ ପାର୍ଶ୍ୱ) .................... ଡାହାଣ ପାର୍ଶ୍ୱ ..............

ପ୍ରତିଯୋଗୀଙ୍କ ନାମ..........................................................

ଠିକଣା..........................................................

ବୟସ ........................ କର୍ମ ...................................

## ଓଡ଼ିଶାର ଚଳଚ୍ଚିତ୍ର ପରିବେଷକ

| | | |
|---|---|---|
| ୧ । | ଅମରଜ୍ୟୋତି ପିକଚରସ୍ , ଷ୍ଟେସନରୋଡ୍ , କଟକ-୨ | ରଣଧୀର ଦାସ |
| ୨ । | ଗ୍ରୁପ୍ସାବାଣୀ ଡିଷ୍ଟ୍ରିବ୍ୟୁଟରସ, ଓଡ଼ିଆ ବଜାର, କଟକ-୧ | ବାବୁଲାଲ ଦୋଷୀ |
| ୩ । | ଚନ୍ଦମ୍ , ଗଂଗାମଣ୍ଡଳ, କଟକ | ବାସୁଦେବ ନାୟକ |
| ୪ । | ଦେବ ଫିଲମ୍ସ, ହାଇକୋର୍ଟ ଭ୍ୟୁ, କଟକ | ଦେବରାଜ ପୃଷ୍ଟି |
| ୫ । | ଗୀତ ଗୁମ୍ଫା, ଚାନ୍ଦନୀକୋଣିଆ ବଗିଚା, କଟକ | ଏନ୍.କେ.ମିଶ୍ର |
| ୬ । | ଜେ. ଏମ. ଫିଲ୍ମ ଡିଷ୍ଟ୍ରିବ୍ୟୁଟର, ନୟାସଡ଼କ, କଟକ | ଏସ. ମୋଦି |
| ୭ । | ଲୋକନାଥ ଚଳଚ୍ଚିତ୍ର ପରିବେଷକ,ଚୌଧୁରୀବଜାର,କଟକ | ଗୋପାଳ ଘୋଷ |
| ୮ । | ଓରିଏଣ୍ଟ ଫିଲ୍ମ, ହରପୁର ରୋଡ଼, କଟକ | ଧ୍ରୁବପ୍ରସାଦ ଦାସ |
| ୯ । | ପାର୍ବତୀ ଘୋଷ, କାନିକା ରୋଡ୍, କଟକ | ଗୌରପ୍ରସାଦ ଘୋଷ |
| ୧୦ । | ପଞ୍ଚସଖା ପିକଚରସ, ଭଗତପୁର, କଟକ | ଧୀରେନ୍ଦ୍ର ବର୍ଣ୍ଣାଳ |
| ୧୧ । | ରୂପାଞ୍ଜଳୀ ଫିଲ୍ମସ୍ , ଚାନ୍ଦନୀକୋଣିଆ ବଗିଚା, କଟକ | ଚିନ୍ମୟ ପଟ୍ଟନାୟକ |
| ୧୨ । | ପୁଷ୍ପାଞ୍ଜଳୀ ଫିଲ୍ମସ୍ , ଜାଉଁଳିଆ ପଟି, କଟକ | |
| ୧୩ । | ରାଉତ ଫିଲ୍ମ ଏକ୍ସଚେଞ୍ଜ, ଲିଂକ ରୋଡ୍, କଟକ | |
| ୧୪ । | ଶ୍ରୀ ବାଲାଜୀ ପିକ୍ଚରସ୍, ନୟାସଡକ, କଟକ-୨ | |
| ୧୫ । | ଅଶୋକ ଫିଲ୍ମସ୍ , ବରଗଡ, ସମ୍ବଲପୁର | |
| ୧୬ । | ସଂଧ୍ୟା ଫିଲ୍ମସ୍, ଏ/୮୩, ସେକ୍ଟର-୫, ରାଉରକେଲା-୨ | |
| ୧୭ । | ଆଇଡ଼ିଏଲ ପ୍ରଡ଼କସନସ୍, ମିଶ୍ର ନିବାସ,ଝରପଡ଼ା, ସମ୍ବଲପୁର | |
| ୧୮ । | ସମ୍ବଲେଶ୍ୱରୀ ଫିଲ୍ମସ୍, ଗେଇଟି ରୋଡ଼, ସମ୍ବଲପୁର | |
| ୧୯ । | ଭୁବନେଶ୍ୱର ପିକ୍ଚରସ୍, ବ୍ରହ୍ମପୁର, ଗଞ୍ଜାମ | |
| ୨୦ । | ମିଲନ ପିକଚରସ୍ , କଲେଜ ଛକ, କଟକ-୩ | |
| ୨୧ । | ଶିବାଜୀ ଫିଲ୍ମସ୍, ବ୍ରହ୍ମପୁର, ଗଞ୍ଜାମ | |
| ୨୨ । | ଅଶୋକ ଫିଲ୍ମ କର୍ପୋରେସନ, ସମ୍ବଲପୁର | |

## ପ୍ରକାଶ ପାଉଥିବା ଓଡ଼ିଆ ଚଳଚ୍ଚିତ୍ର ପତ୍ରିକା

| | | | |
|---|---|---|---|
| ୧ । | ଚିତ୍ରପୁରୀ : ବର୍ଦ୍ଧମାନ କମ୍ପାଉଣ୍ଡ,କଟକ-୩ | ସଂପାଦକ | ବସନ୍ତ ପଟ୍ଟନାୟକ |
| ୨ । | ଚିତ୍ର ସାରଥୀ : ରାଜାବଗିଚା, କଟକ-୯ | ,, | ସୁବୋଧ ଆଚାର୍ଯ୍ୟ |
| ୩ । | ବାଣୀଚିତ୍ର:ବାଣୀଚିତ୍ର କାର୍ଯ୍ୟାଳୟ,ଭୁବନେଶ୍ୱର-୭ | ,, | ଶ୍ରୀଧରଚନ୍ଦ୍ର ଜେନା |

# ପୁସ୍ତକ ସମୀକ୍ଷା

**ଗୌରବ** ସଂପାଦକ : ଉମେଶଚନ୍ଦ୍ର ସନ୍ଥ : ମାସିକ : ମୂଲ୍ୟ: ଏକଟଙ୍କା
କେନ୍ଦୁଝରଗଡ଼, କେନ୍ଦୁଝର

ଶିଶୁପତ୍ରିକାର ଅଭାବ ସବୁବେଳେ ରହିଛି । ଓଡ଼ିଶାର କେନ୍ଦୁଝରରୁ ଗୌରବ ପ୍ରକାଶ ପାଇବା ବାସ୍ତବିକ ଗୌରବର କଥା । ପତ୍ରିକା ଗୋଟିଏ ବର୍ଷ ମଧ୍ୟରେ ଯଥାସମୟରେ ୧୨ଟି ସଂଖ୍ୟା ପ୍ରକାଶ ପାଇଛି । ଓଡ଼ିଆ ପତ୍ରିକାର ନିୟମିତ ପ୍ରକାଶନ କ୍ଷେତ୍ରରେ ଆଲୋଡ଼ନ ସୃଷ୍ଟି କରିଛି । ଅଂଗସଜ୍ଜା ଭଲ ହେଉଛି ମାତ୍ର ସମ୍ପାଦନାରେ ବିଷୟବସ୍ତୁ ନିର୍ବାଚନରେ ଅଧିକ ସତର୍କତା ଅବଲମ୍ବନ କରିବାକୁ ହେବ । ପିଲାଙ୍କ ପାଇଁ ଏପରି ଏକ ପତ୍ରିକାରେ ଧାରାବାହିକ ଉପନ୍ୟାସ ନଦେଲେ ଭଲ-ହେବ । ବରିଷ୍ଠ ଶିକ୍ଷକ, ଶିକ୍ଷାବିତ୍, ଶିଶୁଲେଖକଙ୍କ ଲେଖା ପ୍ରକାଶ ପାଇଲେ ଏହା ସର୍ବାଙ୍ଗ ସୁନ୍ଦର ହେବ । ପତ୍ରିକାର ଦୀର୍ଘଜୀବନ କାମନା କରୁ ।

**ବିଶ୍ୱଶିଶୁ :** ସମ୍ପାଦକ: ଅଧ୍ୟାପକ ଚିତ୍ତରଂଜନ ଦାସ:ମାସିକ-ମୂଲ୍ୟ:ଏକଟଙ୍କା
ମିସନ ରୋଡ଼, କଟକ-୧

ଗତ ଶ୍ରୀପଞ୍ଚମୀଠାରୁ ଏହା ନିୟମିତ ପ୍ରକାଶ ପାଉଛି । ଅନ୍ୟାନ୍ୟ ଶିଶୁପତ୍ରିକା ଅପେକ୍ଷା ଏହାର ବିଶେଷତ୍ୱ ଏଥିରେ ସଂସ୍କାରମୂଳକ ଗଳ୍ପ, ମହାପୁରୁଷଙ୍କ ଜୀବନୀ, ଲୋକପ୍ରିୟ କାହାଣୀ, ସ୍ୱାସ୍ଥ୍ୟ, ତଥା ବହୁ ଉପାଦେୟ ଲେଖା ଅଭିଜ୍ଞ ଓ ବରିଷ୍ଠ ଲେଖକଙ୍କ ଦ୍ୱାରା ପ୍ରକାଶ ପାଉଛି ।

ପତ୍ରିକାର ବହୁଳ ପ୍ରସାର କାମନା କରୁ ।

**ବାବନା ଭୂତ**

ଲେଖକ :ଯୁଗଳଚରଣ ଦାସ:ପ୍ରକାଶକ ବିଶ୍ୱଶିଶୁ ପବ୍ଲିକେସନ,କଟକ-୧
ମୂଲ୍ୟ : ଏକ ଟଙ୍କା

ପିଲାଙ୍କ ପାଇଁ ବହି ସରଳ, ସୁଖପାଠ୍ୟ ହେବା ଉଦ୍ଦେଶ୍ୟ । ବାବନାଭୂତ ଯଥାର୍ଥରେ ପିଲାଙ୍କ ମନରୁ ଭୂତ ନାହିଁ ଏକ ମିଥ୍ୟାଧାରଣା ଦୂର କରିବା ସଂଗେ ସଂଗେ ମନୋରଞ୍ଜକ ହୋଇପାରିଛି । ଗୋଟିଏ କାଳିଆଖି, ବାବନାଭୂତ, ଗୋଟିଏ ଚଳହାତ, ଇତ୍ୟାଦି ଗଳ୍ପ ଗୁଡ଼ିକରେ ଲେଖକ ଶ୍ରୀ ଦାସ ପିଲାଙ୍କ ମନରେ କାହାଣୀ ଛଳରେ ଭୂତ ନଥିବାର ଦୃଢ଼ ଧାରଣା ଦେଇପାରିଛନ୍ତି । ଗଳ୍ପଟି ପିଲା ବଡ ସମସ୍ତଙ୍କ ପାଇଁ ସୁଖପାଠ୍ୟ ହୋଇଛି । ପ୍ରଚ୍ଛଦପଟ ମଧ୍ୟ ଭଲ ହୋଇଛି ।

WITH COMPLIMENTS from TELEPHONE—77

# LAXMI TALKIES

RAMCHANDI LANE

PURI

NAME OF THE PROPRIETOR : PARTNERSHIP

YEAR STARTED : 1937

SEATING CAPACITY : 742

NET SALE : 771. 85

GROSS SALE ; 921. 20

FILMS SCREENED : ORIYA, ENGLISH, BENGALI, HINDI

SOUND : WESTREX CENTUNRY

MANAGER : H.K MISHRA

---

*With Compliments from* Telephone : 95

# KAILASH CHALACHITRA

CHARAMPA, BHADRAKH

BALASORE

NAME OF THE PROPRIETOR : PARTNERSHIP

YEAR STARTED : 1961

SEATING CAPACITY : 574

FILMS GENERALLY SCREENED :

ORIYA, BENGALI, TELGU, ENGLISH, HINDI

SOUND : RCA

MACHINE : VICTOR TRIPLE

MANAGER : R. C. DEY

With Best Compl. From Phone : 493

# VIJAYA TALKIES

BERHAMPUR, GANJAM

PROPRIETOR'S NAME : PARTNERSHIP
YEAR STARTED : 1953
SEATING CAPACITY : 1130
NET SALE: 778 . 20
FILMS SCREENED : ORIYA, HINDI, BENGALI, ENGLISH TELEGU
SOUND SYSTEM : ALTEC
MACHINE : BAURE B-8
MANAGER : VIJAYAKRUSHNA PADHI

---

Telephone : 11 & 11 A

# JYOTI CINEMA

BARREX
BERHAMPUR, GANJAM

PROPRIETOR'S NAME : K. NARAYAN RAO
YEAR STARTED : ABOUT 25 YEARS
SEATING CAPACITY : 1200
NET SALE : 825
FILMS SCREENED : HINDI, ORIYA, TELEGU
SOUND : SUPER SIMPLEX
PROJECTOR : SIMPLEX 4 STAR
MANAGER : DIRECT MANAGEMENT

Tele : Utkalscope Telephone : 41

*With Compliments from*

# UTKAL CINEMA

## OLD BERHAMPUR, GANJAM

NAME OF THE PROPRIETOR : PARTNERSHIP

YEAR STARTED : 1954

SEATING CAPACITY : 899

NET SALE 613.38

FILMS SCREENED :

ORIYA, BENGALI, HINDI, ENGLSH, TELEGU

SOUND & MACHINE : KALINGA BEWER B-12

MANAGER'S NAME : P. RAGHAB RAO

---

*With compliments from* Phone : 346

# S.S.V.T. TALKIES

## BERHAMPUR, GANJAM

PROPRIETOR'S NAME : A.RAJESWARI RAO BROTHERS

YEAR STARTED : 1927

SEATING CAPACITY : 1000

NET SALE : 619

FILMS SCREENED : ORIYA, ENGLISH, HINDI, TELEGU

SOUND : R.C.P

MACHINE : SUPERSIMPLEX

MANAGER : L, LAXMAN RAO

Tele : Utkalsr

With Co

ହୋଇ

ଶାନ୍ତୁ




ଆଗମାର୍କ ସିଲ୍‌ଯୁକ୍ତ

# ଗଣେଶ

## ସୋରିଷ ତେଲ

ସ୍ୱାସ୍ଥ୍ୟ ଓ ଶକ୍ତି ପାଇଁ ଉପଯୋଗୀ
ଭିଟାମିନ୍‌ରେ ଭରପୁର

ଆପଣଙ୍କ ନିକଟତମ ଦୋକାନରୁ ନିଅନ୍ତୁ

**ଏହା ପ୍ରାଗ ଅଏଲ ମିଲ୍ସ, ଆଲିଗଡ଼ଙ୍କ ଅବଦାନ**

ପରିବେଷକ : ପ୍ରାଗ ଅଏଲ ମିଲସ ଡିପୋ, ମାଲଗୋଦାମ, କଟକ-୩